ଓଁ ନମୋ ଭଗବତେ ବାସୁଦେବାୟ



ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱିତା ।
କୃତା ବୈଂ ପ୍ରଭୁଦତ୍ତେନ ମାଳା 'ଭଗବତୀ କଥା' ।।

॥ ଶ୍ରୀ ହରି ॥

# ଭାଗବତ କଥା

## (ଦ୍ୱିପଞ୍ଚାଶତ୍ ଖଣ୍ଡ)


ଲେଖକ :

ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ

ଅନୁବାଦ ଓ ସମ୍ପାଦନା :

ଶ୍ରୀ ନୃସିଂହ ପ୍ରସାଦ ମିଶ୍ର



ପ୍ରକାଶକ :



କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର

# ଭାଗବତ କଥା - ୫୨

ପ୍ରକାଶକ :
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍
ବାଲୁବଜାର, କଟକ - ୭୫୩ ୦୦୨

ପ୍ରକାଶନ ଉପଦେଷ୍ଟା ଓ ଅନୁବାଦକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ : ୧୯୯୬

ମୁଦ୍ରଣ : ପ୍ରିଣ୍ଟୋଗ୍ରାଫିକ୍ସ୍

ଅକ୍ଷର :
ଏସ୍.ବି.ଆଇ. ଷ୍ଟାଫ୍ ଆସୋ. କୋ.ଅପ. ସୋସାଇଟି,
କଟକ

ମୂଲ୍ୟ : ଟ.୪୦/- ମାତ୍ର

*"Bhagabata Katha" Published by : Cuttack Students' Store, Balubazar, Cuttack - 753 002, Publication Advised & Translated by : Sri N. P. Misra, 1st Edition : 1996, Printing : Printographics, Computer Support : S.B.I. Staff Assn. Co-op. Society, Cuttack.*

**Price : Rs. 40/- only**



ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ



ଭାଗବତ କଥାର ପ୍ରକାଶକ ସ୍ୱର୍ଗତଃ ଅନନ୍ତ ମିଶ୍ର

## ସୂଚୀପତ୍ର


| | |
|---|---|
| ଯଦୁକୁଳକୁ ବିପ୍ରଙ୍କ ଅଭିଶାପ | ୧ |
| ବିପ୍ରଶାପର ବ୍ୟର୍ଥ ପ୍ରତିକାର | ୧୧ |
| ବସୁଦେବ-ନାରଦ ସମ୍ବାଦ | ୧୮ |
| ନାରଦଙ୍କ ପ୍ରସନ୍ନତା | ୨୯ |
| ବିଦେହ-ଯୋଗେଶ୍ୱର ସମ୍ବାଦ | ୩୬ |
| ନାମ ସଂକୀର୍ତ୍ତନ ମହିମା | ୪୨ |
| ଭଗବଦ୍ ଭକ୍ତଙ୍କ ଲକ୍ଷଣ | ୫୩ |
| ପରମ ଭାଗବତଙ୍କ ଲକ୍ଷଣ | ୬୨ |
| ଭଗବାନଙ୍କ ମାୟାର ବର୍ଣ୍ଣନା | ୬୮ |
| ମାୟା ମୁକ୍ତ ହେବାର ଉପାୟ | ୭୮ |
| ଭାଗବତ-ଧର୍ମ | ୮୫ |
| ନାରାୟଣଙ୍କ ସ୍ୱରୂପ ବର୍ଣ୍ଣନ | ୯୭ |
| ଆବିର୍ହୋତ୍ରଙ୍କ କର୍ମଯୋଗ ବର୍ଣ୍ଣନା | ୧୦୭ |
| ପ୍ରଭୁ ପୂଜା ପଦ୍ଧତି | ୧୧୩ |
| ଭଗବାନଙ୍କର ଲୀଳା ସମୂହର ବର୍ଣ୍ଣନା | ୧୩୬ |
| ଅନ୍ୟ ଅବତାର ଚରିତ | ୧୪୪ |
| ହରି-ବିମୁଖଙ୍କ ଗତି | ୧୪୯ |
| ବେଦ ନିବୃତ୍ତି ପରଖ | ୧୫୯ |
| ଯୁଗାନୁସାରେ ପୂଜାର ବିଧି | ୧୬୭ |
| କଳିକାଳର ଯୁଗ-ଧର୍ମ | ୧୭୪ |
| ନାରଦ-ବସୁଦେବ ସମ୍ବାଦର ସମାପ୍ତି | ୧୮୩ |




# ଯଦୁକୁଳକୁ ବିପ୍ରଙ୍କ ଅଭିଶାପ

**ବିଭ୍ରଦ୍ ବପୁଃ ସକଳସୁନ୍ଦରସନ୍ନିବେଶମ୍**
**କର୍ମାଚରନ୍ ଭୁବି ସୁମଙ୍ଗଳମାପ୍ତକାମଃ ।**
**ଆସ୍ଥାୟ ଧାମ ରମମାଣ ଉଦାରକୀର୍ତିଃ**
**ସଂହର୍ତୁମୈଚ୍ଛତ କୁଳଂ ସ୍ଥିତ କୃତ୍ୟଶେଷଃ ।।☆**

.(ଶ୍ରୀ ଭା. ୧୧ ସ୍କ. ୧ ଅ. ୧୦ମ ଶ୍ଳୋକ)

**ଛପ୍ପୟ**

*ଯୋଂ ଲୈ କେଂ ଅବତାର ଶ୍ୟାମ ବଲ ଅସୁର ସଁହାରେ ।*
*ଭାର ଭୂତ ଭୂପାଲ ମହାଭାରତ ମହଁ ମାରେ ।।*
*ଭୂ କୋ ଭାର ଉପର ଜାନି ନିଜ କୁଲ କୂଁ ଦରପିତ ।*
*ତାହୂ କୋ ସଂହାର କରନ ହରି ସୋଚତ ହରଷିତ ।।*
*ବିପ୍ରନି କୁପିତ କରାଇକେଂ, ଯଦୂକୁଲ ଶାପ ଦିଖାଇକେଂ ।*
*ଗମନେ ପ୍ରଭୁ ନିଜ ଧାମ କୂଁ, ଲୀଲା ଲଲିତ ଦିଖାଇକେଂ ।।*

ବୁଢ଼ିଆଣୀ ଜାଲ ତିଆରି କରେ । ସେହି ଜାଲ ସେ ନିଜ ନିଜ କ୍ରୀଡ଼ା ଉଦ୍ଦେଶ୍ୟରେ କରେ । ସେଥିରେ ତାର ଦ୍ୱୈତ ବୁଦ୍ଧି ନଥାଏ । ସେ ଭାବେନାହିଁ, 'ଏଇ ଜାଲଟି ମୋର, ଆଉ ସେଇ ଜାଲଟି ଅନ୍ୟର ।' ଜାଲ ତିଆରି କରିବା ସମୟରେ କ୍ରୀଡ଼ା କରିବା ପାଇଁ ଇଚ୍ଛା ଥିଲା । ଆଉ ସେ ଯେତେବେଳେ ତାହା ଗିଳି ଦେଉଥାଏ, ସେତେବେଳେ ବି ସେ କ୍ରୀଡ଼ାର ଇଚ୍ଛାରେ ହିଁ ଏପରି କରିଥାଏ । କ୍ରୀଡ଼ା ବ୍ୟତୀତ ତା'ର ଆଉ କୌଣସି ଇଚ୍ଛା ନ ଥାଏ । ଏଇ ଲୋକମାନେ ନିଜର କ୍ଷୁଦ୍ରବୁଦ୍ଧି ହେତୁ ସଂକଳ୍ପ କରି କୁହନ୍ତି, 'ଏଇଟା ମୋର, ସେଇଟା ତା'ର ।' କିନ୍ତୁ ଯିଏ ପରାତ୍ପର ପ୍ରଭୁ, ସମସ୍ତେ ଯାହାଙ୍କର ଲୀଳାର ବିଳାସ-ମାତ୍ର, ତାଙ୍କପାଇଁ ସବୁ ଏକାଭଳି । ଭଗବାନ ଭୂ-ଭାର ଲାଘବ କରିବାକୁ ଯା‌ । ଅବତାର

☆ ଶ୍ରୀ ଶୁକଦେବ କହୁଛନ୍ତି, ''ରାଜନ୍ ! ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ଏପରି ଅଦ୍ଭୁତ ମନୋହର ଶରୀର ଧାରଣ କରିଥିଲେ, ଯେଉଁଥିରେ ସମସ୍ତ ସୁନ୍ଦର ସାମଗ୍ରୀ ସମାବେଶିତ ହୋଇଥିଲା । ନିଜେ ତ ସେ ଥିଲେ ଆପ୍ତକାମ, ତେବେ ବି ଲୋକରେ ଅନେକ ମଙ୍ଗଳ କୃତ୍ୟ କରି କରି ସେ ଦ୍ୱାରାବତୀରେ ରହି ବିହାର କରୁଥିଲେ । ସେହି ଉଦାରକୀର୍ତି ଭଗବାନ୍ ବାସୁଦେବ ସ୍ୱୟଂ ନିଜ କୁଳକୁ ନାଶ କରିଦେବା ପାଇଁ ଇଚ୍ଛାକଲେ । କାରଣ ତାଙ୍କ ଅବତାରର ଏହି ଶେଷ କର୍ମଟି ଆଉ ବାକୀ ଥିଲା ।

ହୁଅନ୍ତି । ତାଙ୍କୁ ଯାହା ଭାରରୂପ ଦେଖାଯାଏ ସେ ତାହାକୁ ସଂହାର କରିଦିଅନ୍ତି । ସେତେବେଳେ ତାଙ୍କର ଆପଣାର-ପରର ଏପରି ଭେଦଭାବ ନଥାଏ । ତାଙ୍କ ପାଇଁ ପୁଣି କିଏ ଆପଣାର ଆଉ କିଏ ପରର ହୋଇପାରେ କି ?

ମହାପ୍ରାଜ୍ଞ ସୂତ କହୁଛନ୍ତି, ‘‘ହେ ମୁନିଗଣ ! ଭଗବାନ, ବଳରାମ ଓ ଶ୍ରୀକୃଷ୍ଣଙ୍କ ରୂପ ଗ୍ରହଣକରି ଅବତାର ହେଲେ ପ୍ରଥମେ ବ୍ରଜରେ । ସେ ବ୍ରଜରେ ଅସୁରଙ୍କୁ ସଂହାର କଲେ । ଏହାପରେ ମଥୁରାକୁ ଆସି ଭୂ-ଭାରରୂପୀ ଭୂପତିମାନଙ୍କୁ ମାରିଲେ । ତା'ପରେ ଦ୍ୱାରକାରେ ରହି ରାଜାମାନଙ୍କ ରୂପରେ ରହିଥିବା ଅସୁରଙ୍କୁ ସ୍ୱୟଂ ମାରିଲେ ଓ ଅନ୍ୟଙ୍କ ଦ୍ୱାରା ବି ବଧ କଲେ । ମହାରାଜ ପଣ୍ଡୁଙ୍କ ପଞ୍ଚପୁତ୍ରଙ୍କୁ ସେ ନିଜର ଭୂ-ଭାର ଲାଘବ କରିବା କାର୍ଯ୍ୟରେ ନିୟୋଜିତ କଲେ । ତାଙ୍କର ଇଚ୍ଛାରେ କପଟ ଦ୍ୟୁତର ସଭା ଆହୂତ ହେଲା । ତାଙ୍କର ଇଚ୍ଛାରେ କୌରବମାନଙ୍କ ଦ୍ୱାରା ପାଣ୍ଡବମାନଙ୍କୁ ଡକରା ହେଲା । ତାଙ୍କର ଇଚ୍ଛାରେ ଦ୍ୟୁତ-କ୍ରୀଡ଼ା ଖେଳ ହେଲା । ତାଙ୍କରି ଇଚ୍ଛାରେ କୌରବଙ୍କ ଦ୍ୱାରା ପାଣ୍ଡବମାନଙ୍କୁ ଅପମାନିତ କରାଗଲା । ତାଙ୍କରି ଇଚ୍ଛାରେ ରଜସ୍ୱଳା ଦ୍ରୌପଦୀଙ୍କୁ କୌରବଙ୍କ ଦ୍ୱାରା କେଶଧରି ଅଣାଗଲା । ଆଉ ତାଙ୍କରି ସଂକଳ୍ପରେ ହିଁ ପାଣ୍ଡବମାନେ କୌରବଙ୍କ ଉପରେ କ୍ରୋଧାନ୍ୱିତ ହେଲେ । ସେ ଇଚ୍ଛା କରିନଥିଲେ ମହାଭାରତ ଯୁଦ୍ଧ କଦାପି ହୋଇନଥାନ୍ତା । ସେ ବାସ୍ତବରେ ଥିଲେ ସର୍ବ-ସମର୍ଥ । କିନ୍ତୁ ସେ ଜାଣିଥିଲେ, ଯଦି ମହାଭାରତ ହୋଇନଥାନ୍ତା, ତେବେ ଭୂ-ଭାର ପୂର୍ଣ୍ଣଲାଘବ ହୋଇପାରିନଥାନ୍ତା । ‘ଯେଉଁ ଅସୁରମାନେ ଏବେ ରାଜାରୂପରେ ପୃଥିବୀରେ ଜାତ ହୋଇଯାଇଛନ୍ତି ଓ ବଳଦର୍ପିତ ହୋଇଯାଇଛନ୍ତି; ତପସ୍ୟା ଓ ସୈନ୍ୟବଳଯୁକ୍ତ ହୋଇଯାଇଛନ୍ତି, ମୋ ବିନା ଅନ୍ୟ କେହି ସେମାନଙ୍କୁ ମାରିପାରିବେ ନାହିଁ ।’ ଏଣୁ ସେ କୌରବ ଓ ପାଣ୍ଡବ ଉଭୟଙ୍କୁ କ୍ରୋଧାନ୍ୱିତ କରିଦେଲେ । ସମସ୍ତ ପୃଥିବୀର ରାଜାମାନେ ସେହି ଯୁଦ୍ଧରୂପୀ ଯଜ୍ଞର ବଳିବେଦୀରେ ପହଞ୍ଚି ନିଜ ନିଜକୁ ବଳି ଦେବାରେ ଲାଗିଲେ । ନିଜେ ତଥା ନିଜର ସୁଦୀର୍ଘ ବାହୁର ଛତ୍ରଛାୟାରେ ସୁରକ୍ଷିତ ଯାଦବଙ୍କ ଦ୍ୱାରା ପୃଥିବୀର ଭାରଭୂତ ଭୂପତିମାନଙ୍କର ସକଳ ସେନାଙ୍କୁ ସଂହାର କରିଦେଲେ । ଦୁଷ୍ଟ ଦାନବ ମଲେ । ବଢୁଥିବା ଜନସଂଖ୍ୟା କ୍ଷୟ ହେଲା । ବଳ-ଦର୍ପିତ ରାଜାମାନେ ମଲେ । ଧର୍ମରାଜ ରାଜା ହେଲେ । ଏହାପରେ ଭଗବାନ ସୁଖପୂର୍ବକ ଦ୍ୱାରାବତୀରେ ରହି ବିହାର କରିବାରେ ଲାଗିଲେ । ସମସ୍ତେ କହିବାରେ ଲାଗିଲେ, ‘ଭୂ-ଭାର ଲାଘବ ହୋଇଗଲା ।’ ହେଲେ ଶ୍ରୀକୃଷ୍ଣ ଏହାକୁ ଅନୁମୋଦନ କରୁନଥିଲେ । ଭୂ-ଭାର ଲାଘବ ହୋଇଯାଇଥିଲେ ଭଗବାନ ନିଜ ଧାମକୁ ଚାଲିଯାଇ ଥାଆନ୍ତେ । ଏଣୁ ସେ ମୌନ ରହିଥିଲେ ।

ମହର୍ଷି ଶୌନକ ପଚାରିଲେ, ‘‘ହେ ମହାପ୍ରାଜ୍ଞ ସୂତ ! ମହାଭାରତରେ ପ୍ରାୟତଃ ପୃଥିବୀର ଭାରଭୂତ ସମସ୍ତ ଶୂରବୀର କ୍ଷତ୍ରିୟ ମରିଗଲେ, ବଳକା କେହି ରହିଲେ ନାହିଁ;

ସେତେବେଳେ ଭୂ-ଭାର ଲାଘବ ହୋଇଯାଇଛି ବୋଲି ଭଗବାନ କାହିଁକି ସ୍ୱୀକାର କରୁନଥିଲେ ?''

ମହାପ୍ରାଜ୍ଞ ସୂତ କହିଲେ, ''ମହର୍ଷିସେ ! ଯିଏ ଯେଉଁ ବିଷୟର ବିଶେଷଜ୍ଞ ସେ ହିଁ ସେହି ବିଷୟର ଗୁଣ-ଦୋଷ ବୁଝିଥାଏ । ଭଗବାନ ହିଁ ଜାଣିଥିଲେ, ପୃଥିବୀର ଭାବରୂପୀ କିଏ, ଆଉ କାହାକୁ ସଂହାର କଲେ ପୃଥିବୀର ଭାର ଲାଘବ ହେବ । ମହାଭାରତ ସମାପନ ହୋଇଯିବାପରେ ଭଗବାନ ଚିନ୍ତା କରିବାରେ ଲାଗିଲେ, 'ଭୂ-ଭାର ଲାଘବ ହୋଇଯାଇଛି ବୋଲି ଲୋକମାନେ କଥୋପକଥନ ହେଉଛନ୍ତି । କିନ୍ତୁ ପ୍ରକୃତରେ ତ ତାହା ହୋଇନାହିଁ । କାରଣ ବର୍ତ୍ତମାନ ପର୍ଯ୍ୟନ୍ତ ଏହି ଅସହ୍ୟ ଯାଦବ କୁଳ ବାକୀ ରହିଛି । ଏହା ପୃଥିବୀ ନିମନ୍ତେ ସାଧାରଣ ଭାର ସଦୃଶ ନୁହେଁ । କାରଣ ମୁଁ ଏହି ବଂଶରେ ଅବତାର ହୋଇଥିବାରୁ ଅନ୍ୟକେହି ତ ଏହାର ବିନାଶ ନିମନ୍ତେ ସାହସ କରିବେ ନାହିଁ । ଏମାନଙ୍କର ଧନାଭାବ ନାହିଁ, ଏମାନେ ଧନ ବୈଭବ ପରିପୂର୍ଣ୍ଣ । ଧନ ମଦରେ ଏମାନେ ମଦାନ୍ୱିତ । ସବୁ ସମୟରେ ମଉଜ-ମଜଲିସ୍ ତଥା ବନବିହାରରେ ଏମାନେ ସମୟ ଅତିବାହିତ କରିବାରେ ଲାଗିଛନ୍ତି । ଏମାନେ ମୋତେ ଆଶ୍ରୟ କରୁଥିବା ଅନୁଭବ କରୁଥିବାରୁ ପ୍ରାୟତଃ ନିଡର ରହିଛନ୍ତି । ଏଣୁ ଯେ ପର୍ଯ୍ୟନ୍ତ ଯଦୁକୁଳର ଏହି ଅଗଣିତ ନିଡର ଲୋକ ରହିଥିବେ ସେ ପର୍ଯ୍ୟନ୍ତ ଭୂ-ଭାର ଲାଘବ ହେବନାହିଁ । ଅନ୍ୟଙ୍କ ଦ୍ୱାରା ଏମାନେ ମରିବେ ନାହିଁ । କାରଣ ଦ୍ୱାରକା ଅନ୍ୟଙ୍କ ପାଇଁ ଅଗମ୍ୟ । ନିଘଞ୍ଚ ବାଉଁଶ ବଣରେ କେହି କାଠୁରିଆ ପ୍ରବେଶ କରିପାରେ ନାହିଁ । ଫଳରେ ବାଉଁଶ କଟା ହୁଏ ନାହିଁ । ବାଉଁଶ ବର୍ଦ୍ଧନ ହେବାରେ ଲାଗେ । ବାଉଁଶ ବଣ ନିର୍ଦ୍ୱନ୍ଦ୍ୱରେ ଏପରି ବଢ଼ିଲେ ଓ ସୃଷ୍ଟି ନାଶ ନ ହେଲେ ଉନ୍ନତି ହେବନାହିଁ । ଏପରି ପରିସ୍ଥିତିରେ ବାଉଁଶ ଗଛ ନିଜ ନିଜ ମଧ୍ୟରେ ଘଷି ହୋଇ ଅଗ୍ନି ସଂଯୁକ୍ତ ହୋଇଯାଆନ୍ତି । ସେହି ଦାବାଗ୍ନି ଅଳ୍ପକ୍ଷଣରେ ସମଗ୍ର ଅଭେଦ୍ୟ ବାଉଁଶ ବଣକୁ ନାଶ କରିପକାଏ । ଭୂମି ଗୁଳ୍ମ-ଲତାଶୂନ୍ୟ ହୋଇଯାଏ । ଏହାପରେ ସେଥିରେ ଅଙ୍କୁର ଅଙ୍କୁରିତ ହେବାରେ ଲାଗେ ।

''ଏଣୁ ଯଦୁକୁଳର ଏହି ବୀରମାନଙ୍କୁ ମୁଁ ନିଜ ନିଜ ମଧ୍ୟରେ ଲଢ଼ାଇ କରିଦେବି । ସେମାନେ ନିଜ ନିଜ ଭିତରେ ଲଢ଼ାଇକରି ମରିଗଲେ ପୃଥିବୀର ଭାର ପୂର୍ଣ୍ଣତଃ ଲାଘବ ହୋଇଯିବ । ସେତେବେଳେ ଯାଇ ମୋ ଅବତାର ଗ୍ରହଣ କରିବା କାର୍ଯ୍ୟ ସିଦ୍ଧ ହୋଇଯିବ, ଆଉ ମୁଁ ମୋ ନିଜଧାମକୁ ପ୍ରତ୍ୟାବର୍ତ୍ତନ କରିବି ।''

ଏହା ସ୍ଥିର କରି ସତ୍ୟ-ସଂକଳ୍ପ ସର୍ବସମର୍ଥ, ସର୍ବାନ୍ତର୍ଯ୍ୟାମୀ ଶ୍ରୀହରି ବ୍ରାହ୍ମଣଙ୍କ ଦ୍ୱାରା ଯଦୁକୁଳକୁ ଅଭିଶପ୍ତ କରିଦେଲେ । ଆଉ ସେହି ବିପ୍ର ଶାପରୂପୀ ଦାବାନଳରେ ସମସ୍ତଙ୍କର ସ୍ୱାହା କରିଦେଲେ । ଯଦୁକୁଳର ସଂହାର ହୋଇଯିବା ପରେ ଭଗବାନ ସ୍ୱଧାମକୁ

ଚାଲିଗଲେ । ଏହି ଧରାଧାମରେ ଭଗବାନ୍ ଶହେ ବର୍ଷରୁ ଅଧିକ ଅବସ୍ଥାନ କଲେ । ସେହି ସମୟ ସଂସାର ପାଇଁ ଯେ କେତେ ଅମୂଲ୍ୟ ଥିଲା ତାହାର କଳ୍ପନା ଥିଲା ମାନବ ଚିନ୍ତାତୀତ । ସେ ଏପରି ମନୋହର ମୂର୍ତ୍ତି ଧାରଣ କରିଥିଲେ ଯେ ଅସଂଖ୍ୟ ବ୍ରାହ୍ମଣଙ୍କ ସୌନ୍ଦର୍ଯ୍ୟ ଗୋଟିଏ ସ୍ଥାନରେ ଏକତ୍ରିତ କରାଯାଇ ଯଦି ତହିଁରେ ସୁନ୍ଦରଠାରୁ ଅଧିକ ସୁନ୍ଦର ମୂର୍ତ୍ତି ତିଆରି କରାଯାଏ, ତାହା ଶ୍ରୀକୃଷ୍ଣଙ୍କର ସ୍ୱରୂପ-ମୂର୍ତ୍ତି ସମ୍ମୁଖରେ ତୁଚ୍ଛାତିତୁଚ୍ଛ ଜଣା ପଡ଼ିଥାଆନ୍ତା । ସେ ଏହିପରି ଅପୂର୍ବ ମନୋହର ମୂର୍ତ୍ତି ଦେଖାଇ ପ୍ରାଣୀମାନଙ୍କର ନୟନକୁ ପବିତ୍ର କରିଦେଇଥିଲେ । ନିଜର ଦିବ୍ୟବାଣୀରେ ଅର୍ଜୁନ, ଉଦ୍ଧବ ଆଦି ପରମଭକ୍ତଙ୍କୁ ଉପଦେଶ ଦେଇ ଗୀତା, ଭାଗବତ ଭଳି ଜ୍ଞାନୋଦ୍‌ଗମ ପ୍ରକଟ କରିଥିଲେ । ଏହି ସଦ୍‌ଗ୍ରନ୍ଥର ଧାରା ଏବେ ଏକ ଅଖଣ୍ଡ ରୂପରେ ପ୍ରବାହିତ ହୋଇ ଅଧିକାରୀ ଜନଙ୍କ ଶୁଷ୍କ ହୃଦୟକୁ ପରିପ୍ଲାବିତ କରିବାସହ ଶସ୍ୟଶ୍ୟାମଳା ବି କରିଦେଉଛି । **ଜଗତର ଏକମାତ୍ର ସ୍ମରଣୀୟ ଶ୍ରୀହରି ନିଜର ମଧୁର ମଧୁର ସ୍ମୃତିକୁ ଛାଡ଼ିଯାଇଛନ୍ତି, ଯାହା ସ୍ମରଣ କରୁଥିବା ଭକ୍ତମାନଙ୍କର ଚିତ୍ତ ନିମନ୍ତେ ଏକ ପ୍ରକାର ବଶୀକରଣ ଭଳି ହୋଇଯାଇଛି ।** ଯେଉଁମାନେ ତାଙ୍କର ମନୋହର ମୂର୍ତ୍ତିକୁ, ତାଙ୍କର ଦିବ୍ୟ ଗୁଣରାଶିକୁ, ସୁନ୍ଦର ସରସ ଲୀଳାସମୂହକୁ ତଥା ତାଙ୍କର ଜଗତ୍-ମଙ୍ଗଳ ମନୋହର ନାମକୁ ସ୍ମରଣ କରୁଛନ୍ତି, ସେମାନଙ୍କ ଚିତ୍ତ ତାଙ୍କଠାରେ ଲାଗିଯାଇଛି, ଲାଖି ଯାଇଛି, ସେମାନେ ସଂସାରରୁ ବାହାରି ଆସିବା ଅସମ୍ଭବ । ଯେଉଁମାନେ ସେହି ଅଖିଳେଶଙ୍କ ଚରଣାରବିନ୍ଦକୁ ଦର୍ଶନ କରିପାରିଛନ୍ତି ସେମାନଙ୍କର ଅନ୍ୟସମସ୍ତ ଲୌକିକ କ୍ରିୟା ରୁଦ୍ଧ ହୋଇଯାଇଥାଏ । ଭଗବାନ ଅବତାର ଧାରଣ କରି ଗୋଟିଏ ଅତି ଅଦ୍ଭୁତ କାର୍ଯ୍ୟ କରିଛନ୍ତି । ସେ ତାଙ୍କର ପରମ ଶ୍ରୁତି-ମଧୁର ଭାଗବତୀ କଥାରାଶିକୁ ଛାଡ଼ିଯାଇଛନ୍ତି । କବିମାନେ ତାଙ୍କର କମନୀୟ କୀର୍ତ୍ତିକୁ କବିତା ଦ୍ୱାରା ଗାନକରି ନିଜ-ନିଜର ବାଣୀକୁ ସଫଳ କରିଥାଆନ୍ତି । ଏହିଭଳି ଶ୍ରଦ୍ଧାଳୁ ଶ୍ରୋତା-ବକ୍ତା ଶ୍ରଦ୍ଧାସହିତ ଗାନକରି, ଶ୍ରବଣ କରି, କୃତକୃତ୍ୟ ହୋଇଯାଆନ୍ତି । ଆଉ ଏହିଭଳି ନିଜର ଯଶକୁ ବିସ୍ତାରକରି ନିଜ ଅବତାରର ପ୍ରୟୋଜନକୁ ସାରି ପ୍ରଭୁ ସ୍ୱଧାମକୁ ପ୍ରତ୍ୟାବର୍ତ୍ତନ କରିଗଲେ ।''

ଏହାଶୁଣି ମହର୍ଷି ଶୌନକ ପଚାରିଲେ, ''ହେ ମହାପ୍ରାଜ୍ଞ ସୂତ ! ଆପଣ ଆମର ପ୍ରଶ୍ନ ଭୁଲିଗଲେ କି ? ହେ ମହାଭାଗ ! ଆମର ପ୍ରଶ୍ନଥିଲା— ଯଦୁକୁଳକୁ ବ୍ରାହ୍ମଣଙ୍କର ଅଭିଶାପ ପଡ଼ିଲା କାହିଁକି ? ସମଦର୍ଶୀ ବିପ୍ରମାନେ ଭଗବାନଙ୍କ କୁଳର ଯାଦବମାନଙ୍କୁ ଅଭିଶାପ ଦେଲେ କାହିଁକି ? ବ୍ରାହ୍ମଣମାନେ ଅନ୍ୟର ଅବିନୟରେ ସାଧାରଣତଃ କୁପିତ ହୋଇଥା'ନ୍ତି । ଯାଦବମାନେ ଏପରି ଅବିନୟ ପ୍ରଦର୍ଶନ କରିବା ସ୍ୱପ୍ନରେ ବି ଚିନ୍ତାକରାଯାଇ ନପାରେ । ସେମାନଙ୍କୁ ଭଗବାନ୍ ସବୁବେଳେ ତ ଶିକ୍ଷା ଦେଉଥିଲେ ।

ଯାଦବମାନେ ସମସ୍ତେ ବ୍ରାହ୍ମଣ-ଭକ୍ତ ବି ଥିଲେ । ଉଦାର ଥିଲେ, ଯଶସ୍ୱୀ ଥିଲେ, କୁଳୀନ ଥିଲେ ତଥା ପ୍ରତିଦିନ ଗୁରୁଜନଙ୍କ ସେବା ପ୍ରତି ତତ୍ପର ବି ଥିଲେ । ସେମାନଙ୍କର ଚିତ୍ତ ସବୁବେଳେ ଶ୍ୟାମସୁନ୍ଦରଙ୍କର ଚରଣାରବିନ୍ଦରେ ରହିଥିଲା । ଏପରି ବ୍ରହ୍ମଣ୍ୟ ଯାଦବମାନଙ୍କୁ ବିପ୍ରମାନେ ଅଭିଶାପ ଦେଲେ କାହିଁକି ? ଅଭିଶାପର ସ୍ୱରୂପ ଥିଲା କିପରି ? ବ୍ରାହ୍ମଣମାନେ କୁପିତ ହେବାର କାରଣ କ'ଣ ? ଯାଦବମାନେ କି ପ୍ରକାର ଅବିନୟ କଲେ ? ଯାଦବଙ୍କର ଚିତ୍ତ ସବୁବେଳେ ପ୍ରେମ ପରିପୂର୍ଣ୍ଣ ରହିଥିଲା । ସେମାନେ ସମସ୍ତେ ବସ୍ତୁତଃ ଏକଚିତ୍ତ, ଏକମନା ଥିଲେ - ସେପରି ସ୍ଥଳରେ ନିଜ ନିଜ ମଧ୍ୟରେ କାହିଁକି କଳହରତ ହେଲେ ? ସେମାନଙ୍କ ମନରେ ଭେଦଭାବ ଆସିଲା କୁଆଡୁ ? ଏ ସମସ୍ତ କଥା କୃପାକରି ଆମକୁ କୁହନ୍ତୁ ।''

ଏପରି କଥା ଶୁଣି ମହାପ୍ରାଜ୍ଞ ସୂତ ଅତି କଷ୍ଟରେ କହିଲେ, ''ହେ ମୁନିଗଣ ! ଅଭିଶାପ ସଂକ୍ରାନ୍ତରେ ଅନ୍ୟକାରଣ କ'ଣ କହିବି, ଆପଣ ଜାଣିରଖନ୍ତୁ ଯେ ଏ ସମସ୍ତ ଶ୍ୟାମସୁନ୍ଦରଙ୍କ ଇଚ୍ଛାନୁସାରେ ହିଁ ହୋଇଥିଲା । ସିଏ ଦୈତ୍ୟଙ୍କ ବିନାଶ ସାଧନ କରି ସୁଖପୂର୍ବକ ଦ୍ୱାରକାରେ ରହିଥିଲେ । ସେ ଯାଦବଙ୍କୁ ଦେଖୁଥିଲେ । ଯାଦବମାନେ ସୁରାପାନ କରି ମଦୋନ୍ମତ୍ତ ହେଉଥିଲେ ଏବଂ ପ୍ରଗଲ୍‌ଭଙ୍କ ପରି ଏଣୁ ତେଣୁ କଥାବାର୍ତ୍ତା କରୁଥିଲେ । ଭଗବାନ ଭାବିଲେ, 'ଅନ୍ୟ ସମସ୍ତ ସ୍ଥାନର ଭୂ-ଭାର ଲାଘବ ହୋଇଗଲା । ହେଲେ ଏହି ଯାଦବମାନେ ଏବେ ଭୂମିର ଭାର ରୂପରେ ରହିଛନ୍ତି । ଯେ ପର୍ଯ୍ୟନ୍ତ ଏମାନଙ୍କର ସଂହାର ନ ହୋଇଛି, ସେ ପର୍ଯ୍ୟନ୍ତ ମୋ ଅବତାରର କାର୍ଯ୍ୟ ସଂପୂର୍ଣ୍ଣ ହେବନାହିଁ । ଐଶ୍ୱର୍ଯ୍ୟ ମଦରେ ମଦୋନ୍ମତ୍ତ ହୋଇରହିଥିବା ଏହି ଯାଦବଙ୍କୁ ଅନ୍ୟ କେହି ରାଜା, ଯେତେ ବଳବାନ୍ ହୋଇଥିଲେ ବି, ପରାଜିତ କରିପାରିବେ ନାହିଁ ।'

''ଭଗବାନ ତ ହେଉଛନ୍ତି କାଳସ୍ୱରୂପ । ଅର୍ଜ୍ଜୁନ ଯେତେବେଳେ ତାଙ୍କର ବିରାଟ ସ୍ୱରୂପ ଦେଖିଲେ ସେ ଭୟଭୀତ ହୋଇଯାଇଥିଲେ । ସେତେବେଳେ ସେ ପଚାରିଥିଲେ, 'ପ୍ରଭୁ ! ଆପଣ କିଏ ?' ସେତେବେଳେ ଭଗବାନ କହିଥିଲେ, 'ମୁଁ କାଳରୂପ ।' ଅର୍ଜ୍ଜୁନ ପଚାରିଥିଲେ, 'ଆପଣ କାହିଁକି ଆସିଛନ୍ତି ?' ଭଗବାନ କହିଥିଲେ, ''ମୁଁ ଲୋକଙ୍କ କ୍ଷୟସାଧନ ଉଦ୍ଦେଶ୍ୟରେ ଆସିଛି । ଏଇ ଯେଉଁ ରାଜାମାନେ ଆସିଛନ୍ତି, ସମସ୍ତଙ୍କୁ ମୁଁ ଗିଳିଦେବି । ଆଉ ତତେ ବି ଗିଳିଦେବି ।''

ବାସ୍ତବରେ ଭଗବାନ ଜୀବଙ୍କ ଦ୍ୱାରା ଜୀବଙ୍କୁ ଉତ୍ପନ୍ନ କରିଥା'ନ୍ତି । **ଯେଉଁ ମଣିଷ ଗୋଟିଏ ମାତ୍ର ଜଳବିନ୍ଦୁ ତିଆରି କରିବା ପାଇଁ ଅସମର୍ଥ, ଧୂଳିକଣାଟିଏ ବି ନିର୍ମାଣ କରିବାକୁ ଅସମର୍ଥ ସେ ଏତେ ଲମ୍ବା-ଚୌଡ଼ା ମଣିଷ କିପରି ତିଆରି କରିପାରନ୍ତା ! ମଣିଷର ଏହା ହେଉଛି ମିଥ୍ୟାଭିମାନ ।** 'ଏଇ ପିଲାମାନେ ମୋର, ଏମାନଙ୍କୁ ମୁଁ

ଉତ୍ପନ୍ନ କରିଛି ।' 'ଆରେ ପାଗଳା ! ତୁ କ'ଣ ତିଆରି କରିପାରିବୁ ? କରି କରାଉଥିବା ଲୋକ ତ ସେହି ଶ୍ରୀକୃଷ୍ଣ ।' ଏହିଭଳି କେହି କାହାକୁ ବି ମାରିପାରନ୍ତି ନାହିଁ । **କାଳରୂପୀ କୃଷ୍ଣ ହିଁ ସମସ୍ତଙ୍କୁ ସଂହାର କରନ୍ତି ।** ହେଲେ ଭୂତଙ୍କୁ ନିମିତ୍ତ ମାତ୍ର କରିଥାଆନ୍ତି । ଅମୁକ ରୋଗରେ ମଲା, ଅସ୍ତ୍ରରେ, ଯାଦୁରେ, ବିଷରେ, ଜଳରେ, ସର୍ପଦ୍ୱାରା, ତଥା ଅନ୍ୟ ବସ୍ତୁରେ ମଲା । ଯେତେବେଳେ ଯାହାଙ୍କୁ ସଂହାର କରିବାକୁ ହୋଇଥାଏ, ସେତେବେଳେ ସେ ସେହି ରୂପ ନେଇ ଯାଆନ୍ତି । **କାଳରୂପ ଭଗବାନଙ୍କର ଯେଉଁଠାରେ ସଂକଳ୍ପ ହେଲା ସେଠାରେ ସେହିଭଳି ସାଧନ ଜୁଟିଯାଏ । ଅସମ୍ଭବ ଲାଗୁଥିବା କଥା ସମ୍ଭବ ହୋଇଯାଏ ।**

''ଏବେ ଭଗବାନ୍ ଯଦୁକୁଳ ସଂହାର କରିବା ପାଇଁ ସଂକଳ୍ପ କରିଦେଲେ । ତାଙ୍କ ଲୀଳାରେ ସହାୟତା କରିବାକୁ ଯାଇ ଅନେକ ମୁନିଋଷି ତାଙ୍କ ଇଚ୍ଛାରେ ପ୍ରେରିତ ହୋଇ ଦ୍ୱାରକାପୁରୀରେ ଏକତ୍ରିତ ହେଲେ । ସେମାନଙ୍କ ଭିତରେ ବିଶ୍ୱାମିତ୍ର, ବଶିଷ୍ଠ, ଅସିତ, କଣ୍ୱ, ଦୁର୍ବାସା, ଭୃଗୁ, ଅଙ୍ଗିରା, କଶ୍ୟପ, ବାମଦେବ, ଅତ୍ରି ଆଉ ନାରଦ ଆଦି ମୁଖ୍ୟ ଥିଲେ । ଏହି ମହାନ୍ ମହର୍ଷିମାନେ ଆସୁଥିବା ଦେଖି ଭଗବାନ ସିଂହାସନରୁ ଉଠି ଠିଆହୋଇଗଲେ । ବିଧି ଅନୁସାରେ ପୂଜା କଲେ, ସମସ୍ତଙ୍କୁ କୁଶଳବାର୍ତ୍ତା ପଚାରି ବୁଝିଲେ, ଓ ସ୍ୱାଦିଷ୍ଟ ଭୋଜନରେ ଆପ୍ୟାୟିତ କଲେ ।

ଭଗବାନଙ୍କଠାରୁ ଯଥୋଚିତ ସତ୍କାର ପାଇ ଯେତେବେଳେ ସେହି ମହାନ୍ ଋଷିମାନେ ଯିବାକୁ ବାହାରିଲେ, ସେତେବେଳେ ଭଗବାନ୍ ବାସୁଦେବ କହିଲେ, ''ହେ ମୁନିଗଣ ! ଆପଣମାନେ କେଉଁଆଡୁ ଆସିଲେ ? ଏଠାରୁ ଆପଣମାନେ କେଉଁ ଆଡ଼େ ଯିବେ ?''

ମୁନିମାନେ କହିଲେ, ''ବାସୁଦେବ ! ଆମେ ତୀର୍ଥାଟନ କରୁଛୁ । ତୀର୍ଥଯାତ୍ରା ଅବସରରେ ଆମେମାନେ ଦ୍ୱାରକା ଆସି ଆପଣଙ୍କର ଦର୍ଶନ ଲାଭ କଲୁ । ଏଠାରୁ ପୁଷ୍କରକୁ ଯାଇ ଆମେମାନେ ବ୍ରଜମଣ୍ଡଳକୁ ଯିବାପାଇଁ ମନସ୍ଥ କରିଛୁ ।''

ଭଗବାନ୍ କହିଲେ, ''ହେ ମୁନିମାନେ ! ଏବେ ତ ଆପଣମାନେ କୌଣସି ଗୋଟିଏ ସ୍ଥାନରେ ରହି ଚାତୁର୍ମାସ୍ୟ ବ୍ରତ କରିବେ । ଯଦି ଆପଣମାନଙ୍କର କୌଣସି ଆପତ୍ତି ନଥାଏ, ତେବେ ଏହିଠାରେ ଚାତୁର୍ମାସ୍ୟ ଅତିବାହିତ କରିଦିଅନ୍ତେ । ଆପଣମାନେ ଏହିଠାରେ ରହିଲେ ମଝିରେ ମଝିରେ ଆମେ ଆପଣମାନଙ୍କ ଦର୍ଶନ ଓ ଉପଦେଶ ଲାଭ କରିବାର ସୁଯୋଗ ବି ପାଆନ୍ତୁ ।''

ଋଷିମାନେ ନିଜ ନିଜ ଭିତରେ ଆଲୋଚନା କରି ସମ୍ମତି ପ୍ରଦାନ କଲେ । ଭଗବାନ୍‌ଙ୍କର ପ୍ରସ୍ତାବକୁ ଅନୁମୋଦନ କଲେ । ସମସ୍ତେ ଦ୍ୱାରକା ନିକଟବର୍ତ୍ତୀ ପିଣ୍ଡାରକ ନାମକ ପୁଣ୍ୟକ୍ଷେତ୍ରରେ ରହି ଚାତୁର୍ମାସ୍ୟ କରିବାରେ ଲାଗିଲେ । ଚାଳ କୁଟୀରରେ ରହି

ସତ୍‌ସଙ୍ଗ କରିବାରେ ଲାଗିଲେ । ଯାଦବମାନେ ଆସି ଋଷିମାନଙ୍କୁ ସେବାପ୍ରଦାନ କରିବାରେ ଲାଗିଥାଆନ୍ତି ।

ଯାଦବଙ୍କ ମୁଣ୍ଡ ଉପରେ କାଳ ତ ଅପେକ୍ଷାକରି ବସିଥାଏ । ବିନାଶକାଳରେ ବୁଦ୍ଧି ବିପରୀତ ହୋଇଯାଏ । ଶ୍ରୀକୃଷ୍ଣଙ୍କ କୃପାରୁ ଯାଦବଙ୍କର ଅର୍ଥାଭାବ ନଥାଏ । ସଂପୂର୍ଣ୍ଣ ଦ୍ୱାରକାପୁରୀ ସୁନାରେ ତିଆରି ହୋଇଥିଲା । ଧନମଦରେ ସମସ୍ତେ ମଦୋନ୍ମତ୍ତ ହୋଇଯାଇ ଥାଆନ୍ତି । ସେମାନଙ୍କଠାରେ ସୁରାପାନର ବ୍ୟସନ ଘର କରିଦେଇଥିଲା । ପ୍ରାୟତଃ ସମସ୍ତେ ମଦ୍ୟପ ହୋଇଯାଇଥିଲେ । ଦିନେ କେତେକ ଉଦଣ୍ଡ ଯାଦବକୁମାର କ୍ରୀଡ଼ା କରିକରି ପିଣ୍ଡାରକ କ୍ଷେତ୍ରରେ ପହଞ୍ଚିଗଲେ । ସେଠାରେ ସେମାନେ ଲମ୍ବା ଲମ୍ବା ଦାଢ଼ୀ ଜଟାଧାରୀ ଅସଂଖ୍ୟ ମୁନିଙ୍କୁ ଦେଖିବାକୁ ପାଇଲେ । ସେମାନଙ୍କ ମଧ୍ୟରୁ କେହି କେହି ବେଦପାଠ କରୁଥିଲେ, କେହି କେହି ଭଜନ କରୁଥିବାବେଳେ, କେହି କେହି ଜପ କରୁଥିଲେ ତଥା ଅନ୍ୟ କେହି ଅନ୍ୟପ୍ରକାର ଧାର୍ମିକ କୃତ୍ୟରେ ଲାଗି ରହିଥିଲେ । ଏହି ଯାଦବକୁମାରମାନେ ସମସ୍ତଙ୍କର କର୍ମ ନିରୀକ୍ଷଣ କରିବାରେ ଲାଗିଥିଲେ । ଏମାନେ ଯେତେବେଳେ ଏକାଠି ଋଷିମାନଙ୍କ କାର୍ଯ୍ୟକଳାପ ବିଷୟରେ କଥାବାର୍ତ୍ତା ହେଲେ, ସେମାନଙ୍କ ମନରେ ଏକ ବିନୋଦ ପ୍ରସଙ୍ଗ ଯୁଟିଲା । ଏମାନେ ନିଜ ନିଜ ଭିତରେ କଥା ହେଲେ, ''ଏତେ ସଂଖ୍ୟକ ମୁନିଋଷି ଗୋଟିଏ ସ୍ଥାନରେ ରହି ଖୁବ୍ ମାଲ୍ ଉଡ଼ାଇବାରେ ଲାଗିଛନ୍ତି । ଏମାନଙ୍କ ପାଖରେ କିଛି ସାଧନା ଓ ସିଦ୍ଧି ଅଛି ନା ଏମାନେ ମଉଜରେ କାଳକଟାଇବାରେ ଲାଗିଛନ୍ତି ! ଏମାନଙ୍କୁ ଚାଲ ଆମେ ପରୀକ୍ଷା କରିବା ।''

ଏପରି କଥାବାର୍ତ୍ତା ହେଉଥିବା ବେଳେ ଜଣେ ହଠାତ୍ କହିଲା, ''କି ପ୍ରକାର ପରୀକ୍ଷା କରିବା ?''

ଏହାଶୁଣି, ଯାଦବକୁମାରଙ୍କ ଭିତରେ ଯେଉଁ ଜଣକ ଅଧିକ ଉଦଣ୍ଡ, ସେ କହିଲା, ''ଦେଖ, ଆମର ଏହି ଶାମ୍ବ ହେଉଛି ଅତି ସୁକୁମାର । ଯାର ଅଙ୍ଗ ପ୍ରତ୍ୟଙ୍ଗ ସ୍ତ୍ରୀମାନଙ୍କ ପରି । ଚାଲ ଯାକୁ ସ୍ତ୍ରୀ-ରୂପରେ ସଜାଇ ମୁନି-ଋଷିଙ୍କ ପାଖକୁ ନେବା । ଆଉ ଋଷିଙ୍କୁ ପଚାରିବା - ଇଏ ଗର୍ଭବତୀ, ଯାର ପୁଅ ହେବ ନା ଝିଅ । ଋଷିମାନେ ପୁଅ କି ଝିଅ - ଗୋଟିଏ କଥା ତ ନିଶ୍ଚୟ କହିବେ । ସେତେବେଳେ ଆମେ ସମସ୍ତେ ହସି ହସି ଶାମ୍ବର ଅସଲି ରୂପ ଦେଖାଇଦେବା । ସେମାନଙ୍କୁ ହାସ୍ୟାସ୍ପଦିତ କରି ମଉଜ କରିବା ।''

ଏପରି କଥା ଶୁଣି ଶାମ୍ବ କହିଲା, ''ନାଁ ନାଁ ! ମୁଁ ସ୍ତ୍ରୀ ହେବି ନାହିଁ । ପୁରୁଷ ସ୍ତ୍ରୀ ରୂପ ଧାରଣ କରିବା ଅତି ଅପମାନ ଜନକ କଥା । ଆଉ ଅନ୍ୟ କିଛି ପରିହାସ ପ୍ରସଙ୍ଗ ଚିନ୍ତା କରାଯାଉ ।''

କିନ୍ତୁ ଅନ୍ୟମାନେ ଶାମ୍ବ କଥାରେ ପ୍ରତିବାଦ କରି କହିଲେ- ''ନାଁ । ଆମେ ଯେଉଁ

କଥା ସ୍ଥିର କରିଛେ ସେପରି କଲେ ଖୁବ୍ ମଜ୍‌ଜା ହେବ । ସ୍ତ୍ରୀମାନଙ୍କ ଲୁଗା ପିନ୍ଧିପକାଇଲେ କ'ଣ କିଏ ସତରେ ସ୍ତ୍ରୀ ହୋଇଯାଏ ? ତମର କ୍ଷତି କ'ଣ ହେବ ଯେ ! ନିଅ । ଏଇ ବସ୍ତ୍ରଗୁଡ଼ିକ ପିନ୍ଧିପକାଅ ।''

ସମସ୍ତଙ୍କର ଆଗ୍ରହ ଦେଖି ଶାମ୍ବ ଶାଢ଼ି ପିନ୍ଧିପକାଇଲେ । ସମସ୍ତେ ମିଶି ଶାମ୍ବଙ୍କୁ ଖୁବ୍ ସୁନ୍ଦର ସଜାଇ ଦେଲେ । ପେଟରେ ବୁଜୁଳାଏ ଲୁଗା ବାନ୍ଧି ପେଟକୁ ବଡ଼ କରିଦେଲେ । ଆଉ ମୁଣ୍ଡରେ ଲମ୍ବା ଓଢ଼ଣା ଟାଣି ମୁନିଋଷିମାନଙ୍କ ପାଖକୁ ନେଇଗଲେ ।

ଏହି ସମୟରେ ମହର୍ଷି ଶୌନକ ପଚାରିଲେ- ''ହେ ମହାପ୍ରାଜ୍ଞ ! ଜାମ୍ବବତୀ-ନନ୍ଦନ ଶାମ୍ବ ତ ବଡ଼ ହୋଇଯାଇଥିବ ! ତା'ର ତ ନାତି ନାତୁଣୀ ହୋଇଯାଇଥିବେ । ଆପଣ ଏମାନଙ୍କୁ କୁମାର ବୋଲି କାହିଁକି ସମ୍ବୋଧନ କରୁଛନ୍ତି ? ଏପରି ବଡ଼ମାନଙ୍କ ମୁଣ୍ଡରେ ପିଲାଳିଆମୀ ଜୁଟିଲା କିପରି ?''

ଏପରି କଥା ଶୁଣି ମହାପ୍ରାଜ୍ଞ ସୂତ କହିଲେ, ''ମହାରାଜ ! ରାଜାମାନଙ୍କ ପୁଅ ବୁଢ଼ା ହୋଇଯାଇଥିଲେ ବି ସେମାନଙ୍କୁ କୁମାର ହିଁ କୁହାଯାଏ । ସବୁଠାରୁ ବଡ଼ ପୁଅ ହୋଇଥିଲେ ବି ସେମାନଙ୍କୁ କୁମାର ହିଁ କୁହାଯାଏ । ସବୁଠାରୁ ବଡ଼ପୁଅ ହୋଇଥିଲେ ବି ପିତା ଜୀବିତ ଥିବା ପର୍ଯ୍ୟନ୍ତ ତାକୁ କୁମାର ନାମରେ ହିଁ ସମ୍ବୋଧନା କରାହେଉଥାଏ । ପିତାଙ୍କ ମୃତ୍ୟୁପରେ ସେ ରାଜା ହୁଏ, ଓ ଅନ୍ୟ ପୁଅମାନେ କୁମାର ନାମରେ ସମ୍ବୋଧିତ ହେଉଥାଆନ୍ତି । ସେମାନଙ୍କର ନାତି ଅଣନାତି ହୋଇଥିଲେ ବି ସେମାନଙ୍କୁ କୁମାର ହିଁ କୁହାଯାଏ । ହଁ ! ଏ କଥା ସତ ଯେ ଏମାନେ ପ୍ରାୟ ୮୦/୯୦ ବର୍ଷ ବୟସର ହୋଇଯାଇଥିଲେ; କିନ୍ତୁ ହେ ମହାରାଜ ! ଯେ ପର୍ଯ୍ୟନ୍ତ ପିତା-ମାତା ଜୀବିତ ଥାଆନ୍ତି ସେ ପର୍ଯ୍ୟନ୍ତ ପୁଅ ଯେତେ ବଡ଼ ହୋଇଥିଲେ ବି ତା' ପାଖରେ ପିଲାଳିଆମୀ ରହିଥାଏ । ଗାମ୍ଭୀର୍ଯ୍ୟ ଆସେ ମୁଣ୍ଡ ଉପରକୁ ବୋଝ ଆସିଲେ । ମାତା-ପିତା ବସିଥିବା ପର୍ଯ୍ୟନ୍ତ ସନ୍ତାନମାନେ ଖେଳକୁଦ କରୁଥାଆନ୍ତି । ପୁଣି ଏମାନେ ସମସ୍ତେ ଭଗବାନଙ୍କର ବୀର୍ଯ୍ୟରୁ ଉତ୍ପନ୍ନ ହୋଇଛନ୍ତି । ଏଣୁ ଏମାନଙ୍କୁ ଜରା, ରୋଗ ସ୍ପର୍ଶ କରୁ ନଥିଲା । ଭଗବାନ ଯେପରି ସବୁବେଳେ ଷୋଡ଼ଶ ବର୍ଷର ଯୁବକ ଭଳି ରହିଥାନ୍ତି ଏମାନେ ବି ଠିକ୍ ସେହିଭଳି ଦେଖାଯାଉ ଥାଆନ୍ତି । ଏମାନେ ସମସ୍ତେ ନିତ୍ୟ କିଶୋର ଭଳି ରହିଥାଆନ୍ତି । ଶାମ୍ବଙ୍କୁ ଏତେ ବର୍ଷ ବୟସ ହୋଇଥିଲେ ବି ତାକୁ ଯେତେବେଳେ ସ୍ତ୍ରୀ ରୂପରେ ସଜାଇ ଦିଆଗଲା ସେତେବେଳେ ସେ ବାସ୍ତବରେ ସ୍ତ୍ରୀ ନା ପୁରୁଷ ଚିହ୍ନି ହେଉନଥିଲା । ସ୍ତ୍ରୀମାନଙ୍କ ଭଳି ତାଙ୍କର କଣ୍ଠସ୍ୱର ଅତି ସୁମଧୁର ଥିଲା । ହାତର ଅଙ୍ଗୁଳି ଗୁଡ଼ିକ ପତଳା ପତଳା ଓ ଗୋଲାପୀ ଦେଖାଯାଉଥିଲା । ସେ କୋମଳ ଓ ମୃଦୁଳ ଦେଖାଯାଉଥିଲେ । ସେ ଜଣେ ସାକ୍ଷାତ୍ ସ୍ତ୍ରୀ ଭଳି ଦେଖାଗଲେ ।

ଶୌନକ କହିଲେ, "ଆଚ୍ଛା ! ତା'ପରେ କ'ଣ ହେଲା ?"

ମହାପ୍ରାଜ୍ଞ ସୂତ କହିଲେ, "ଆଉ କ'ଣ ହୁଅନ୍ତା ମହାରାଜ ! ମହାକାଳ ଦ୍ୱାରା ପ୍ରେରିତ ସେହି ରାଜକୁମାରମାନେ କୌଣସି ପ୍ରକାର ହସକୁ ଚାପି, ନମ୍ରତାର ଅଭିନୟ କରି, ସ୍ତ୍ରୀରୂପ ଧାରଣ କରିଥିବା ଶାମ୍ବକୁ ଆଗରେ ରଖି ମୁନିମାନଙ୍କ ପାଖରେ ପହଞ୍ଚିଗଲେ । ଏମାନେ ସମସ୍ତେ ଦୂରରୁ ଲମ୍ବା ଲମ୍ବା ଦଣ୍ଡବତ କଲେ । ଆଉ ପାଖକୁ ଯାଇ ସମସ୍ତେ ମୁନିମାନଙ୍କ ପଦସ୍ପର୍ଶ କଲେ । ସ୍ତ୍ରୀରୂପ ଧାରଣ କରିଥିବା ଶାମ୍ବ ପଣତ ତଳୁ ଋଷିମାନଙ୍କୁ ଚାହିଁ ଚାହିଁ ଲାଜକୁଳି ଠାଣିରେ ଅଭିନୟ କରି ଋଷିମାନଙ୍କୁ ପ୍ରଣାମ କଲା ଆଉ ଅନ୍ୟ ବାଳକମାନେ ତାକୁ ଯେଉଁଠାରେ ବସାଇ ଦେଲେ ସେଠାରେ ବସିଗଲା ।

ଏପରି କଥା ଦେଖି ଦୁର୍ବାସା ମୁନି କହିଲେ- "କ'ଣ ପଚାରିବାକୁ ଇଚ୍ଛା କରିଛ କୁହ ।"

ସେଇ ଉଦଣ୍ଡ କୁମାରମାନେ ଆଗ-ପଛ କିଛି ବିଚାର ନକରି କହିଲେ, "ହେ ମହାରାଜ ! କ'ଣ ଆଉ ପଚାରିବୁ । କଳିଯୁଗ ତ ଆରମ୍ଭ ହୋଇଗଲାଣି । ଅଳ୍ପ କିଛି ଅଂଶ ଦ୍ୱାପର ଅଛି । କଳିଯୁଗର କୁଳୀନ ସ୍ତ୍ରୀମାନେ ବିନା ସଂକୋଚରେ ପୁରୁଷଙ୍କ ସମ୍ମୁଖରେ କଥାବାର୍ତ୍ତା କରନ୍ତି । ଏ ପର୍ଯ୍ୟନ୍ତ ୟା'ର ଏତେ ସାହସ ହୋଇନାହିଁ । ସେ ନିଜେ କିଛି ପଚାରିବାକୁ ସଂକୋଚ କରୁଛି । ତେଣୁ ଆମମାନଙ୍କ ଦ୍ୱାରା କିଛି ପ୍ରଶ୍ନ କରିବାକୁ ଚାହିଁଛି ।"

ମହର୍ଷି ଦୁର୍ବାସା କହିଲେ, "ହଉ ! ସେ ନ ହେଲେ ନାହିଁ । ତୁମେ ପଚାର । ଇଏ କ'ଣ ଜାଣିବାକୁ ଚାହୁଁଛି କୁହ ।"

ସେହି ଉଦଣ୍ଡ କୁମାର କହିଲା, "ମହାରାଜ ! ଇଏ ଗର୍ଭବତୀ । ଏଇ ୧୦/୧୫ ଦିନ ଭିତରେ ପ୍ରସବ କରିବ । ଇଏ ପୁତ୍ର ସନ୍ତାନ ଇଚ୍ଛା କରିଛି । ଆପଣମାନେ ତ୍ରିକାଳଜ୍ଞ । ଆପଣଙ୍କ ଦର୍ଶନ ଅମୋଘ । ୟାର ପୁଅ ହେବ ନା ଝିଅ ହେବ କୁହନ୍ତୁ । ଆଉ, ଇଏ କେବେ ପ୍ରସବ କରିବ କୁହନ୍ତୁ ।"

ଉଦଣ୍ଡ କୁମାର ଏପରି କହୁଥିବା ସମୟରେ ଅନ୍ୟକୁମାରମାନଙ୍କୁ ଖୁବ୍ ହସ ଲାଗିଲା । ସେମାନେ ମୁହଁ ବୁଲାଇ ହସିବାରେ ଲାଗିଲେ । ମନଗଢ଼ା କଥା ଯେ କେହି ବ୍ୟବହାର ପଟୁ ପୁରୁଷ ସହଜରେ ତ ବୁଝିପାରେ । ପୁଣି ଏମାନେ ସମସ୍ତେ ସର୍ବଜ୍ଞ ମୁନି । କୁମାରମାନଙ୍କ ଧୂର୍ତ୍ତତା ସେମାନେ ଜାଣିଗଲେ । ଏପରି ଧୃଷ୍ଟତା ଦେଖି ମୁନିମାନେ କ୍ରୋଧାନ୍ୱିତ ହୋଇଉଠିଲେ । ଭବିତବ୍ୟର ବି ପ୍ରେରଣା ଥିଲା । ଭଗବାନଙ୍କର ଇଚ୍ଛା ବି ଥିଲା । ବିଧିର ବିଧାନ ବି ଏହିପରି ଥିଲା । ଜିତେନ୍ଦ୍ରିୟ ଓ ବ୍ରତପରାୟଣ ମୁନିମାନଙ୍କ

ମନରେ ବି କ୍ରୋଧ ଜାତ ହେଲା । ଆଉ ସେମାନେ ଭାବିବାରେ ଲାଗିଲେ, ''ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ପୁଅ ନାତି ହୋଇ ସୁଦ୍ଧା ଏମାନେ ଏଡ଼େ ଧୃଷ୍ଟ ଓ ଅବିନୀତ ହୋଇଛନ୍ତି । ଏମାନଙ୍କୁ ଏହାର ପରିଣାମରୂପୀ ଫଳ ଚଖାଇବା ଉଚିତ । ସମସ୍ତ ମୁନି ଏହିଭଳି ଏକାପ୍ରକାର କଥା ଚିନ୍ତା କରିଥିଲେ । ଆଉ ମହର୍ଷି ଦୁର୍ବାସା କ୍ରୋଧାନ୍ୱିତ ହୋଇ ଉଠିଲେ । କିନ୍ତୁ ସେ ଶୁଷ୍କ ହସ ହସି କହିଲେ, ''ପିଲେ ! ଓଢ଼ଣା ପକାଇ ବସିଥିବା ବୋହୂ ପୁଅ କି ଝିଅ ଜନ୍ମ କରିବ ନାହିଁ । କିନ୍ତୁ ଏପରି ବସ୍ତୁ ଜାତ କରିବ ଯେ ତାହା ଦ୍ୱାରା ତୁମର କୁଳ ନାଶହୋଇଯିବ । ଆରେ ଧୂର୍ତ୍ତଗଣ ! ଯେଉଁ ଟୋକାକୁ ତୁମେମାନେ ଟୋକୀ କରି ଆମପାଖକୁ ଆଣିଛ ତା' ପେଟରୁ ଏପରି ମୂଷଳ ଜନ୍ମଗ୍ରହଣ କରିବ ଯେ ସେହି ମୂଷଳ ଦ୍ୱାରା ତୁମମାନଙ୍କର ଏହି ଲୋକର୍ ଲୀଳା ସମାପ୍ତ ହୋଇଯିବ ।''

ମହାମୁନି ଦୁର୍ବାସାଙ୍କର ଏପରି ଅଭିଶାପକୁ ଅନ୍ୟ ଋଷିମାନେ ସମର୍ଥନ କରି ''ସାଧୁ ସାଧୁ'' ବୋଲି ଉଚ୍ଚାରଣ କରି ଅନୁମୋଦନ କଲେ । ଯଦୁକୁମାରମାନେ ଏପରି ଅଭିଶାପ ବାକ୍ୟ ଶୁଣିବାକ୍ଷଣି ସେମାନଙ୍କ ମୁଖମଣ୍ଡଳରୁ ହସ ଉଡ଼ିଗଲା । ସେମାନେ ପ୍ରାଣ ଭୟରେ ଥରିବାରେ ଲାଗିଲେ । ସେମାନେ ମୁନିମାନଙ୍କୁ ଆଉ ପଦେବୋଲି କିଛି କହିବାକୁ ସାହସ କରିପାରିଲେ ନାହିଁ । ଆଉ ସେଠାରୁ ପଳାଇ ଆସିଲେ । ଦୂରକୁ ପଳାଇ ଆସି ଏମାନେ ଶାମ୍ବର ପେଟରେ ବନ୍ଧା ହୋଇଥିବା ବୁଜୁଲାକୁ ଖୋଲିଲେ । ସତକୁ ସତ ସେହି ଲୁଗା ବୁଜୁଲା ଭିତରୁ ଗୋଟିଏ ଲୌହ ମୂଷଳ ବାହାରିଲା । ଏହା ଦେଖିବାକ୍ଷଣି ସମସ୍ତେ ଧୈର୍ଯ୍ୟ ହରାଇ ପକାଇଲେ । ସେମାନେ ବଲ୍‌ବଲ୍ ହୋଇ ମୁହଁ ଚହାଁଚହିଁ ହେବାରେ ଲାଗିଲେ । ସେମାନେ ନିଜେ ନିଜେ ଧିକ୍‌କାର କରିବାରେ ଲାଗିଲେ । -'ହାୟ ! ଆମ ମୁଣ୍ଡକୁ ଏପରି କୁବୁଦ୍ଧି ଜୁଟିଲା କିପରି ? ଆମେ ଏହି ସର୍ବଜ୍ଞ ମୁନିମାନଙ୍କୁ ପରିହାସ କରିବାପାଇଁ ଗଲେ କିପରି ? ଆମମାନଙ୍କ ଭାଗ୍ୟ ସତରେ ଅତି ମନ୍ଦ । ଏଇ କଥା ଦଦେଇ ବଳଦେବ କି ଆମ ପିତା ଶୁଣିଲେ ଆମକୁ କ'ଣ କହିବେ ? ସମସ୍ତେ ଆମକୁ ଧିକ୍‌କାର କରିବେ । ଆମେ ନିଜେ ଆମ କୁଳ ବିନାଶର କାରଣ ହୋଇଗଲେ ।''

ଏହି ସମୟରେ ସେମାନଙ୍କ ଭିତରୁ ଜଣେ ଡରି ଡରି କହିଲା, ''ଏଇ ମୂଷଳକୁ ଚାଲ ଗାତକରି ପୋତିଦେବା । ଏଇ କଥା ଅନ୍ୟକାହାକୁ କହିବା ନାହିଁ ।'' ଏହା ଶୁଣି ଆଉ ଜଣେ କହିଲା, ''ଭାଇ ! ଏ କଥା କଦାପି ଲୁଚିବ ନାହିଁ । ମୁନିମାନଙ୍କ ବାକ୍ୟ ଅମୋଘ । ତାହ କଦାପି ଅନ୍ୟଥା ହେବନାହିଁ । ତେଣୁ ଏହାକୁ ନେଇ ମହାରାଜ ଉଗ୍ରସେନଙ୍କ ପାଖରେ ଦେବା ଠିକ୍ ହେବ । ସେ ହେଉଛନ୍ତି ମହାରାଜ । ସେ ନିଶ୍ଚୟ ଏହାର ପ୍ରତିକାର ବ୍ୟବସ୍ଥା କରିବେ ।''

ମହାପ୍ରାଜ୍ଞ ସୂତ କହିଲେ, ''ହେ ମୁନିଗଣ ! ସମସ୍ତ ଯଦୁକୁମାର ଏହି କଥାକୁ

ସମର୍ଥନ କଲେ । ସମସ୍ତେ ମହାରାଜ ଉଗ୍ରସେନଙ୍କ ପାଖକୁ ଗଲେ । ଏବେ ମହାରାଜ ଉଗ୍ରସେନ ଏହାର ପ୍ରତିକାର ଯେଉଁଭଳି କଲେ ତାହା କହୁଛି ଆପଣମାନେ ଶୁଣନ୍ତୁ ।''

**ଛପ୍ପୟ**

*ଶୌନକ ପୂଛେଂ- 'ସୂତ ! ଶାପ ବିପ୍ରନି ଦୈଁୟା ଦୀନ୍ହୋ ।*
*ଦୈଁୟା ହରିନେ ସଂହାର ସ୍ୱୟଂ ନିଜ କୁଲ କୋ କୀନ୍ହୋ ।।*
*ସୂତ କହେ - 'ବ୍ରତ ଚତୁରମାସ ହିତ ଆୟେ ଋଷି ମୁନି ।*
*ପିଣ୍ଡାରକ ମହଁ ରହେଂ, ଗୟେ ଯାଦବ କୁମାର ପୁନି ।।*
*ନାରୀ ବେଷ କରି ସାମ୍ବ, ପୂଛତ ପ୍ରସବ କରୈ କହା ?*
*କହେଂ କ୍ରୋଧ କରି ମୁନି ଜନୈ, କୁଲନାଶକ ମୂସଲ ମହା ।।*



# ବିପ୍ରଶାପର ବ୍ୟର୍ଥ ପ୍ରତିକାର

**ଭଗବାଞ୍ଜାତସର୍ବାର୍ଥ ଈଶ୍ୱରୋଽପି ତଦନ୍ୟଥା ।**
**କର୍ତ୍ତୁଂ ନୈଚ୍ଛଦ୍ ବିପ୍ରଶାପଂ କାଲରୂପ୍ୟନ୍ୱମୋଦନ । ✫**

(ଶ୍ରୀ. ଭା. ୧୧ସ୍କ. ୧ମ ଅ. ୧୪ଶ ଶ୍ଳୋକ)

**ଛପ୍ପୟ**

*ଦ୍ୱିଜନି ଶାପ ସୁନି କୁମର ଭୟେ ଅତି ଦୁଖିତ ଡରାୟେ ।*
*ସାମ୍ବ ଉଦର ତେଁ ମୂସଲ ଭୟୋ ସବ ଘବରାୟେ ।।*
*ଥର ଥର କାଁପତ ଆଇ ନୃପହିଁ ସବ ବୃତ୍ତ ବତାୟୋ ।*
*ଉଗ୍ରସେନ ସୁନି ସକଲ ମୂସଲ ଚୂରତହିଁ ଇତିବାୟୋ ।।*
*ଚୂରୌଂ ଅରୁ ଲୋହୋ ବଚ୍ୟୋ, ଫେଙ୍କ୍ୟୋ ସାଗର ମହଁଛେବହିଁ ।*
*ଚୂରୌଂ ବହି ତଟ ପୈ ଲଗ୍ୟୋ, ଭୟେ ଏରକା ତୃନ ତବହିଁ ।।*

✫ ସେ କାଳରୂପୀ ଭଗବାନ । ଜାଣଇ ସକଳ ବିଧାନ ।।
ଖେଳଇ ମାୟାମୟ କନ୍ଥେ । ସେ ପ୍ରଭୁ ଡରେ ବ୍ରହ୍ମଶାପେ ।।
କୁଳ ବିନାଶ ହେତୁ କରି । ଅବନୀଭାରା ହେଲେ ହରି ।।
ନିଜ ଭୁବନେ ଅବଧାନ । ନିର୍ଲେପ ପ୍ରଭୁ ଭଗବାନ ।।
(ଭାଗବତ : ଜଗନ୍ନାଥ ଦାସ : ୧୧ମ ସ୍କ. ୧ମ ଅ.)

ମୃତ୍ୟୁକୁ ଜପ, ତପ, ମନ୍ତ୍ର, ଔଷଧ - କୌଣସି କର୍ମ ଅଟକାଇ ପାରେ ନାହିଁ । ମହାକାଳ ସମ୍ମୁଖରେ କାହାର କିଛି ଚାତୁର୍ଯ୍ୟ ଚଳେନାହିଁ । ସେ ଯାହା କରିବାକୁ ଚାହେଁ ତାହାହିଁ କରିଥାଏ । ମୃତ୍ୟୁ କବଳରୁ ରକ୍ଷା ପାଇବା ପାଇଁ ମଣିଷ ଅନେକ ଉପାୟ କରେ । କିନ୍ତୁ କାଳ ସମ୍ମୁଖରେ ତାହା ବ୍ୟର୍ଥ ହୋଇଥାଏ । ସମୁଦ୍ରର ସହସ୍ର ହସ୍ତ ନିମ୍ନ ପ୍ରଦେଶରେ ଜନ୍ତୁମାନେ ରହିଛନ୍ତି, କାଳ ସେଠାରେ ବି ପହଞ୍ଚେ, ସେମାନଙ୍କୁ ଖୋଜି ବାହାର କରେ । ଆକାଶରେ ଆଧାରଶୂନ୍ୟ ଭାବେ ମଧ୍ୟ ଅନେକ ଜନ୍ତୁ ରହିଛନ୍ତି । ଶୁଣାଯାଏ, ଗୋଟିଏ ପକ୍ଷୀ ଅନବରତ ଆକାଶରେ ରହେ, ସେହିଠାରେ ଅଣ୍ଡାଦିଏ, ଅଣ୍ଡା ଉପରୁ ତଳକୁ ଖସୁଥିବା ସମୟରେ ଫାଟେ, ଶାବକ ଆକାଶରେ ଜନ୍ମ ହୋଇ ସଂଗେ ସଂଗେ ଉଡ଼ିବାରେ ଲାଗେ । ସେହି ପକ୍ଷୀ ଭୁଲ୍‌ବଶତଃ ପୃଥିବୀକୁ ସ୍ପର୍ଶ କରେନାହିଁ ତା'ର ଜୀବନକାଳ ମଧ୍ୟରେ । ଶାବକ ଉଡ଼ି ଉଡ଼ି ତା ମା' ପାଖରେ ରହେ । ସେପରି ପକ୍ଷୀକୁ ବି କାଳ କବଳିତ କରିଦିଏ । ସେ ବି ଦିନେ ମରେ । ଏପରି କଥା ଜାଣି ସୁଦ୍ଧା ମନ ବୁଝେ ନାହିଁ । ମୃତ୍ୟୁର ନିଶ୍ଚିତ କାରଣ ଜାଣିବା ପରେ ବି ପ୍ରାଣୀ ତହିଁରୁ ରକ୍ଷା ପାଇବା ପାଇଁ ଚେଷ୍ଟା କରୁଥାଏ ।

ମହର୍ଷି ସୂତ କହୁଛନ୍ତି, "ହେ ମୁନିଗଣ ! ଶାମ୍ବଙ୍କ ଉଦରରୁ ଯେତେବେଳେ ଲୌହ ମୁଷଳ ବାହାରିଲା, ଆଉ ଏହା ଦେଖି ଯାଦବ କୁମାରମାନେ ଅତିଶୟ ଚିନ୍ତିତ ହେବାରେ ଲାଗିଲେ, ସେମାନେ ସମସ୍ତେ ନିଜ ନିଜ ଭିତରେ ଆଲୋଚନା କରିବା ପରେ ମହାରାଜ ଉଗ୍ରସେନଙ୍କ ପାଖକୁ ଗଲେ । କାଳେ ଭଗବାନ୍ ଏମାନଙ୍କର ଏପରି ଅବିନୟ କଥା ଜାଣିବେ, ଏଥିପାଇଁ ଯାଦବ କୁମାରମାନେ ଅତିଶୟ ଭୟ କରୁଥିଲେ । ବସ୍ତୁତଃ ଯାଦବ କୁମାରମାନେ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଖୁବ୍ ଡରୁଥିଲେ । ଉଗ୍ରସେନଙ୍କ ପାଖରେ ସେମାନେ ଛୋଟ ପିଲାଙ୍କ ଭଳି ଅଳି ବି କରିପାରୁଥିଲେ । ଉଗ୍ରସେନ ଅତିଶୟ ବୃଦ୍ଧ ହୋଇଥିବାରୁ ସମସ୍ତଙ୍କୁ ଅତି ସ୍ନେହ କରୁଥିଲେ । ଏଣୁ ଉଗ୍ରସେନଙ୍କୁ ସକଳ କଥା କହିଦେବା ପାଇଁ ଯାଦବ କୁମାରମାନେ ଆଦୌ ସଂକୋଚ କରୁନଥିଲେ । ସେମାନେ କେହି ନଥିବା ସମୟରେ ମହାରାଜ ଉଗ୍ରସେନଙ୍କ ମହଲକୁ ଗଲେ । ମହାରାଜ ନିଜ ଅନ୍ତଃପୁରରେ ଏକାକୀ ବସିଥିଲେ । ସେ ଶୋଇବା ପାଇଁ ପ୍ରସ୍ତୁତ ହେଉଥିଲେ । ଯାଦବ କୁମାରମାନେ ଅତି ସନ୍ତର୍ପଣରେ ଚୋରଙ୍କ ଭଳି ତାଙ୍କ ପାଖରେ ପହଞ୍ଚିଲେ । ଏମାନେ ମହାରାଜଙ୍କୁ ପ୍ରଣାମ କଲେ, ଚରଣସ୍ପର୍ଶ କରି ନୀରବରେ ବସିଗଲେ ।"

ଏପରି ଅସମୟରେ କୁମାରମାନଙ୍କୁ ନିଜ ଅନ୍ତଃପୁରକୁ ଆସିଥିବା ଦେଖି ଉଗ୍ରସେନ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲେ ! କିନ୍ତୁ ସେ ଅତି ସ୍ନେହର ସହିତ ପଚାରିଲେ, "କ'ଣ ପିଲାମାନେ ! ସମସ୍ତେ ଭଲ ଅଛ ତ ? ତୁମମାନଙ୍କର ମୁହଁ ଶୁଖିଲା ଦେଖାଯାଉଛି

କାହିଁକି ? ତୁମେମାନେ ବିଚଳିତ ହୋଇଯାଇଥିବା ଭଳି ଜଣାଯାଉଛ । ଦ୍ୱାରକାରେ କୌଣସି ଦୁର୍ଘଟଣା ଘଟିନାହିଁ ତ ! କୌଣସି ଶତ୍ରୁ ଆଉ ଆମକୁ ଆକ୍ରମଣ କରିନାହାନ୍ତି ତ ?''

ଯାଦବକୁମାରଙ୍କ ଭିତରୁ ଜଣେ କହିଲା- ''ନାଇଁ ମହାରାଜ ! ସେପରି କିଛି ହୋଇନାହିଁ । ଚତୁଃପାର୍ଶ୍ୱରେ ସମୁଦ୍ର ଘେରିରହିଥିବା, ସକଳପ୍ରକାର ସାଧନଦ୍ୱାରା ସୁରକ୍ଷିତ ଆମ ନଗରୀକୁ ପୁଣି କିଏ ଆକ୍ରମଣ କରିବାକୁ ସାହାସ କରିପାରିବେ ? ତେବେ, ଗୋଟିଏ ଅତି ମହାନ ଅଶୁଭ ଘଟଣା ଘଟିଯାଇଛି । ''

ଯାଦବକୁମାରଙ୍କ ଠାରୁ ଏପରି କଥା ଶୁଣି ମହାରାଜ ଉଗ୍ରସେନ ଚମକି ପଡ଼ିଲେ, ଆଉ କହିଲେ, ''କି ପ୍ରକାର ଅଶୁଭ ଘଟଣା ଘଟିଛି? ମଙ୍ଗଳ ସ୍ୱରୂପ ମାଧବଙ୍କ ଉପସ୍ଥିତିରେ କୌଣସି ପ୍ରକାର ଅଶୁଭ ଘଟଣା ଘଟିବାର ସଂଭାବନା ଥାଇପାରେ କି ? ମୋତେ ଶୀଘ୍ର ସେହି ଅଶୁଭ ଘଟଣା ବିଷୟରେ କୁହ ।''

ସମସ୍ତଙ୍କ ଉପରେ ଦୃଷ୍ଟି ପକାଇନେଇ ସେହି କୁମାର କହିଲା, ''ମହାରାଜ ! ଆମେ ଏମିତି କହିବୁ ନାହିଁ । ଆମେ ଯାହା କହିବାକୁ ଆସିଛୁ ତାହା ଅତି ଅଶୁଭ ଘଟଣା । ଆପଣ ଆମକୁ ଦୁଇଟି ପ୍ରତିଜ୍ଞା ସୂଚକ ବର ପ୍ରଦାନ କଲେ ଆମେ କହିବୁ ।''

ମହାରାଜ ଉଗ୍ରସେନ ଅତି ବ୍ୟଗ୍ରତାର ସହିତ କହିଲେ, ''କୁହ କୁହ ! ସେଇ ଅଶୁଭ ଘଟଣାଟି କ'ଣ ? ତୁମେମାନେ ତାହା କହିବାକୁ ଏତେ କାତର କାହିଁକି ହେଉଛ ? ମୁଁ ତୁମକୁ କଥା ଦେଉଛି, ଏଥର କୁହ ତ ।''

ଯାଦବକୁମାରମାନେ କହିଲେ, ''ମହାରାଜ ! ଆମେ ପ୍ରଥମ ବର ମାଗୁଛୁ ଯେ ଆମର ଅକ୍ଷମଣୀୟ ଅପରାଧ ଆପଣ କ୍ଷମା କରନ୍ତୁ । ଦ୍ୱିତୀୟ ବର ଏହା ମାଗୁଛୁ ଯେ, ଆମର ଏହି କଥା, ଯାହା ଆମେ କହିବାକୁ ଯାଉଛୁ, ଭଗମାନଙ୍କ କାନରେ ତାହା ଯେପରି ନ ପଡ଼େ ସେଥି ନିମନ୍ତେ ବ୍ୟବସ୍ଥା କରିବେ ।''

ମହାରାଜ ଉଗ୍ରସେନ କହିଲେ, ''ଆଛା ହେଉ । ତୁମେ ଯାହା ଚାହିଁଲ ତାହା ମୁଁ ପ୍ରଦାନ କଲି । ଏଥର ଶୀଘ୍ର କୁହ । ସେ କଥା କ'ଣ ?''

ଯାଦବକୁମାରଙ୍କ ମଧ୍ୟରୁ ଜଣେ କହିଲା, ''ଆମେ ମୂର୍ଖଙ୍କ ଭଳି ଶାମ୍ବକୁ ସ୍ତ୍ରୀ ରୂପରେ ସଜାଇ ମୁନିମାନଙ୍କ ପାଖକୁ ନେଲୁ ଆଉ ସେମାନଙ୍କୁ ପରିହାସରେ ଏହି ସ୍ତ୍ରୀର ପୁଅ ହେବ ନା ଝିଅ ହେବ ବୋଲି ପଚାରିଲୁ । ଏପରି ପ୍ରଶ୍ନ ଶୁଣି ସେହି ମହାତ୍ମା ମୁନିମାନେ ଆମକୁ ଘୋର ଅଭିଶାପ ଦେଇ କହିଲେ, 'ଆରେ ମନ୍ଦମତେ ! ୟା'ର ପୁଅ ହେବ ନାହିଁ କି ଝିଅ ହେବନାହିଁ । ୟା ଉଦରରୁ ଯାଦବକୁଳକୁ ନାଶକରିବା ପାଇଁ ଗୋଟିଏ ଲୌହ ମୂଷଳ ବାହାରିବ । ଏହା ଯୋଗୁ ତୁମର ରାମ କୃଷ୍ଣ ଦୁହିଙ୍କୁ ଛାଡ଼ି ପ୍ରାୟ ସମସ୍ତେ

ନାଶ ହୋଇଯିବେ ।' ମହାରାଜ ! ଏପରି ଦାରୁଣ ଅଭିଶାପ ଶୁଣି ଆମେ ସମସ୍ତେ ଭୀଷଣ ଡରିଗଲୁ । ଲୁଗା ବୁଜୁଳା ବାନ୍ଧି ଆମେ ଶାମ୍ବର ପେଟକୁ ଫୁଲାଇ ଥିଲୁ । ସେହି ବୁଜୁଳା ଫିଟାଇ ଦେବାମାତ୍ରେ ଗୋଟିଏ ଲୌହ ମୂଷଳ ବାହାରିଲା । ଆମେ ତାହା ଧରି ସିଧା ସିଧା ଆପଣଙ୍କ ପାଖକୁ ପଳାଇ ଆସିଲୁ । ଆପଣ ଯଦି ଏହାର କିଛି ପ୍ରତିକାର କରି ପାରିବେ ତେବେ କରନ୍ତୁ । ହେଲେ ଭଗବାନଙ୍କ ଅଗରେ ଆମର ଏପରି ଅବିନୟ, ଅଭଦ୍ର ଆଚରଣ କଥା କୃପାକରି ପ୍ରକାଶ କରନ୍ତୁ ନାହିଁ । ଏତିକି କହି ଆଉ ସେହି ଲୌହ ମୂଷଳକୁ ମହାରାଜ ଉଗ୍ରସେନଙ୍କ ସମ୍ମୁଖରେ ରଖିଦେଇ ଯାଦବ କୁମାର ମାନେ ନୀରବ ହୋଇଗଲେ ।''

ମହାରାଜ ଉଗ୍ରସେନ ସେହି ଭୟଙ୍କର ରୂପୀ ଲୌହ ମୂଷଳ ଦେଖିଲେ । ତାକୁ ଦେଖୁ ଦେଖୁ ଉଗ୍ରସେନଙ୍କ ପ୍ରାଣବାୟୁ ଉଡ଼ିଯାଉଥିବା ଭଳି ତାଙ୍କୁ ବୋଧ ହେଲା । ସେ ଅନେକ ସମୟ ଧରି ନୀରବରେ ଚିନ୍ତାକରିବାରେ ଲାଗିଲେ । ଚତୁର୍ଦ୍ଦିଗର ପରିବେଶ ନୀରବ ନିସ୍ତବ୍ଧ ତଥା ଅତି ଗମ୍ଭୀର ଜଣାପଡୁଥିଲା । ନିସ୍ତବ୍ଧତା ଭଙ୍ଗକରି ମହାରାଜ ଉଗ୍ରସେନ କୁମାର ମାନଙ୍କୁ କହିଲେ, 'ତୁମେ ଅତିଶୀଘ୍ର ଯାଅ ଆଉ ଅମୁକ କମାରକୁ ଡ଼ାକି ଆଣ । ମୁଁ ଆଜ୍ଞା ଦେଇଛି ବୋଲି କହିବ ଆଉ କହିବ- ସେ ଉହା ଧରି ସଂଗେ ସଂଗେ ଆସିବ । ଉଗ୍ରସେନଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି କୁମାରମାନେ ତତ୍କ୍ଷଣାତ କମାର ପାଖକୁ ଗଲେ । ଅଳ୍ପ ସମୟ ଭିତରେ ସେମାନେ କମାରକୁ ଧରି ପହଞ୍ଚିଗଲେ । ସେ ମହାରାଜଙ୍କର ଜୟଗାନ କରି ପ୍ରଣାମ କରିବା ପରେ ନୀରବରେ ଠିଆ ରହିଲେ ।

ମହାରାଜ ଉଗ୍ରସେନ ତାକୁ କହିଲେ, 'ଦେଖ ! ଏହି ଲୌହ ମୂଷଳକୁ ଆମ ସମ୍ମୁଖରେ ବସି ଗୁଣ୍ଡ କର ।'

ସେହି କମାର କହିଲା, 'ମହାରାଜଙ୍କ ଆଜ୍ଞା ଶିରୋଧାର୍ଯ୍ୟ ।' ଏପରି କହି କମାର ସେହିଠାରେ ବସିଗଲା । ସେ ତା'ର ସମସ୍ତ ବଳ ଖଟାଇ ମୂଷଳକୁ ଚୂନା କରିବାରେ ଲାଗିଲା । ମୂଷଳ ଯେତେ ଅଧିକରୁ ଅଧିକ ଚୂନା ହେବାରେ ଲାଗିଥାଏ, ଯାଦବ କୁମାରଙ୍କ ମନ ସେତେ ଅଧିକରୁ ଅଧିକ ପ୍ରଫୁଲ୍ଲିତ ହେବାରେ ଲାଗିଥାଏ । ରାତି ଅଧ ବେଳକୁ କମାର ସେହି ଲୌହ ମୂଷଳକୁ ପୂରା ପୂରି ଚୂନା କରିଦେଲା । ହେଲେ ଶେଷରେ ଯେଉଁ ଛୋଟିଆ ଖଣ୍ଡେ ରହିଲା ତାହା ଆଉ ଅଧିକ ଚୂନା ହୋଇପାରିଲା ନାହିଁ । କମାର ଅନେକ ପ୍ରକାର ଉପାୟ କରିବାପରେ ବି ସେହି ଛୋଟ ଖଣ୍ଡକୁ ଆଉ ଚୂର୍ଣ୍ଣ କରିପାରୁନଥିବା ଦେଖି ମହାରାଜ ଉଗ୍ରସେନ କହିଲେ, 'ଛୁ ! କିଛି ଯାଏ ଆସେ ନାହିଁ । ଏଡ଼େ ଟିକିଏ ଖଣ୍ଡ କି କ୍ଷତି କରିବ ? ତାକୁ ସେପରି ଛାଡ଼ିଦିଅ ।' କମାର ତାହା ଛାଡ଼ି ଦେଲା । ମହାରାଜ କମାର ଉପରେ ପ୍ରସନ୍ନ ହୋଇ ଅନେକ ଧନ ପାରିତୋଷିକ ରୂପେ

ଦେଲେ । କମାର ତାହା ସାଦରେ ଗ୍ରହଣ କରି ଯଦୁରା[illegible] କରି ଚାଲିଗଲା ।

କମାର ଚାଲିଯିବା ପରେ ମହାରାଜ ଉଗ୍ରସେନ କହିଲେ, "ଦେଖ ! ଏହି ଲୌହ ଗୁଣ୍ଡ ଆଉ ବଳକା ଖଣ୍ଡକୁ ଅତି ସାବଧାନରେ ନେଇ ଯାଅ । ଦେଖ, ଯେପରି ଗୋଟିଏ ଅଣୁ ବି ତଳେ ନପଡ଼େ । ନୌକାରେ ବସି ସମୁଦ୍ରର ଅନେକ ଦୂରକୁ ଯାଇ ସେଠାରେ ପକାଇ ଦେଇ ଆସ । ଏବେ ଏହା ଆମର କି ପ୍ରକାର ଅନର୍ଥ କରିପାରିବ ?"

ଏହା ଶୁଣି ସମସ୍ତ ରାଜକୁମାର ସମୁଦ୍ର କୂଳକୁ ଆସିଲେ । ଗୋଟିଏ ମାଛଧରା ଡଙ୍ଗାରେ ବସି ସେଇ ଅନ୍ଧକାର ରାତିରେ ସମୁଦ୍ରର ବହୁତ ଦୂରକୁ ଗଲେ । ସମୁଦ୍ରର ଅନେକ ଦୂରକୁ ଯାଇ ସେମାନେ ତାହା ପାଣିରେ ପକାଇ ଦେଲେ ଆଉ ଅତି ଉତ୍‌ଫୁଲିତ ହୋଇଉଠି କହିଲେ, 'ଆମେ ଆମ ପୁରୁଷାର୍ଥ ବଳରେ ବ୍ରାହ୍ମଣଙ୍କ ଅଭିଶାପକୁ ମିଥ୍ୟା କରିଦେଲେ । ଏବେ ସେହି ମୂଷଳର ନାମ ଗନ୍ଧ ଆଉ ନାହିଁ । ସମୁଦ୍ର ଗର୍ଭରେ ସବୁ ଲୀନ ହୋଇଗଲା । ଆମର ତାହା ଆଉ କ'ଣ କରିପାରିବ ?' ଏପରି ମନେ ମନେ ଅତି ଆନନ୍ଦିତ ହୋଇ ସେମାନେ ଦ୍ୱାରକାପୁରୀକୁ ଫେରି ଆସିଲେ, ଆଉ ଯେ ଯାହାର ଘରକୁ ଯାଇ ସୁଖ ପୂର୍ବକ ବିଶ୍ରାମ ନେଲେ ।

ଏଥରେ ସେହି ଲୌହଗୁଣ୍ଡର ଇତିହାସ ଶୁଣନ୍ତୁ । କୁମାରମାନେ ସେହି ଲୌହଚୂର୍ଣ୍ଣ ତଥା ଅବଶିଷ୍ଟ ଲୌହ ଖଣ୍ଡକୁ ଯେମିତି ପକାଇ ଦେଇଛନ୍ତି, ଓଜନିଆ ଲୌହଖଣ୍ଡଟି ପାଣିରେ ତ ବୁଡ଼ିଗଲା, ହେଲେ ଲୌହ ଚୂର୍ଣ୍ଣ ପାଣିରେ ଭାସିବାରେ ଲାଗିଲା । ଓଜନିଆ ଲୌହ ଖଣ୍ଡଟି ପାଣି ଭିତରକୁ ବୁଡୁଥିବା ସମୟରେ ତଳେ ଗୋଟିଏ ବିରାଟ ମାଛ୍ୟ ବୁଲୁଥିଲା । ଆଉ ତାକୁ ଏକ ଖାଦ୍ୟ ଦ୍ରବ୍ୟ ମନେକରି ଗିଳି ଦେଲା । ବର୍ତ୍ତମାନ ଲୌହ ଖଣ୍ଡଟି ମାଛ ପେଟରେ ରହିଲା । ଆଉ ଲୌହ ଚୂର୍ଣ୍ଣ ଯାହା ସମୁଦ୍ର ଜଳରେ ଭାସୁଥିଲା, ତରଙ୍ଗର ତାଡ଼ନାରେ ପ୍ରଭାସକ୍ଷେତ୍ର କୂଳକୁ ଚାଲି ଆସିଲା ଓ କୂଳରେ ଜମି ଗଲା । ସେହି ଲୌହଚୂର୍ଣ୍ଣ କୂଳବର୍ତ୍ତୀ ଅଞ୍ଚଳରେ ଏରକାବନ ହୋଇଗଲା ।

ଏଣେ ସମୁଦ୍ରରେ କେଉଟଟିଏ ଜାଲ ପକାଇ ମାଛ ଧରୁଥିଲା । ସେଦିନ ତା' ଜାଲରେ ଅନେକ ମାଛ ପଡ଼ିଲେ । ଆଉ ଅବଶିଷ୍ଟ ଲୁହା ମୂଷଳ ଗିଳିଥିବା ମାଛଟି ମଧ୍ୟ ଜାଲରେ ପଡ଼ିଥିଲା । କେଉଟ ଅନ୍ୟ ମାଛ ସହିତ ଏହି ବୃହଦାକାର ମାଛଟି ଦେଖି ଖୁବ୍ ଖୁସୀ ହୋଇଗଲା । ଘରକୁ ଫେରି ସେହି ବୃହଦାକାର ମାଛକୁ କାଟିବାରୁ ତା ପେଟରୁ ଲୌହ ମୂଷଳର ଛୋଟିଆ ଖଣ୍ଡଟି ପାଇଲା । ସମସ୍ତେ ସେହି ଲୁହା ଖଣ୍ଡକୁ ଅତି କୌତୂହଳରେ ଦେଖିବାରେ ଲାଗିଲେ । ଏଇଟା କ'ଣ ହୋଇଥାଇ ପାରେ ବୋଲି ନିଜ ନିଜ ମଧ୍ୟରେ ପଚରା ଉଚରା ହେଲେ । ଶେଷରେ ଖଣ୍ଡେ ଲୁହା ବୋଲି ଜାଣିଲେ ଏବଂ ମାଛ ଭୁଲ୍‌ବଶତଃ ଲୋଭରେ ତାହା ଗିଳିଦେଇଥିବ ବୋଲି ଅନୁମାନ କଲେ ।

କେଉଟ ମାଛ କାଟୁଥିବା ସ୍ଥାନରେ ଜରା ନାମକ ଶବର ସେଠାରେ ବସି ସବୁ ଦେଖୁଥିଲା । ଜଙ୍ଗଲୀ ଜୀବଙ୍କୁ ମାରି ସେ ଜୀବିକା ଚଳାଉଥିଲା । ଲୁହା ଟିକୁ ଦେଖି ସେ କେଉଟକୁ କହିଲା, "ଭାଇ ! ସେହି ଲୁହାଟିକୁ ମୋତେ ଦେଇ ଦିଅ । ଲୁହାଟି ଖୁବ୍ ଚକ୍ ଚକ୍ ଦେଖାଯାଉଛି, ଭାରି ଟାଣ ବି ଜଣାଯାଉଛି । ମୁଁ ଏଥିରେ ଶରମୂନ କରି ହରିଣ ଶିକାର କଲେ ହରିଣ ଅତିଶୀଘ୍ର ମରିବ ।"

କେଉଟର ସେହି ଲୁହା କ'ଣ ବା ହୋଇଥାନ୍ତା । ସେ ତ ଲୁହାଟି ଫୋପାଡି ଦେଇଥାନ୍ତା । ତେଣୁ ସେ କୌଣସି ଆପତ୍ତି ନ କରି ଶବରକୁ ଲୁହାଟିକୁ ଦେଇଦେଲା । ଜରା ତାହା ପାଇ ଆନନ୍ଦିତ ହୋଇଗଲା । ଜରା ସଂଗେ ସଂଗେ ଶରମୂନରେ ଲୁହା ଖଣ୍ଡଟି ଯୋଡ଼ିଦେଇ ଯତ୍ନରେ ପାଖରେ ରଖିଲା । ଜରା ସେଇ ବାଣକୁ ଭବିଷ୍ୟତରେ ଭଗବାନଙ୍କ ପାଦକୁ ମାରିବ । ଭଗବାନ ନିଜେ ନିଜେ ସମସ୍ତ ପ୍ରକାର ବିଧାନ କରିଦେଇ ଥାଆନ୍ତି ।

ମହର୍ଷି ଶୌନକ କହିଲେ, "ହେ ମହାଭାଗ ସୂତ ! ଭଗବାନ ସର୍ବଜ୍ଞ । ତାଙ୍କୁ ଏ ସମସ୍ତ କଥା ତ ଅଛପା ରହିନଥିବ । ସେ ଏହି ବିପ୍ରଶାପକୁ ଅନ୍ୟଥା କଲେନାହିଁ କାହିଁକି ? ସେ ତ ସର୍ବସମର୍ଥ । ବିପ୍ରଶାପକୁ ଅନ୍ୟଥା କରିବା ତାଙ୍କ ପକ୍ଷରେ ଏକ ଅତି ତୁଚ୍ଛ କାମ । ସେ ଇଚ୍ଛାକଲେ ନିମିଷକ ମଧ୍ୟରେ ସାରା ବିଶ୍ୱବ୍ରହ୍ମାଣ୍ଡକୁ ବି ବଦଳାଇ ପାରନ୍ତେ ।"

ଶୌନକଙ୍କ ଠାରୁ ଏପରି ପ୍ରଶ୍ନ ଶୁଣି ମହାପ୍ରାଜ୍ଞ ସୂତ କହିଲେ,"ମହାରାଜ ! ବଦଳାଇ ପାରିବେ ନାହିଁ ବୋଲି କଥା ନାହିଁ । ଭଗବାନ ସବୁ କରିପାରନ୍ତି । ଯାହା ସବୁ ଘଟିଲା ତାହା ତ ଭଗବାନଙ୍କ ଇଚ୍ଛା ଅନୁସାରେ ହିଁ ଘଟିଛି । ବିପ୍ରମାନେ ଭଗବାନଙ୍କ ଲୀଳାର ସହାୟକ ମାତ୍ର । ସେମାନେ ଭଗବାନଙ୍କର ପ୍ରେରଣାରେ ହିଁ ଅଭିଶାପ ଦେଇଛନ୍ତି । ଏଣୁ ସମର୍ଥ ହୋଇସୁଦ୍ଧା ସର୍ବଜ୍ଞ ଭଗବାନ୍ ତାହା ଅନ୍ୟଥା କରିବାପାଇଁ ଇଚ୍ଛା କରିନଥିଲେ । ଅପରପକ୍ଷରେ ସେ ସେହି ଅଭିଶାପକୁ ଅନୁମୋଦନ କରିଥିଲେ । ଏବେ ଯଦୁକୁଳର ବିନାଶ ନିମନ୍ତେ ସବୁ ବ୍ୟବସ୍ଥା ଠୁଳ ହୋଇଗଲା । ଯାଦବଙ୍କର ମୁଣ୍ଡ ଉପରେ କାଳ ଭଉଁରୀ ଖେଳିବାରେ ଲାଗିଲା । ଭୟଙ୍କର ରୂପକୁ ଲୁଚାଇ ମହାକାଳ ଯାଦବଙ୍କ ଘରେ ବୁଲାବୁଲି କରିବାରେ ଲାଗିଲା । କେତେକ ବିବେକୀ ପୁରୁଷ ତାକୁ ପ୍ରତ୍ୟକ୍ଷରେ ଦେଖିବାକୁ ମଧ୍ୟ ପାଇଲେ । କିନ୍ତୁ ସର୍ବସାଧାରଣ ଯାଦବମାନେ ଧନମଦରେ ଉନ୍ମତ୍ତ ହୋଇ ବିଷୟଭୋଗ କରିବାରେ ଲାଗିଥିଲେ । ସେମାନେ ପ୍ରଚୁର ସୁରାପାନ କରୁଥିଲେ । ଅଭିଶାପ କଥା ଶୁଣି ଉଗ୍ରସେନ ଥରିବାରେ ଲାଗିଥିଲେ । ଏଣୁ ସେ ପ୍ରତିରକ୍ଷା ନିମନ୍ତେ ଅନ୍ୟକେତେକ ପଦକ୍ଷେପ ମଧ୍ୟ ନେଇଥିଲେ । ଦ୍ୱାରକାରେ ସୁରାପାନ ନିଷେଧାଜ୍ଞା ଜାରି କରିଥିଲେ । ଫଳରେ ଦ୍ୱାରକାକୁ ମଦ ଆମଦାନୀ ପୂରାପୂରି ନିଷିଦ୍ଧ କରା ହୋଇଥିଲା । ଦ୍ୱାରକାବାସୀମାନେ ସାବଧାନତା ଅବଲମ୍ବନ କରୁଥିଲେ । ହେଲେ କାଳ ବିରୋଧରେ କିଛି ତିଷ୍ଠି ରହିପାରେ କି ?"

ଭଗବାନ ବାସୁଦେବଙ୍କର ଦୁଇ ଜଣଙ୍କ ଉପରେ ବିଶେଷ ଅନୁରାଗ ଥିଲା । ଜଣେ ତ ନିଜର ପିତା ବସୁଦେବଙ୍କ ଉପରେ, ଆଉ ଦ୍ୱିତୀୟ ଲୋକ ହେଉଛନ୍ତି ସଖା ଉଦ୍ଧବ । ସେ ତାଙ୍କର ଅନ୍ତିମ ସମୟରେ ଏହି ଦୁଇଜଣଙ୍କୁ ତତ୍ତ୍ୱଜ୍ଞାନର ବିଶେଷ ଉପଦେଶ ଦେଇଛନ୍ତି । ପିତାଙ୍କୁ ସେ ନିଜେ ତ ଉପଦେଶ ଦେବା ଉଚିତ ନୁହେଁ, କାରଣ ଏହା ଲୋକ-ମର୍ଯ୍ୟଦା ବିରୁଦ୍ଧ କାର୍ଯ୍ୟ, ଏଣୁ ତାଙ୍କୁ ଦେବର୍ଷି ନାରଦଙ୍କ ମାଧ୍ୟମରେ ଉପଦେଶ ପ୍ରଦାନ କରିଛନ୍ତି । କିନ୍ତୁ ଉଦ୍ଧବଙ୍କୁ ସେ ନିଜେ ଅନ୍ତିମ ସମୟରେ ଉପଦେଶ ଦେଇଛନ୍ତି । ଏହି ଉପଦେଶ ''ଉଦ୍ଧବ-ଗୀତା'' ନାମରେ ସଂସାରରେ ପ୍ରସିଦ୍ଧି ଲାଭ କରିଛି । ଏହି ଦୁଇଜଣ ଭଗବାନଙ୍କ କୃପାରେ ତତ୍ତ୍ୱଜ୍ଞାନପୂର୍ଣ୍ଣ ଉପଦେଶ ପାଇ କୃତାର୍ଥ ହୋଇଯାଇଛନ୍ତି । ଦୁହେଁ ପରମପଦର ଅଧିକାରୀ ହୋଇଯାଇଛନ୍ତି । ଏମାନେ ବାସ୍ତବରେ ଥିଲେ ପ୍ରଭୁଙ୍କର ନିତ୍ୟ ପାର୍ଷଦ । ପ୍ରଭୁ ଏମାନଙ୍କ ଦ୍ୱାରା ଲୋକ-କଲ୍ୟାଣ କାର୍ଯ୍ୟ କରିଛନ୍ତି ।''

ଏପରି କଥା ଶୁଣି ମହର୍ଷି ଶୌନକ କହିଲେ, '' ହେ ମହାଭାଗ ସୂତ ! ବସୁଦେବ ଓ ନାରଦଙ୍କ ସମ୍ବାଦ ଏବଂ ଉଦ୍ଧବଙ୍କ ସହିତ ଭଗବାନଙ୍କର ସମ୍ବାଦ କୃପାକରି ଆମକୁ କୁହନ୍ତୁ । ହେ ମହାଭାଗ ! ଯଦୁକୁଳର ଏହି ସଂହାର ଲୀଳା କଥା ସ୍ମରଣ ମାତ୍ରକେ ଆମର ରୋମାଞ୍ଚ ହେଉଛି । କୃପାକରି ଆମକୁ 'ନାରଦ-ଗୀତା' ଆଉ 'ଉଦ୍ଧବ-ଗୀତା' ଶୁଣାନ୍ତୁ ।''

ମହାପ୍ରାଜ୍ଞ ସୂତ କହିଲେ,''ଠିକ୍ ଅଛି ମହାରାଜ ! ମୁଁ ଆପଣମାନଙ୍କୁ ଏହି ଦୁଇ ପରମ ପୁଣ୍ୟପ୍ରଦ ସମ୍ବାଦ ପ୍ରଥମେ କହୁଛି । ଏହାପରେ ଯଦୁକୁଳ ସଂହାର ରୂପୀ ପରମ ଦୁଃଖଦାୟୀ କଥା କହିବି । ପ୍ରଥମେ ଆପଣ 'ବସୁଦେବ-ନାରଦ ସମ୍ବାଦ' ଶ୍ରଦ୍ଧାର ସହିତ ଶୁଣନ୍ତୁ । ନାରଦ ତ ହେଉଛନ୍ତି ଭଗବାନଙ୍କର ମନ, ସେ ଯାହା କୁହନ୍ତି ଭଗବାନ୍‌ଙ୍କର ଇଚ୍ଛାରେ ହିଁ କହିଥାନ୍ତି । ଏହା ଅଧିକତର ଗୂଢ଼ମୟ କଥା । ତେଣୁ ଆପଣମାନେ ଅତି ଏକାଗ୍ରତାର ସହିତ ଏହାକୁ ଶ୍ରବଣ କରିବା ଆବଶ୍ୟକ ।''

### ଛପ୍ପୟ

*ଜୋ ଲୋହେ କୀ କୀଲ ବଚୀ ସୋ ସଫରୀ ଖାଈ ।*
*ଉଦରି ପାରି ସୋ ଜରା ବ୍ୟାଧ ସର ନୋଁକ ଲଗାଈ ॥*
*ଯଦୁକୁଲ କୋ ସଂହାର ସାଜ ସବରୋ କଈ ସାଦ୍ୟୋ ।*
*ମହାକାଲ କୋ କଠିନ କ୍ରୂର ଅବ ଘଣ୍ଟା ବାଜ୍ୟୋ ॥*
*ସଖା ଔର ନିଜ ଜନକ କୂ, ତତ୍ତ୍ୱଜ୍ଞାନ ଅନ୍ତିମ ଦୟୋ ।*
*ନାରଦ ମୁନି ବସୁଦେବ ତେଂ, ଉଦ୍ଧବ ତେଂ ଆପୁହିଁ କହ୍ୟୋ ॥*



# ବସୁଦେବ-ନାରଦ ସମ୍ବାଦ

ଗୋବିନ୍ଦଭୁଜଗୁପ୍ତାୟାଂ ଦ୍ୱାରବତ୍ୟାଂ କୁରୁଦ୍‌ବହ ।
ଅବାତ୍‌ସୀନ୍ନାରଦୋଽଭୀକ୍ଷଣଂ କୃଷ୍ଣୋପାସନଲାଲସଃ ।।
ତମେକଦା ତୁ ଦେବର୍ଷିଂ ବସୁଦେବୋ ଗୃହାଗତମ୍ ।
ଅର୍ଚ୍ଚିତଂ ସୁଖମାସୀନମଭିବାଦ୍ୟେଦମ ବ୍ରବୀତ୍ ।।☆

(ଶ୍ରୀ. ଭା. ୧୧ ସ୍କ. ୨ୟ ଅ.୧୩ ଶ୍ଲୋକ)

### ଛପ୍‌ପୟ

*ଅବ ନାରଦ-ବସୁଦେବ ସୁନହୁ ସମ୍ବାଦ ପ୍ରଥମ ମୁନି ।*
*ଭଜୈ ମୋହ ଭ୍ରମ ସକଲ ସରଲ ଉପଦେଶ ସୁଖଦ ସୁନି ।।*
*ଏକ ଦିବସ୍ ବସୁଦେବ ଭବନ ନାରଦ ମୁନି ଆୟେ ।*
*ସବ ବିଧି କରି ସତ୍‌କାର ମୃଦୁଲ ଆସନ ବୈଠାୟେ ।।*
*ବୋଲେ ଶ୍ରୀବସୁଦେବଜୀ, ମୁନିବର ! ଅବ ହମ କା କରେଂ ।*
*ଦେହୁ ସୁଗମ ଉପଦେଶବର, ଅନାୟାସ ଜଗ ତେଂ ତରେଂ ।।*

ଭଗବାନଙ୍କର ଦର୍ଶନ ପାଇବାପରେ ସୁଦ୍ଧା ଯେ ପର୍ଯ୍ୟନ୍ତ ତତ୍ତ୍ୱଜ୍ଞାନ ନିର୍ଣ୍ଣୟ ହୋଇନଥାଏ, ସେ ପର୍ଯ୍ୟନ୍ତ ଭ୍ରମ ରହିଥାଏ । ଏଣୁ ଆଚାର୍ଯ୍ୟମାନେ ଭାଗବତ-ଧର୍ମ ପ୍ରଚାର ଉପରେ ଅଧିକ ଗୁରୁତ୍ୱ ଦେଇଥା'ନ୍ତି । ଯେ ପର୍ଯ୍ୟନ୍ତ ଭାଗବତ-ଧର୍ମର ଧାରଣା ହୋଇନଥାଏ ସେ ପର୍ଯ୍ୟନ୍ତ ସଂସାର ବନ୍ଧନ ଛିଡ଼େନାହିଁ । ପରମପଦ ପ୍ରାପ୍ତି ତୀବ୍ରତର

---

☆ ଶୁଣ ପରୀକ୍ଷ ମନସ୍ଥିରେ । ଅଦ୍‌ଭୁତ ଦ୍ୱାରକା ନଗରେ ।।
ଗୋବିନ୍ଦ ଭୁଜଦଣ୍ଡ ବଳେ । ଯାଦବେ ଥା'ନ୍ତି ସୁଖଭୋଳେ ।।
ଯହିଁ ନାରଦ ଥା'ନ୍ତି ନିତି । କୃଷ୍ଣ ଭକତି ହୃଦେ ଚିନ୍ତି ।।
ନାରଦ ମୁନି ଏକ ଦିନେ । ଗଲେ ବସୁଦେବ ଭୁବନେ ।।
ନାରଦ ଆଗମନ ଭାବ । ଦେଖି ମିଳିଲେ ବସୁଦେବ ।।
ଚରଣେ କରି ନମସ୍କାର । ଭାବେ ବୋଇଲେ ଯଦୁବୀର ।।
(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୨ୟ ଅ.)

ସାଧନା ବିନା ସମ୍ଭବ ହୋଇନଥାଏ । ଲୋକମାନେ ସାଂସାରିକ କର୍ମ ଜୀବିକା ନିର୍ବାହ ନିମନ୍ତେ ରୋଜଗାର କରି ଉଦରପୂର୍ତ୍ତି ଆଦିକୁ ଅତି କଠିନ ବୋଲି କହିଥା'ନ୍ତି । କିନ୍ତୁ ଏହି ପରମାର୍ଥ ପଥ ହେଉଛି ତାହାଠାରୁ ଅଧିକ କଠିନ । ଅତି ଧାରୁଆ ଛୁରୀରେ ଚାଲିବା ଭଳି କଠିନ ହୋଇଥାଏ । ଉଗ୍ରସାଧନା ବିନା କେହି ବି ସିଦ୍ଧି ପ୍ରାପ୍ତ ହୋଇନାହାନ୍ତି । ସାକ୍ଷାତ୍ ଜ୍ଞାନାବତାର ଭଗବାନ୍ କପିଳଙ୍କ ମାତା ଦେବହୂତିଙ୍କୁ ଅତି ଉଗ୍ର ତପସ୍ୟା କରିବାକୁ ପଡ଼ିଥିଲା; ଏବଂ ଏହାପରେ ମାତା ଦେବହୂତିଙ୍କୁ ସିଦ୍ଧିପ୍ରାପ୍ତ ହୋଇଥିଲା । ଧ୍ରୁବଙ୍କ ଭଳି ଦୁଇ ଚାରିଟା ମାତ୍ର ଉଦାହରଣ ଦେଖିବାକୁ ମିଳେ, ଯେଉଁମାନେ ଅଳ୍ପ ସମୟ ସାଧନାରେ ସିଦ୍ଧି ପାଇଥିଲେ । ତେଣୁ ଏମାନଙ୍କୁ ସବୁକ୍ଷେତ୍ରରେ ଉଦାହରଣ ରୂପେ ଅବତାରଣା କରିବା ଠିକ୍ ହେବ ନାହିଁ । ଏହା ଅପବାଦ ହେବ । ଯେପରି ଧନ,ବ୍ୟବସାୟ ଆଦିରେ ପ୍ରାପ୍ତ ହୋଇଥାଏ, କାହାର ବାପ ମରିଗଲା, ତାକୁ ହଠାତ୍ କୋଟିଏ ଦୁଇକୋଟି ମିଳିଗଲା, ଅଥବା ଜୁଆ ଖେଳରୁ ସହସା ବିପୁଳ ଧନ ମିଳିଗଲା - ଏସବୁ ଏହି ଜନ୍ମର ରୋଜଗାର ହୋଇନଥାଏ । ଏ ସମସ୍ତ ହେଉଛି ପୂର୍ବଜନ୍ମର ସଂଚିତ ଧନ । ଯେପରି ଭୋଜନ କଲେ ପେଟ ପୂରେ । କିନ୍ତୁ କାହାଘରକୁ ଯାଇ ପୂର୍ବଦିନ ଭୋଜିର ବାସିଖାଦ୍ୟ ଭୋଜନ କରି କେହି ପେଟ ପୂରାଇଲେ, ତାହା ଭୋଜନ କରିବା ସହିତ ତୁଳନା କରାଯାଇନପାରେ । ଆଜି ତ ତିଆରି ହୋଇନାହିଁ, ଗତକାଲି ତିଆରି ହୋଇଥିଲା, ଏଥିରେ ଶ୍ରମ ତ କିଛି ହୋଇନାହିଁ । ଧ୍ରୁବଙ୍କୁ ଏହି ଜନ୍ମରେ ମାତ୍ର ଛ'ମାସ ସାଧନା କରି ସିଦ୍ଧି ମିଳିଯାଇଥିଲା । କିନ୍ତୁ ପୂର୍ବଜନ୍ମରେ ସେ କେତେ କଠିନ ତପସ୍ୟା କରିଥିଲେ ତାହା କେହି ଭାବୁ ନାହାନ୍ତି । କହିବା କଥା, ଅତି ଉଗ୍ର ସାଧନା ଦ୍ୱାରା ସେ ଅନେକ ପୂର୍ବରୁ ସିଦ୍ଧି ପାଇଯାଇଥିଲେ । ମାତ୍ର ଛ'ମାସର ସାଧନା ବାକୀ ରହିଥିଲା । ଏହି ଜନ୍ମରେ ତାହା ପୂରଣ ହେଲା । ସୁନ୍ଦର ସୁନ୍ଦର ବସ୍ତ୍ର ପରିଧାନ କରିବା, ଠିକ୍ ସମୟରେ ଭଲ ଖାଦ୍ୟ ପରିପାକ କରି ଭୋଜନ କରିବା, ସଂସାରରେ ପଦ-ପ୍ରତିଷ୍ଠା ପ୍ରାପ୍ତ ହେବା, ଅତି କୋମଳ ତୂଳିକା ଶଯ୍ୟାରେ ଶୟନ କରି ସମୟ ବ୍ୟତୀତ କରିବା- ଏ ସମସ୍ତ ପ୍ରକାର କର୍ମରେ ଯଦି ଭଗବାନ ମିଳିପାରୁଥାନ୍ତେ ତେବେ ସଂସାରରେ ଯେତେ ଧନୀଲୋକ ଅଛନ୍ତି ସମସ୍ତେ ପରମପଦର ଅଧିକାରୀ ହୋଇଯାଆନ୍ତେ । **ଯେ ପର୍ଯ୍ୟନ୍ତ ନିଜର ସର୍ବସ୍ୱ ଭଗବଦ୍ ପଦରେ ଅର୍ପଣ କରାନଯାଇଛି, ଯେ ପର୍ଯ୍ୟନ୍ତ ବିଶୁଦ୍ଧ ଅନ୍ତଃକରଣରେ ଭାଗବତ-ଧର୍ମ ପାଳନ କରାନଯାଇଛି, ସେ ପର୍ଯ୍ୟନ୍ତ ପରମପଦ ପ୍ରାପ୍ତ ହୋଇପାରେ ନାହିଁ । ମନ ବିଷୟ ଭୋଗରେ ଲାଗି ରହିଥିବ, ଏଣେ କପାଳରେ ତିଳକ ଲଗାଇ ଲୋକରେ ପ୍ରତିଷ୍ଠା ଲାଭ କରି ଲୋକଙ୍କୁ ଲୁଣ୍ଠନ କରିବା ପାଇଁ ଭକ୍ତ ହେବାକୁ ମହାନ୍ ଦମ୍ଭ କୁହାଯାଏ ।** ଏପରି ଦାମ୍ଭିକ ପାଖକୁ ଭଗବାନ ବି ଯଦି ଆସନ୍ତି ତେବେ ସେ ଭଗବାନଙ୍କ ସହିତ ବି କଥା ହେବନାହିଁ ।''

ଦିନେ ନାରଦ ଭଗବାନଙ୍କୁ କହିଲେ, "ପ୍ରଭୁ ! ଅମୁକ ଶେଠ ଖୁବ୍ ଦାନ ଧର୍ମ କରୁଛି । ଆପଣ ତାକୁ ଦର୍ଶନ ଦେବା ଉଚିତ । ସେ ଅନେକ ଧର୍ମଶାଳା କରିଛି । ଅନ୍ନଛତ୍ର ଖୋଲିଛି । ଆପଣ ତାକୁ ଦର୍ଶନ ଦିଅନ୍ତୁ ।"

ଏପରି କଥା ଶୁଣି ଭଗବାନ୍ ହସି ହସି କହିଲେ, "ସେ କ'ଣ ତା' ଘରୁ ନେଇ ଦାନଧର୍ମ କରୁଛି ? ସେ ବ୍ୟବସାୟୀଙ୍କଠାରୁ ଦାନଧର୍ମ କରିବା ପାଇଁ ସବୁକିଛି ସଂଗ୍ରହ କରି ସେଥିରେ ଯାହା କିଛି କରୁଛି ।"

ନାରଦ କହିଲେ, "ଯାହା ହେଉ ପଛେ; ସେ ପୁଣ୍ୟକର୍ମ ତ କରୁଛି ।"

ଭଗବାନ୍ କହିଲେ, "ପୁଣ୍ୟ କରୁଛି, ତା ନାଁ ବି ବଢୁଛି । ସେ କ'ଣ ମୋ ପାଇଁ କିଛି କରୁଛି ? ତା' ନିଜ ନାମ ପାଇଁ କରୁଛି, ତା' ନାମ ବଢୁଛି ।"

ନାରଦ କହିଲେ, "ପ୍ରଭୁ ! ଦାନ ଯେମିତି ଦିଆ ହେଲେବି ଫଳ ଶୁଭ ହୋଇଥାଏ । ଶ୍ରଦ୍ଧାରେ ଦିଆଯାଉ, ଅଥବା ଅଶ୍ରଦ୍ଧାରେ, ପ୍ରତିଷ୍ଠା ପାଇଁ ଦିଆଯାଉ ଅଥବା ନାମ ବର୍ଦ୍ଧନ ପାଇଁ—ଦାନ କେବେ ବି ବ୍ୟର୍ଥ ହୁଏ ନାହିଁ ।"

ଭଗବାନ୍ କହିଲେ, "ବ୍ୟର୍ଥ ହେଉଛି ବୋଲି ମୁଁ କେତେବେଳେ କହିଲି ! ସେ ଯେତେ ପୁଣ୍ୟ କରୁଛି ତାକୁ ସେତିକି ସ୍ୱର୍ଗ ସୁଖ ମିଳୁଛି । ମୋ ଦର୍ଶନର କି ଆବଶ୍ୟକତା ଅଛି ?"

ଏପରି କଥା ଶୁଣି ନାରଦ ବିରକ୍ତ ହୋଇଗଲେ ଏବଂ କହିଲେ, "ପ୍ରଭୁ ! ଏବେ ଆପଣ ବ୍ୟବସାୟୀଙ୍କ ଭଳି କଥା କହୁଛନ୍ତି । ତା' ପୁଣ୍ୟର ଫଳ ଯଦି ତରାଜୁରେ ଓଜନକରି ତାକୁ ଦିଆ ହେଉଥାନ୍ତା ତେବେ ଆପଣଙ୍କର କୃପାକୁ କିପରି ଅର୍ଥ କରାଯାଇପାରନ୍ତା କୁହନ୍ତୁ ତ ! ଆପଣ କୃପାସିନ୍ଧୁ, ଆପଣ ତା' ଉପରେ କୃପାକରନ୍ତୁ । ସେ ଶୁଭକାର୍ଯ୍ୟ କରୁଛି, ଆପଣ ତାକୁ ଦର୍ଶନ ଦିଅନ୍ତୁ ।"

ଭଗବାନ ହସି ହସି କହିଲେ, "ନାରଦେ ! କୃପା ଯିଏ ଚାହିଁବ ତାକୁ ସିନା କୃପା ଦିଆ ହୁଅନ୍ତା; ଯିଏ ଧନ ଚାହୁଁଛି, ଯିଏ ମାନ-ସମ୍ମାନ ଚାହୁଁଛି, ଯିଏ ପ୍ରତିଷ୍ଠା ଚାହୁଁଛି, ମୁଁ ତ ସେମାନଙ୍କୁ ତାହା ସବୁ ଦେଉଛି ।"

ନାରଦ କହିଲେ, "ହଁ ପ୍ରଭୁ ! ମୁଁ ସେୟା ତ କହୁଛି । ଧନ ମାନ-ସମ୍ମାନ ସିଏ ଚାହୁଁଛି, ସେଥିପାଇଁ ସେ ନିଜେ ଉଦ୍ୟମ ଅବ୍ୟାହତ ରଖିଛି, ଆପଣ ତାହା ଦେଉଛନ୍ତି, ଏଥିରେ କି ବିଶେଷତା ରହିଲା ? ସେ ତ ସାଂସାରିକ ବ୍ୟବସାୟ କରୁଛି । ଧନ ଓ ମାନ ଠାରୁ ବଳି ହେଉଛି ଆପଣଙ୍କର ଦର୍ଶନ । ଧନ ମାନ ତ ଆପଣ ତାକୁ ତା' ପୁଣ୍ୟ ବଳରେ ଦେଉଛନ୍ତି । ଦର୍ଶନ କୃପାକରି ଦିଅନ୍ତୁ । ଆପଣ ଆପଣଙ୍କ କୃପାଳୁ ନାମକୁ ସାର୍ଥକ

କରନ୍ତୁ । ଫଳ ବିକାଳି ଫଳ ବିକିବା ପାଇଁ ଆପଣଙ୍କ ଦୁଆରକୁ ଆସିଥିଲା, ଆପଣ ତା' ଉପରେ ଆପଣଙ୍କର ଅସୀମ କୃପା ବୃଷ୍ଟି କରିଥିଲେ । ଆପଣ ତା'ଠାରୁ ଫଳ ନେଲେ, ବଦଳରେ ଚାଉଳ ଦେଲେ- ଏହା ତ ସାଧାରଣ ବ୍ୟବହାର । ଚାଉଳକୁ ରତ୍ନ ମଣିମାଣିକ୍ୟ କରିଦେଲେ, ଏହାତ ଆପଣଙ୍କର ପରମ ଉଦାରତା- ଏଇ ଶେଠ ଉପରେ ଏପରି କିଛି କୃପା କରନ୍ତୁ ।''

ଶ୍ରୀଭଗବାନ କହିଲେ, ''ଆରେ ବାବୁ ନାରଦ ! ତୁମେ ମୋ ସହିତ କାହିଁକି ଲାଗିଛ ? ସେଇ ମାଳିଆଣୀ ତ ମୋ କୃପା ପାଇଁ କେତେ ନା କେତେ ଦିନରୁ ଆର୍ତ୍ତଭାବେ ଚାହିଁ ରହିଥିଲା । ଫଳ ବିକିବା ଥିଲା ତା'ର ଏକ ସାମାନ୍ୟ ଉପଲକ୍ଷ୍ୟ ମାତ୍ର । ସେ ଏହା ମାଧ୍ୟମରେ ମୋର ଦର୍ଶନ ଚାହୁଁଥିଲା । ଫଳ ବିକିବା ତା'ର ଧ୍ୟେୟ ନଥିଲା । ଧ୍ୟେୟ ଥିଲା ମୋତେ ପ୍ରେମ କରିବା । ମୋ ପ୍ରତି ତା'ର ପ୍ରଗାଢ଼ ପ୍ରେମ, ତାକୁ ମୋ ଦୁଆର ପର୍ଯ୍ୟନ୍ତ ଆକର୍ଷଣ କରି ଆଣିଲା । ସେ ମୋ ପାଇଁ କେତେ ବାଟରୁ ଆସି ଘଣ୍ଟା ଘଣ୍ଟାଧରି ମୋତେ ଅପେକ୍ଷା କରି ବସିଛି ତା'ର କେହି କଳନା କରିନାହାନ୍ତି । ବିନା ଡାକରାରେ ସେ ଏମିତି କେତେ ଥର ଆସିଛି । ମୁଁ ତା' ସହିତ କେବେ ବି କଥା ହେଉ ନଥାଏ, ନିଷ୍ଠୁର ହୋଇଯାଉଥାଏ, ତେବେ ବି ସେ ମୋତେ ଛାଡ଼ିଲା ନାହିଁ । ସେ କିଛି ଇଚ୍ଛା କରୁନଥିଲା, କିଛି ଚାହୁଁ ନଥିଲା- କେବଳ ଚାହୁଁଥିଲା, ମୁଁ ତା' ହାତରୁ ଫଳ ନିଏ । ମୋ ସ୍ପର୍ଶ ନିମନ୍ତେ ସେ ଥିଲା ଭୋକିଲା । ତେଣୁ ମୁଁ ତା' ଉପରେ କୃପା କଲି । ଫଳ ବଦଳରେ ଫଳ ଦେଲି । ସ୍ପର୍ଶ ଇଚ୍ଛା ରଖିଥିବାରୁ ସ୍ପର୍ଶ ଦେଲି । ସର୍ବୋପରି କୃପା ଚାହିଁଥିବାରୁ କୃପା ବି ଦେଲି । ଆଉ ତୁମ ଶେଠର ତ ମୋ ପ୍ରତି ଟିକିଏ ବୋଲି ଧ୍ୟାନ ନାହିଁ, ସବୁବେଳେ 'ହା ଟଂକା, ହା ଟଂକା' ବୋଲି ଧ୍ୟାନ କରିବାରେ ଲାଗିଛି ।''

ନାରଦ କହିଲେ, ''ସେ ଆଜ୍ଞା ବଡ଼ ଅଜ୍ଞାନୀ । ଆପଣଙ୍କ ପ୍ରତି ତା'ର ଧ୍ୟାନ ନ ଆସୁ ପଛେ, ଆପଣଙ୍କର ତ ତା' ପ୍ରତି ଦୃଷ୍ଟି ପଡ଼ିବା କଥା ।''

ଭଗବାନ କହିଲେ, ''ନାରଦେ ! ମୋର ତା' ପ୍ରତି ଧ୍ୟାନ ନାହିଁ ବୋଲି ତୁମେ କିପରି କହୁଛ ? ତା' ପ୍ରତି ଯଦି ମୋର ଧ୍ୟାନ ନଥାନ୍ତା ତେବେ ତୁମ ଭଳି ମୋର ଅନନ୍ୟ ଭକ୍ତର ତା' ଉପରେ ଏଡ଼େ ଦୟା ଆସନ୍ତା କିପରି ? ତା' ପାଇଁ ମୋ ପାଖରେ ଓକିଲାତି କାହିଁକି କରନ୍ତ । ହେଲେ, ଏବେ ସେ ମୋର ଦର୍ଶନ ନିମନ୍ତେ ଅଧିକାରୀ ହୋଇନାହିଁ । ମୁଁ ତୁମକଥାରେ ତା' ପାଖକୁ ଯଦି ବି ଯାଏ, ସେ ମୋତେ ଚାହିଁବ ନାହିଁ । ଯାହାର ଉଦର କଣ୍ଠପର୍ଯ୍ୟନ୍ତ ପୂରିଯାଇଛି ସେପରି ଲୋକ ଆଗରେ ଯେତେ ସ୍ୱାଦିଷ୍ଟ ଭୋଜନ ରଖିଲେ ବି ସେ ତାକୁ ଆଡ଼ଆଖିରେ ବି ଚାହିଁବ ନାହିଁ ।''

ନାରଦ କହିଲେ, ''ପ୍ରଭୁ ! ଥରେ ଚାଲନ୍ତୁ ନା !''

ଭଗବାନ୍ କହିଲେ, ''ହଉ ! ତୁମେ କହୁଛ ଯଦି, ଚାଲ । କିନ୍ତୁ ନିରାଶ ହେବ ।''

ଏପରି କହି ଭଗବାନ ଜଣେ ବୃଦ୍ଧ ବ୍ରାହ୍ମଣର ରୂପ ଧାରଣ କରି ସେହି ଶେଠର ଦୁଆର ମୁହଁରେ ପହଞ୍ଚିଲେ । ସେ ଦ୍ୱାରପାଳକୁ କହିଲେ, ''ଯାଅ, ଶେଠକୁ କହିବ ତାଙ୍କୁ ଦେଖାକରିବା ପାଇଁ ବହୁତ ଦୂରରୁ ଜଣେ ବୃଦ୍ଧ ବ୍ରାହ୍ମଣ ଆସିଛି ।''

ଦ୍ୱାରପାଳ ଶେଠକୁ ବ୍ରାହ୍ମଣ କହିବାନୁସାରେ ଜଣାଇଲା । ଶେଠ ଏହା ଶୁଣି ବିରକ୍ତ ହେଲା । ଆଉ କହିଲା, ''ମୋର ଏତେ ସମୟ ନାହିଁ ଯେ ଯିଏ ଆସୁଥିବ, ଡାକୁଥିବ ମୁଁ ତାକୁ ଦେଖାଦେବି । ବାହାରେ ଗୁମାସ୍ତା ନାହିଁ କି ? ଗୁମାସ୍ତାକୁ କହିଦେ, ବ୍ରାହ୍ମଣ ଭୋଜନ ଚାହୁଁଥିଲେ ତାଙ୍କୁ ଭୋଜନ ଦେଇଦେବ । ଯଦି ଲୁଗାପଟା ଦରକାର କରେ, ଦେବ । ଆଉ କିଛି ପଇସା ଦେଇ ତାକୁ ବିଦା କରିଦିଅ ।''

ଦ୍ୱାରପାଳ ଗୁମାସ୍ତାକୁ ଶେଠ କହିବା କଥା କହିଲା । ଗୁମାସ୍ତା ଏଣୁ ତେଣୁ କେତେ ମିଛ-ସତ କହି ବ୍ରାହ୍ମଣଙ୍କୁ ବିଦା କଲା । ଭଗବାନ୍ ନାରଦଙ୍କୁ କହିଲେ, ''କ'ଣ, ଦେଖିଲ ତ ? ମୁଁ ପ୍ରଥମରୁ କ'ଣ କହିଥିଲି ? ମୋ ଦର୍ଶନ ନିମନ୍ତେ ତା'ର ଅଭିଳାଷ ହୋଇନାହିଁ ।''

ନାରଦ କହିଲେ, ''ପ୍ରଭୁ ! ଆପଣ ବି ଏମିତି ବେଶ ଧାରଣ କଲେ ଯେ ଦର୍ଶନ କରିବାକୁ ଇଚ୍ଛାଥିବା ଲୋକ ବି ମୁହଁ ମୋଡ଼ିଦେବ । ପ୍ରଭୁ ! ମାଗିବା ପାଇଁ ବ୍ରାହ୍ମଣ ବେଶର ପ୍ରସିଦ୍ଧି ଅଛି । ବ୍ରାହ୍ମଣକୁ ଦେଖିବା କ୍ଷଣି ଲୋକମାନେ ଜାଣନ୍ତି ଯେ ଇଏ କିଛି ମାଗିବାକୁ ଆସିଛି । ବ୍ରାହ୍ମଣ ଯଦି କିଛି ନ ମାଗେ, ତେବେ ବି ଲୋକମାନେ ତାକୁ ସନ୍ଦେହ କରନ୍ତି । ଭାବନ୍ତି, 'ଏଇଲେ ସିନା ମାଗୁନାହିଁ, ହେଲେ ମାଗିବା ପାଇଁ ସେ ନିଶ୍ଚୟ କିଛି ଉପାୟ କରୁଥିବ । ବ୍ରାହ୍ମଣ ପୁଣି କିଛି ନମାଗି ରହିପାରିବ ?'

ଭଗବାନ୍ କହିଲେ, ''ଆଚ୍ଛା ! ତା'ହେଲେ ବ୍ରାହ୍ମଣ ବେଶ ମାଗିବା ପାଇଁ ପ୍ରସିଦ୍ଧ । ତା'ହେଲେ ତ୍ୟାଗୀ ବେଶ ଧରିବା । ତ୍ୟାଗୀ ବେଶ ଦେଖି ଧନୀ ଲୋକମାନେ ଖୁବ୍ ପ୍ରଭାବିତ ହୋଇଥା'ନ୍ତି ।''

ନାରଦ କହିଲେ, ''ହଁ ଆଜ୍ଞା ! ଆପଣ ତ୍ୟାଗୀ ବେଶରେ ଯାଆନ୍ତୁ ।''

ଏଥର ଭଗବାନ ଜଣେ ତ୍ୟାଗୀର ବେଶ ଧଇଲେ । କଦଳୀ ଫଡ଼ାର କାଡ଼ିଆ ପରିଧାନ କରି ନାରଦଙ୍କୁ ଚେଲା ରୂପେ ଧରି ସେହି ଧନୀ ଶେଠ ଦ୍ୱାରଦେଶରେ ପହଞ୍ଚିଗଲେ । କିଛି ଖାଇବାର କି ପିଇବାର ନାହିଁ । ଧୂନୀ ତିଆରି କରି ଅଲେଖ ନିରଂଜନ ନାମ କରିବାରେ ଲାଗିଲେ । ଲୋକମାନେ କହିଲେ, ''ଶେଠ ଆଜ୍ଞା ! ଜଣେ ମହାନ୍ ତ୍ୟାଗୀ ଆସିଛନ୍ତି । ଆପଣଙ୍କ ଦ୍ୱାର ଦେଶରେ ବସିଛନ୍ତି । କିଛି ବୋଲି କିଛି ଖିଆପିଆ କରୁନାହାନ୍ତି ।''

ଧନୀକ ଶେଠ କହିଲେ, ''ଆରେ ! ତୁମେମାନେ ଏତିକି ବି ଜାଣିନାହଁ, ତ୍ୟାଗୀ

ହୋଇଥିଲେ ଶେଠର ଘର ଆଗରେ ଧୂନୀ ରଚନା କାହିଁକି କରନ୍ତା ? ଗଙ୍ଗାକୂଳରେ କୌଣସି ଏକାନ୍ତ ସ୍ଥାନରେ ରହି ଥାଆନ୍ତା । କେହି ନକଲୀ ବହୁରୂପୀ ହୋଇଥିବ । ସେ ଯାହା ମାଗୁଛି ତାକୁ ଦେଇ ବିଦା କରିଦିଅ ।''

କଥା କ'ଣକି, ଏହା ପୂର୍ବରୁ ଜଣେ ତ୍ୟାଗୀ ମହାତ୍ମା ଆସିଥିଲେ । ସେ କେବଳ କାଛିଆଟିଏ ମାତ୍ର ପରିଧାନ କରିଥିଲେ । ଚିଲମ ଆଉ ଗୁଲି ଥିଲା ତାଙ୍କର ଏକମାତ୍ର ସମ୍ପତ୍ତି । ସେ ଚିଲମରେ ତମାଖୁ ବା ଦୋକ୍‌ତା ପୂରାଇ ଟାଣନ୍ତି, ଆଉ ଥରେ କି ଦି'ଥର ଟାଣିବା ପରେ ପୋଡ଼ା ଦୋକତା ତଳେ ପକାଇ ଚାଲି ଯାଆନ୍ତି । ଦୋକତାରେ ନିଆଁ ଧରି ନାଲି ଦେଖାଯାଏ । ଆଉ ଥଣ୍ଡା ହେବାପରେ ସେହି ଦୋକତା ପାଉଁଶ ତଳେ ସୁନା ମୋହରଟିଏ ମିଳେ । ଗାଁ ଲୋକମାନେ ତ୍ୟାଗୀ ମହାତ୍ମାଙ୍କର ଅପୂର୍ବ ମାହାତ୍ମ୍ୟ ଏପରି ଜାଣିଲେ ଯେ ତାଙ୍କ ଚିଲମ ଦୋକତାରୁ ସୁନା ମିଳେ । ମହାତ୍ମା କିନ୍ତୁ ଗୋଟିଏ ଗ୍ରାମରେ ଗୋଟିଏ ରାତିରୁ ଦୁଇଟି ରାତି ରୁହନ୍ତି ନାହିଁ । ଶେଠ ଯେଉଁ ଗାଁର ଲୋକ ସେହି ଗାଁର ଆଖପାଖ ପ୍ରାୟ ସମସ୍ତ ଗ୍ରାମରେ ତ୍ୟାଗୀ ମହାତ୍ମା ଏହିପରି ସୁନା ମୋହର ଛାଡ଼ି ଆସିଥିଲେ । ଲୋକମାନେ ତ୍ୟାଗୀ ମହାତ୍ମାଙ୍କୁ ଖୋଜିବାରେ ଲାଗିଗଲେ । ମହାତ୍ମାଙ୍କୁ କେହି କେହି ଘରକୁ ଡାକି ଅତିଥି ବି କଲେ । ମହାତ୍ମାଙ୍କ ଦୋକତା ସେହି ସେହି ଘରେ ସୁନାମୋହର ବି ହୋଇଯାଉଥିଲା । ପ୍ରଚାର ଖୁବ୍ ହେଲା । ଶହେ ଦେଢ଼ ଶହ ଲୋକ ଏହା ସ୍ୱଚକ୍ଷୁରେ ଦେଖିଛନ୍ତି । ଅବିଶ୍ୱାସ କରିବାର ନୁହେଁ ।

ଶେଠ ଏହି କଥା ଜାଣି ମହାତ୍ମାଙ୍କୁ ତାଙ୍କ ଘରେ ଅତିଥି କଲା । ପାଞ୍ଚ ଦିନ ପର୍ଯ୍ୟନ୍ତ ମହାତ୍ମା ଶେଠର ଘରେ ରହିଲେ । ପ୍ରତ୍ୟେକ ଦିନ ଗୋଟିଏ ଗୋଟିଏ ଗିନି ଶେଠ ସେହି ପୋଡ଼ା ଦୋକତାରୁ ପାଉଥାଏ । ଏହା ଦେଖି ଶେଠ ମହାତ୍ମାଙ୍କୁ ଖୁବ୍ ସେବା କରିବାରେ ଲାଗିଲା । ଯେତେବେଳେ ତାଙ୍କ ଉପରେ ଶେଠର ପୂରା ବିଶ୍ୱାସ ହୋଇଯାଇଥିବା ମହାତ୍ମା ଜାଣିଲେ, ଶେଠକୁ ଏକାନ୍ତରେ ଡାକି କହିଲେ, ''ମୁଁ ଗୋଟିଏ ଅତି ଗୋପନୀୟ କଥା କହିବି । କାହାକୁ କହିବ ନାହିଁ ବୋଲି ମୋତେ କଥା ଦିଅ ।''

ଶେଠ କହିଲା, ''ଆପଣ ବାରଣ କରୁଛନ୍ତି, କଦାପି କାହାକୁ କହିବି ନାହିଁ ।''

ସାଧୁ କହିଲା, ''ଦେଖ ! କଥା ଚାରିକାନ ଭିତରେ ଗୁପ୍ତ ରହେ । ଛ'କାନ ହୋଇଗଲେ ଚାରିଆଡ଼େ ପ୍ରଚାର ହୋଇଯାଏ । ଗୋପନୀୟ କଥା ପ୍ରଚାର ହୋଇଗଲେ ଅସତ୍ୟ ହୋଇଯାଏ । ତୁମେ ତୁମର ସ୍ତ୍ରୀ, ପିଲା, ବନ୍ଧୁବାନ୍ଧବ କି ଅତି ଆପଣାର ବି ମନେକରୁଥିବା କାହାକୁ ବି କହିବ ନାହିଁ । ମୁଁ ଗୋଟିଏ ବିଦ୍ୟା ଜାଣିଛି । ତୁମର ଧନ ଆଉ ସୁନାକୁ ଦଶଗୁଣ କରିଦେଇ ପାରିବି । ମହଣେ ସୁନା ଗାତକରି ପୋତିଦେଲେ ଦଶ ଦିନରେ ଦଶ ମହଣ ହୋଇଯିବ ।''

ଶେଠ ଏପରି କଥା ଶୁଣିବା କ୍ଷଣି କାକୁତି ମିନତି କରି କହିଲା, ''ମହାରାଜ ! ମୋ

ପାଖରେ ଥିବା ସୁନାକୁ ବି ଦଶଗୁଣ କରିଦିଅନ୍ତୁ । ମୋ ପାଖରେ ଏବେ ପାଞ୍ଚମହଣ ସୁନା ଅଛି । ଆପଣ ତାକୁ ପ୍ରଥମେ ଦି'ଗୁଣ କରିଦିଅନ୍ତୁ । ଏହାପରେ ସ୍ତ୍ରୀମାନଙ୍କର ଅଳଙ୍କାର-ପତ୍ରକୁ ଦୁଇଗୁଣ କରିବା ।''

ସାଧୁ କହିଲା, ''ହଁ, ପ୍ରଥମେ ପାଞ୍ଚମହଣ କର । ହେଲେ ମୁଁ ତ ସୁନା ଛୁଏଁ ନାହିଁ । ସବୁକାମ ତୁମକୁ ହିଁ କରିବାକୁ ପଡ଼ିବ । ପ୍ରଥମେ ତୁମେ ବଗିଚାର ଚାରି କୋଣରେ ଚାରିଟି ଗାତ ଖୋଳ । ତହିଁରେ ବାଲି ଭର୍ତ୍ତି କର । ଅଧରାତିରେ ପ୍ରତ୍ୟେକ ଗାତରେ ସମ ପରିମାଣ ସୁନା ରଖିବ । ସୁନା ଉପରେ ବାଲି ଘୋଡ଼ାଇ ଦେବ । ଏହାପରେ ଗୋବର ଘଷି ଆଣି ଲଦିଦେବ । ପ୍ରତ୍ୟେକ ସ୍ଥାନରେ ଗୋଟିଏ ଗୋଟିଏ ବଡ଼ ଜଳପୂର୍ଣ୍ଣ କଳସୀ ରଖିବ । ରାତିରେ ମୁଁ ଓ ତୁମେ ଦୁହେଁ ଯିବା, ମୁଁ ହୋମ କରିବି । ଦଶମ ଦିନ ତୁମେ ଚୁପ୍ ଚାପ୍ ଗାତଗୁଡ଼ିକ ଖୋଳି ସୁନା ନେଇ ଆସିବ ।''

ସାଧୁ ଯେପରି କହିଲା, ଶେଠ ସେହିପରି କଲା । ରାତିରେ ହୋମ ହେଲା । ହୋମ ପରେ ସାଧୁ ଓ ଶେଠ ଘରକୁ ଫେରି ଆସିଲେ । ପରଦିନ ସକାଳୁ ଯାଇ ନିଆଁ ଆଡ଼େଇ ଦେଲେ । ସେହି ସ୍ଥାନ ହୋମ ଯୋଗୁଁ କଳା ହୋଇଯାଇଥିଲା । ହେଲେ ତଳେ କ'ଣ ଅଛି କେହି ଜାଣିବା ସହଜ ନଥିଲା । ସେହି ଦିନ କେତେକ ଯୋଗୀ, ଯେଉଁମାନେ ବୁଲା ବୁଲି କରି ଭିକମାଗନ୍ତି, ସେହି ବଗିଚାରେ ବିଶ୍ରାମ କରିବାପାଇଁ ରହିଗଲେ । ମହାତ୍ମା ଶେଠକୁ ସକାଳେ କହିଲା, ''ମୁଁ ଯାଉଛି । ଦଶମ ଦିନ ଆସି ପହଞ୍ଚିଯିବି ।'' ଏପରି କହି ସେ ଚାଲିଗଲା । ଯୋଗୀମାନେ, ଯେଉଁମାନେ ବିଶ୍ରାମ କରିବାପାଇଁ ଉଦ୍ୟାନରେ ରହିଥିଲେ, ସେମାନେ ହେଉଛନ୍ତି ସାଧୁଙ୍କର ଚେଲା । ପରଦିନ ସକାଳ ହେବା ପୂର୍ବରୁ ସେମାନେ ସମସ୍ତ ସୁନା ହରଣଚାଳ କରି ପଳାୟନ କରିଥିଲେ । ସକାଳ ହେବାକ୍ଷଣି ଶେଠ କପାଳରେ ହାତମାରି ହାୟ ହାୟ ହେବାରେ ଲାଗିଲା । କାହାକୁ କିଛି କହି ପାରିଲା ନାହିଁ ।

ସେହି ଦିନଠାରୁ ଶେଠର ବଦ୍ଧ ଧାରଣା ହୋଇଗଲା ଯେ ଏହି ସାଧୁ ବେଶଧରି ଯେତେ ବୁଲୁଛନ୍ତି, ସମସ୍ତେ ପକ୍କା ବ୍ୟବସାୟୀ । ପ୍ରଥମେ ପ୍ରଥମେ ସେମାନେ ଖୁବ୍ ତ୍ୟାଗ ଦେଖାଇ ହୁଅନ୍ତି, ନିଜର କିଛି ବ୍ୟୟ କରନ୍ତି; ଲୋକମାନେ କିଛି ପ୍ରଭାବିତ ହୋଇଯିବା ପରେ ସେମାନଙ୍କୁ ଫସାଇ ବୋକା ବନାନ୍ତି । ବ୍ୟବସାୟରେ ବେପାରୀ ପ୍ରଥମେ କିଛି ଧନ ଖଟାଏ ଓ ପରେ ଲାଭ ପାଇଥାଏ । ସେହି ସାଧୁ ନିଜର ପ୍ରଥମେ ଶହେ ଦେଢ଼ଶହ ଗିନି ଖର୍ଚ୍ଚ କରି ପରେ ପାଞ୍ଚ ମହଣ ସୁନା ଠକିନେଲା । ଠିକ୍ ଏହିଭଳି କେହି ଗୋଶାଳା ନାମରେ, କେହି ବିଦ୍ୟାଳୟ, ଧର୍ମଶାଳା, ଔଷଧାଳୟ, ସତ୍‌ସଂଗ-ଭବନ, ଯଜ୍ଞ, ଉତ୍ସବ ତଥା ଅନ୍ୟ ଧାର୍ମିକ ଅନୁଷ୍ଠାନ ନାମରେ ମାଗି ନିଜର ସ୍ୱାର୍ଥ ଚରିତାର୍ଥ କରିଥାଆନ୍ତି । ଏଣୁ ସାଧୁଙ୍କୁ ହାତ ତିଆରି ଅନ୍ନ ଭୋଜନ କରିବାପାଇଁ ଓ ପିନ୍ଧିବା ପାଇଁ

ଖଣ୍ଡିଏ ବସ୍ତ୍ର ଦେଇ ବିଦା କରିଦେବା ଉଚିତ । ଯେଉଁ ସାଧୁ ଧନ ସଂପତ୍ତିର ଚମତ୍କାର କଥା କହେ ସେ କଦାପି ସାଧୁ ନୁହନ୍ତି, ସାଧୁ ରୂପରେ ଠକ ହିଁ ହୋଇଥା'ନ୍ତି ।

ଶେଠଙ୍କର ତ ତ୍ୟାଗୀ ମହାତ୍ମାଙ୍କ ସମ୍ବନ୍ଧରେ ଏପରି ଧାରଣା ଆଗରୁ ଥିଲା, ତେଣୁ ଏବେ ସେ ଦେଖିବାପାଇଁ ବି ବିଲକୁଲ ଆସିଲା ନାହିଁ । ଭଗବାନ ନାରଦଙ୍କୁ ଚାହିଁ କହିଲେ, ''କ'ଣ ହେଲା ନାରଦେ ? କୁହ, ଏବେ କେଉଁ ବେଶରେ ଦର୍ଶନ ଦେବା ?''

ନାରଦ କହିଲେ, ''ପ୍ରଭୁ ! ଥରେ ସେ ଠକି ଯାଇଥିଲା । ସାଧୁବେଶଧାରୀ ଠକ ଲୋକଙ୍କ ମନରେ ଅବିଶ୍ୱାସ ସୃଷ୍ଟି କରି ଯାଇଛି । ଏହି ପବିତ୍ର ସାଧୁ ବେଶ ଏପରି ବ୍ୟାପକ ହୋଇ ଯାଇଛି ଯେ ଏହାର ଆଢୁଆଳରେ ଲୋକମାନେ ଅତି ଜଘନ୍ୟ କର୍ମ କରିବାରେ ଲାଗିଛନ୍ତି । ସ୍ୱାର୍ଥୀ ଲୋକମାନେ ପଇସା କମାଇବା ପାଇଁ ବିନା ଜ୍ଞାନ-ବୈରାଗ୍ୟରେ ଏପରି ଅନେକ ବେଶ ଧାରଣ କରୁଛନ୍ତି । ଏମାନେ ନାନା କୁକୃତ୍ୟାରେ ଏହି ସାଧୁବେଶକୁ କଳଙ୍କିତ କରିଦେଇଛନ୍ତି । ଏଣୁ ଆପଣ ସାଧୁବ୍ରାହ୍ମଣଙ୍କ ବେଶ ଛାଡ଼ି ନିଜର ଯଥାର୍ଥ ଭଗବାନ୍ ରୂପରେ ତାକୁ ଦର୍ଶନ ଦିଅନ୍ତୁ ।''

ଭଗବାନ୍ କହିଲେ, ''ଆଛା, ତାହା ହେଲେ ସେୟା ହେଉ । ତାକୁ ଜଣାଇ ଦିଅ ଯେ ଭଗବାନ୍ ତାକୁ ଦେଖା ଦେବା ପାଇଁ ଆସୁଛନ୍ତି ।''

ନାରଦ ଗୁମାସ୍ତା ହାତରେ ଶେଠ ପାଖକୁ ଖବର ପଠାଇଲେ । ଗୁମାସ୍ତା ଯାଇ ଶେଠକୁ କହିଲା, ''ଆଜ୍ଞା ! ଜଣେ ସାଧୁ ଆସି କହୁଚନ୍ତି ଯେ ଭଗବାନ୍ ଆପଣଙ୍କୁ ଦର୍ଶନ ଦେବାକୁ ଆସିଛନ୍ତି ।''

ଏପରି କଥା ଶୁଣି ଶେଠ ଅତି ବିରକ୍ତ ହୋଇଗଲା । ଆଉ କହିଲା, ''ତୁମର ମୁଣ୍ଡ ଖରାପ ହୋଇଗଲାଣି ନା କ'ଣ ? ଭଗବାନ ଏପରି ଆସିବା କେବେ କାହାଠାରୁ ଶୁଣିଛ ? କେହି ଧୂର୍ତ୍ତ ବହୁରୂପୀ ହୋଇଥିବ । କହିଦିଅ, ମୋର ଦର୍ଶନର କିଛି ଆବଶ୍ୟକତା ନାହିଁ ।''

ଶେଠ ଯାହା ଯାହା କହିଲା, ଗୁମାସ୍ତା ତାହା ଅକ୍ଷରେ ଅକ୍ଷରେ ନାରଦଙ୍କୁ ଶୁଣାଇ ଦେଲା । ଭଗବାନ ହସି ହସି ନାରଦଙ୍କୁ କହିଲେ, ''ଦେଖିଲେତ ନାରଦେ ! ଅଧିକାରୀ ହୋଇ ନଥିଲେ ମୋତେ ଦେଖିବା ପାଇଁ ମନ ହୁଏନାହିଁ । ମୋତେ ଦର୍ଶନ କରିବା ପାଇଁ ବାହାରକୁ କେଉଁଆଡ଼େ ଯିବାକୁ ହୋଇ ନଥାଏ । ମୁଁ ତ ସମସ୍ତଙ୍କ ହୃଦୟରେ ବସିଛି । ସବୁଥିରେ ବ୍ୟାପିଛି । ସମସ୍ତଙ୍କ ସହିତ ରହିଛି । ହେଲେ ସମସ୍ତଙ୍କର ସଂସାର ବନ୍ଧନ ଛିଡ଼ି ନାହିଁ । ମୋ କୃପା ଯାହା ଉପରେ ପଡ଼େ ତା'ର କେବଳ ସଂସାର ବନ୍ଧନ ଛିଣ୍ଡିଯାଏ । ମୋ କୃପା ତ ସମସ୍ତଙ୍କ ଉପରେ ସମାନ ରୂପରେ ପଡ଼େ । ହେଲେ ତାହାକୁ ଗ୍ରହଣ କରିବାର

ଯୋଗ୍ୟତା ଥିବା ଦରକାର । ଯାହାର ଯଥାର୍ଥ ସାଧୁ ଦର୍ଶନ ହୋଇଥାଏ, ସେ ହିଁ କେବଳ ମୋ କୃପା ପାଇବା ପାଇଁ ଯୋଗ୍ୟ ହୋଇଥାଏ । ଯେ ପର୍ଯ୍ୟନ୍ତ କେହି ପରିଚୟ କରିବା ପାଇଁ ନଥା'ନ୍ତି, ସେ ପର୍ଯ୍ୟନ୍ତ ଆମେ ସମ୍ରାଟଙ୍କ ସହିତ ବି କଥା ହେଉଥିଲେ, ଆମ ମନରେ ତା' ପ୍ରତି ସମ୍ମାନ ଭାବ ହୋଇ ନଥାଏ । କେହି ଚିହ୍ନାଇ ଦେଲେ ସହସା ଭାବ ପରିବର୍ତ୍ତନ ହୋଇଯାଏ । ମୁଁ ଯଦୁକୁଳରେ ଏତେ ଦିନ ରହିଲି । **ମୋର ଯଥାର୍ଥ ରୂପକୁ ସମସ୍ତେ ଜାଣିପାରିଲେ ନାହିଁ । ମୋ ପ୍ରତି ପ୍ରେମ ଭାବ ସାଧୁସଂଗରେ ହିଁ ହୋଇଥାଏ । ସାଧୁସଙ୍ଗ ହେବାମାତ୍ରେ ମୋର ଯଥାର୍ଥ ରୂପ ବୋଧ ହୋଇଯାଏ, ଆଉ ସେତେବେଳେ ମୋ ପ୍ରତି ପ୍ରେମ ସୃଷ୍ଟି ହୋଇଯାଏ ।''**

ଏତେ ଉଦାହରଣ ଦେବାର ଅଭିପ୍ରାୟ ହେଉଛି, **ସତ୍‌ସଙ୍ଗ ସର୍ବଶ୍ରେଷ୍ଠ । ସବୁବେଳେ ଭଗବାନଙ୍କର ଅତି ପାଖରେ ରହୁଥିବା ବସୁଦେବଙ୍କର ବି ସତ୍‌ସଙ୍ଗର ଆବଶ୍ୟକତା ଥିଲା ।''**

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିମାନେ ! ଯଦୁକୁଳର ବିନାଶ ନିମନ୍ତେ ଅଭିଶାପ ହୋଇଯାଇଛି । ଏଥର ଭଗବାନ ସ୍ୱଧାମକୁ ଯିବାପାଇଁ ପ୍ରସ୍ତୁତ ହେବାରେ ଲାଗିଲେ । ଭଗବାନଙ୍କର ଅନ୍ତରଙ୍ଗ ଭକ୍ତମାନେ ଜାଣିଗଲେ ଯେ ଭଗବାନ ଏଥର ତାଙ୍କର ଲୀଳା ସମ୍ବରଣ କରିବାକୁ ଯାଉଛନ୍ତି । ପ୍ରଥମେ ପ୍ରଥମେ ନାରଦ ଦଶ ପନ୍ଦର ଦିନରେ, ମାସେ ଦୁଇମାସରେ ଥରେ ଭଗବାନଙ୍କ ଦର୍ଶନ ନିମନ୍ତେ ଆସୁଥିଲେ, ଏବେ ସେ ପ୍ରାୟ ରହିଯାଉଛନ୍ତି । ପ୍ରତିଦିନ ଭଗବାନଙ୍କୁ ଦର୍ଶନ ନକଲେ ତାଙ୍କୁ ଭଲ ଲାଗୁନାହିଁ । **ଶରୀରଧାରୀଙ୍କର ଶରୀର ଧାରଣ କରିବାର ସର୍ବଶ୍ରେଷ୍ଠ ସ୍ୱାର୍ଥ ହେଉଛି ସୁର-ମୁନି-ସେବ୍ୟ ଶ୍ୟାମସୁନ୍ଦରଙ୍କର ସୁଲଳିତ ଚରଣାରବିନ୍ଦ ସବୁବେଳେ ଦୃଷ୍ଟି ସମ୍ମୁଖରେ ରହିଥିବ ।** ସହୃଦୟ ଇନ୍ଦ୍ରିୟବାନ୍ ପୁରୁଷମାନେ ପୁରୁଷୋତ୍ତମଙ୍କ ପାଦପଦ୍ମ ପ୍ରେମପୂର୍ବକ ପୂଜା କରିବାରେ ହିଁ ଲାଗିଥା'ନ୍ତି ।

ଦିନକର କଥା । ସେଦିନ ଦେବର୍ଷି ନାରଦ ବୀଣା ବଜାଇ ବଜାଇ ଭଗବାନଙ୍କର ଗୁଣଗାନ କରିକରି ପ୍ରଭୁଙ୍କ ମହଲରେ ପହଞ୍ଚିଗଲେ । ସେତେବେଳେ ସେଠାରେ ଭଗବାନ ଉପସ୍ଥିତ ନଥିଲେ । ସେ ସତ୍ୟଭାମା ଅଥବା ରୁକ୍ମିଣୀଙ୍କ ମହଲରେ ବିରାଜମାନ କରୁଥିଲେ । ଘରେ କେବଳ ମହାମନା ବସୁଦେବ ବସିଥିଲେ । ଦେବର୍ଷି ନାରଦଙ୍କୁ ଦେଖି ମହାମନା ବସୁଦେବ ନିଜ ଆସନ ପାଖରେ ଠିଆହୋଇଗଲେ । ପାଦ୍ୟାର୍ଘ୍ୟ ପ୍ରଦାନ କରି ବିଧି ଅନୁସାରେ ପୂଜା କଲେ, କୁଶଳ ପ୍ରଶ୍ନ ପଚାରି ବୁଝିଲେ ଏବଂ ବସିବା ପାଇଁ ସୁନ୍ଦର ଆସନ ପ୍ରଦାନ କଲେ । ମହାମୁନି ଆସନରେ ବିରାଜମାନ ହେବାପରେ ମହାମନା ବସୁଦେବ ଦୁଇହାତ ଯୋଡ଼ି କହିଲେ, ''ଭଗବନ୍ ! ଗୃହସ୍ଥଙ୍କ ଗୃହକୁ ଆପଣଙ୍କ

ଆଗମନ ଅତି ଶୁଭସୂଚକ । ପ୍ରାତଃ ସମୟରେ ବୃକ୍ଷର ସବୁଜ ଡାଳରେ କୁଆର ରାବ ଶୁଭ ସୂଚନା ଦେଇଥାଏ, ଯେଉଁଭଳି ହାତ ପାପୁଲି କୁଣ୍ଡାଇ ହେବା ଦ୍ୱାରା ଧନ ମିଳିବାର ଶୁଭ ସୂଚନା ମିଳେ, ମୁହଁ ସମ୍ମୁଖରେ ମାଛି ଉଡ଼ିଲେ ଯେପରି ମିଷ୍ଟାନ୍ନ ମିଳିବାର ସୂଚନା ମିଳେ, ପୁରୁଷଙ୍କର ଦକ୍ଷିଣ ଚକ୍ଷୁ ଓ ସ୍ତ୍ରୀଙ୍କର ବାମ ଚକ୍ଷୁ ଡେଇଁଲେ ପ୍ରିୟ ମିଳନର ଯେପରି ସୂଚନା ମିଳିଥାଏ, ହଠାତ୍ ଏକୁଟି ଆସିଲେ ପ୍ରିୟ ଲୋକ ସ୍ମରଣ କରୁଥିବାର ସୂଚନା ଯେଭଳି ମିଳେ, ବାମ ପାଦତଳିପା କୁଣ୍ଡାଇ ହେଲେ ଯେପରି ଶୁଭଯାତ୍ରାର ସୂଚନା ମିଳେ, ମାନସିକ ପ୍ରସନ୍ନତା ଯେପରି କାର୍ଯ୍ୟ ସିଦ୍ଧିର ସୂଚକ ହୋଇଥାଏ, ସେହିଭଳି ଘରକୁ ସନ୍ଥ, ଅଥବା ଭଗବତ୍ ଭକ୍ତଙ୍କ ଆଗମନ ମଙ୍ଗଳ ସୂଚକ ହୋଇଥାଏ । ବିଦେଶରୁ ଫେରିଥିବା ବାପ-ମା'ଙ୍କୁ ଦେଖି ଛୋଟ ପିଲାମାନେ ଯେପରି ଉତ୍‌ଫୁଲ୍ଲିତ ହୁଅନ୍ତି, ସାଂସାରିକ ସଂତାପରେ ସନ୍ତପ୍ତ ପୁରୁଷ ପ୍ରକୃତ ସାଧୁ ସନ୍ଥଙ୍କୁ ଦର୍ଶନ କରି ସେହିପରି ଖୁସୀ ହୋଇଯାଆନ୍ତି । ସେମାନଙ୍କର ସକଳ ପ୍ରକାର ଶୋକ ସଂତାପ ଶାନ୍ତ ହୋଇଯାଏ । ଭଗବଦ୍‌ଭକ୍ତଙ୍କ ଆଗମନରେ ମୁମୁକ୍ଷୁ ପୁରୁଷଙ୍କ ଚିତ୍ତ ଅତି ପ୍ରଫୁଲ୍ଲିତ ହୋଇଯାଏ ।

ଦେବର୍ଷି ନାରଦ କହିଲେ, ''ରାଜନ୍ ! ଦେବତାଙ୍କୁ ପ୍ରସନ୍ନ କରାଯାଏ । ଦେବତାମାନେ ପ୍ରସନ୍ନ ହେଲେ ବର ପ୍ରଦାନ କରନ୍ତି । ଇଚ୍ଛା କରିଥିବା, ଅଭିଳାଷିତ ବସ୍ତୁ ଦେଇଥାଆନ୍ତି । ଦୁଃଖ ଦୂର କରନ୍ତି । ଆମେ ତ ସାଧାରଣ ଲୋକ ।''

ନାରଦଙ୍କଠାରୁ ଏପରି କଥା ଶୁଣିବାକ୍ଷଣି ତତ୍ପରତାର ସହିତ ବସୁଦେବ କହିଲେ, ''ନା, ନା ଭଗବନ୍ ! ଦେବତାମାନେ ଯେ ସବୁବେଳେ ସୁଖ ଦେଇଥାଆନ୍ତି, ଏହା ସତ୍ୟ ନୁହେଁ । ସେମାନଙ୍କ ପୂଜା ଯଦି ବିଧିହୀନ ହୋଇଯାଏ ତେବେ ସେମାନେ ସୁଖ ବଦଳରେ ଅଧିକ ଦୁଃଖ ହିଁ ଦେଇଥାଆନ୍ତି । ମେଘ ବର୍ଷା ହୁଏ, ଅନ୍ନ ଉତ୍ପନ୍ନ ହୁଏ, ତୃଣ ହୁଏ, ସମସ୍ତଙ୍କୁ ସୁଖ ହୁଏ, କିନ୍ତୁ ବେଳେ ବେଳେ ଅସମୟରେ ବର୍ଷା ହୋଇ ଅଧିକ ଦୁଃଖଦାୟୀ ହୋଇଥାଏ । ଧାନ ପାଚିଥିବା ସମୟରେ ବର୍ଷା ହେଲେ ଧାନ ଛିଡ଼ିପଡ଼େ, ବାଲୁଙ୍ଗା ମାଡ଼ିଯାଏ, ଦୁଃଖ ବଢ଼େ । ଏହିଭଳି ଦେବତାଙ୍କ ଯୋଗୁ ଦୁଃଖ ସୁଖ ଉଭୟ ମିଳିଥାଏ । ହେଲେ ସାଧୁଙ୍କର ସତ୍‌ସଙ୍ଗ ସର୍ବଦା ସୁଖଦାୟୀ ହିଁ ହୋଇଥାଏ । ସାଧୁ ଅଭିଶାପ ବି ଦେଲେ ତା'ର ଫଳ ଉତ୍ତମ ହୋଇଥାଏ । ଦେବତାମାନେ ତ ସ୍ୱାର୍ଥପର ହୋଇଥାଆନ୍ତି । ତାଙ୍କୁ ପୂଜାକଲେ ସେମାନେ ଫଳ ଦିଅନ୍ତି, ଯେତିକି ପୂଜାକୁ ସେତିକି ଫଳ । ଫଳ ଦେବାବେଳେ ସେମାନେ ମାପ-ଓଜନକରି ଫଳ ଦେଇଥାଆନ୍ତି । ଆଉ ପୂଜା ନ କଲେ କ୍ରୁଦ୍ଧ ହୋଇ ଅଭିଶାପ ଦେଇଥା'ନ୍ତି । ବ୍ରଜବାସୀମାନେ ଇନ୍ଦ୍ରଙ୍କ ପୂଜା କେତେଦିନ କରି ନଥିଲେ ! କିନ୍ତୁ ବର୍ଷୁଟିଏ କଲେ ନାହିଁ ବୋଲି ସେ ପ୍ରଳୟ କରିଦେଉଥିବା ସାଂବର୍ତ୍ତକ ନାମକ ମେଘଙ୍କୁ ପଠାଇ ସମଗ୍ର ବ୍ରଜକୁ ବୁଡ଼ାଇ ଦେଲା । ସେ ସବୁତ ଛାୟା ଭଳି । ମଣିଷ

ଯେଉଁଭଳି କାମକରିବ, ତାର ଛାୟା ବି ଠିକ୍ ସେହିଭଳି ଅନୁକରଣ କରିବ । କୂଅ ଭିତରକୁ ମୁହଁକରି କଥା କହିବା ଭଳି । ଯେମିତି କହିବ, ଯାହା କହିବ, ଠିକ୍ ସେହିଭଳି ଉତ୍ତର ପାଇବ । କିନ୍ତୁ ସାଧୁ ପୁରୁଷମାନଙ୍କ ସ୍ୱଭାବ ଅତି ଦୟାଳୁ । ସେମାନେ ବିଶେଷକରି ଦୀନ ଦୁଃଖୀଙ୍କ ଉପରେ ଦୟାପରବଶ ହୋଇ କୃପା କରିଥାନ୍ତି । ମୁଁ ବି ଦୀନ ହୋଇଯାଇଛି, ଏହି ସଂସାର ମୋତେ କାମୁଡ଼ିବାକୁ ଗୋଡ଼ାଇଲାଣି । ମୁଁ ଆପଣଙ୍କୁ କେତେକ ପ୍ରଶ୍ନ ପଚାରିବାକୁ ଇଚ୍ଛା କରିଛି । ଯଦିଓ ସାଧୁଙ୍କ ଦର୍ଶନ ହିଁ ପୁଣ୍ୟଦାୟୀ ହୋଇଥାଏ, ଆଉ ମୁଁ ବି ଆପଣଙ୍କ ଦର୍ଶନ ପାଇ କୃତାର୍ଥ ହୋଇଯାଇଛି, ତେବେ ମୋର କେତେକ ପ୍ରଶ୍ନ ଅଛି, ଅନୁମତି ଦେଲେ ଆପଣଙ୍କ ପାଖରେ ତାହା ପ୍ରକାଶ କରନ୍ତି ।''

ଭଗବାନ୍ ନାରଦ କହିଲେ, ''ରାଜନ୍ ! ଆପଣ ଯାହା ପଚାରିବାକୁ ଇଚ୍ଛା କରିଛନ୍ତି ଆନନ୍ଦର ସହିତ ପଚାରନ୍ତୁ । ଆପଣଙ୍କ ପ୍ରଶ୍ନର ଉତ୍ତର ଦେବା ଅର୍ଥ ଭଗବାନଙ୍କ ଗୁଣଗାନ କରିବାର ସୌଭାଗ୍ୟ ପାଇବା, ସୁଅବସର ପାଇବା । ଏଥିରେ ମୋ ବାଣୀ ସୁଫଳ ହେବ ଓ ମୁଁ କୃତାର୍ଥ ହୋଇଯିବି ।''

ମହାମନା ବସୁଦେବ ପଚାରିଲେ, ''ଭଗବନ୍ ! ଲୋକମାନେ କୁହନ୍ତି ଯେ ଭାଗବତ ଧର୍ମକୁ ଶ୍ରଦ୍ଧାର ସହିତ ଶ୍ରବଣ କଲେ, ତାହା ଅନୁସାରେ ଆଚରଣ କଲେ ମଣିଷ ସମସ୍ତ -ପ୍ରକାର ଭୟରୁ ମୁକ୍ତ ହୋଇ ଯାଆନ୍ତି । ସେହି **ଭାଗବତ-ଧର୍ମ କ'ଣ ?** ଭାଗବତ-ଧର୍ମକୁ ଜାଣିବା ପାଇଁ ମୋର ଅତ୍ୟଧିକ ଆଗ୍ରହ ହୋଇଛି । କୃପାକରି ମୋତେ **ଭାଗବତ-ଧର୍ମ ସମ୍ବନ୍ଧରେ କୁହନ୍ତୁ । ଭାଗବତ-ଧର୍ମର ସ୍ୱରୂପ କ'ଣ ? ଏହାର ଆଚରଣ କିପରି କରାଯାଏ ?''**

ବସୁଦେବଙ୍କର ଏପରି ପ୍ରଶ୍ନ ଶୁଣି ନାରଦ ହସିବାରେ ଲାଗିଲେ ଆଉ କହିଲେ, ''ରାଜନ୍ ! ଆପଣ ନିଜେ ପରଂବ୍ରହ୍ମ ପୁରୁଷୋତ୍ତମଙ୍କର ପିତା ହୋଇ ଏପରି ଅଜ୍ଞତାପୂର୍ଣ୍ଣ ପ୍ରଶ୍ନ ପଚାରୁଛନ୍ତି ! ଭଗବାନ ତ ଆପଣଙ୍କର ପୁଅ !''

ଏହା ଶୁଣି ବସୁଦେବ କହିଲେ, ''ହଁ ଭଗବନ୍ ! ସେଇଟା ମୋର ସୌଭାଗ୍ୟ । ମାତ୍ର କୃଷ୍ଣ ପାଖରେ ମୋର ପୁତ୍ର-ସନ୍ତାନ ବୁଦ୍ଧି ହିଁ ସନ୍ନିହିତ ହୋଇ ରହିଛି । କଥା ହେଉଛି, ମୁଁ ଦେବମାୟାରେ ବିମୋହିତ ହୋଇଯାଇଥିଲି । ପୂର୍ବଜନ୍ମରେ ମୁଁ ଯେଉଁ ଘୋର ତପ କରିଥିଲି, ତାହା ମୁଁ ମୁକ୍ତି ନିମନ୍ତେ କରି ନଥିଲି; କେବଳ ସନ୍ତାନ ପ୍ରାପ୍ତି ନିମନ୍ତେ କରିଥିଲି, ମୋକ୍ଷ ନିମିତ୍ତ ନୁହେଁ । ଫଳ ତ ଭାବନାନୁସାରେ ମିଳେ । ଭଗବାନ ନିଜେ ଆସି ଯଦିଓ ମୋ ଘରେ ସନ୍ତାନ ରୂପରେ ଜନ୍ମ ହେଲେ, ମୋର କିନ୍ତୁ ତାଙ୍କ ଠାରେ ତ ପୁତ୍ରଭାବ ହିଁ ସନ୍ନିହିତ ହୋଇରହିଲା । ଏବେ ଆମେ [illegible]ଙ୍କୁ ନିମିତ୍ତକରି ମୋକ୍ଷମାର୍ଗର ଉପଦେଶ [illegible]ବାକୁ ଚାହୁଁଛୁ । ଆପଣ ଆମକୁ ସମ୍ପୂର୍ଣ୍ଣ ଉପଦେଶ ଦିଅନ୍ତୁ । ଆପଣ ଏପରି ସୁନ୍ଦର ଧର୍ମୋପଦେଶ, ଶିକ୍ଷା ଦିଅନ୍ତୁ ଯାହା ଫଳରେ ଆମେ ନାନା ପ୍ରକାରର ଦୁଃଖପୂର୍ଣ୍ଣ ଆଉ

ସମସ୍ତ ପ୍ରକାର ଭୟପରିବ୍ୟାପ୍ତ ଏହି ସଂସାରରୁ ଅନାୟାସରେ, ସହଜରେ ପାରି ହୋଇଯାଇ ପାରିବୁ । ଆପଣ ଆମକୁ ମୁକ୍ତିର ସାଧନଭୂତ ଭାଗବତ-ଧର୍ମର ଉପଦେଶ ଦିଅନ୍ତୁ ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଭାଗବତ ଧର୍ମର ନାମ ଶୁଣିବା କ୍ଷଣି ଦେବର୍ଷି ନାରଦ ବିହ୍ୱଳିତ ହୋଇଗଲେ । ପରମ ବୁଦ୍ଧିମାନ ବସୁଦେବଙ୍କ ପ୍ରଶ୍ନ ଥିଲା ଅତି ଉତ୍ତମ । ନାରଦଙ୍କୁ ଭଗବାନ୍‌ଙ୍କର ନାମ ସ୍ମରଣ ହୋଇଯିବାକ୍ଷଣି ଅତି ଆନନ୍ଦ ବୋଧ ହେଲା । ତାଙ୍କ କଣ୍ଠ ଗଦ୍‌ଗଦ୍ ହୋଇଗଲା । ନେତ୍ର ଯୁଗଳରୁ ପ୍ରେମାଶ୍ରୁ ନିଗିଡ଼ିବାରେ ଲାଗିଲା । ସେ ବିହ୍ୱଳିତ ଭାବର ସହିତ ମହାମନା ବସୁଦେବଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଉଦ୍ୟତ ହେଲେ । ଏବେ ଦେବର୍ଷି ନାରଦ ଯେଉଁଭଳି ସୁନ୍ଦର ଭାବରେ ପରମ ପବିତ୍ରକାରିଣୀ ପ୍ରଶ୍ନର ଉତ୍ତର ଦେଲେ କହୁଛି, ଆପଣମାନେ ଏକାଗ୍ରତାର ସହିତ ତାହା ଶ୍ରବଣ କରନ୍ତୁ ।''

**ଛପ୍‌ପୟ**

*ମାୟା ମୋହିତ ଭୟୋ କର୍‌ୟୋ ମୈନେ ତପ ସୁତ ହିତ ।*
*ଅବ ସମୁଝ୍‌ୟୋ ଯହ ରହସ ଲଗାୟୋ ପ୍ରଭୁ ଚରନନି ଚିତ ।।*
*ବୋଲେ ନାରଦ- ''ନୃପତି ! ପ୍ରଶ୍ନ ଅତି ସୁନ୍ଦର କୀୟୋ ।*
*କୃଷ୍ଣ ପିତା ହ୍ୱୈ ମୋଇ ପ୍ରଶ୍ନ କରି ଆଦର ଦୀୟୋ ।।*
*ନବୟୋଗେଶ୍ୱର ଜନକ କୋ, ଭୟୋ ସୁଖଦ ସମ୍ବାଦ ବର ।*
*ଜୋ ସବ ଦେଶନି ସବ ସମୟ, ହୈ ସବକୁଁ କଲ୍ୟାଣକର ।।*



# ନାରଦଙ୍କ ପ୍ରସନ୍ନତା

**ସମ୍ୟଗେତଦ୍ ବ୍ୟବସିତଂ ଭବତା ସାତ୍ୱତର୍ଷଭ ।**
**ଯଦ୍ ପୃଚ୍ଛସେ ଭଗବତାନ୍ ଧର୍ମାଂସ୍ତ୍ୱଂ ବିଶ୍ୱଭାବନାନ୍ ।।☆**

(ଶ୍ରୀ ଭା. ୧୧ସ୍କ. ୨ଅ. ୧୧ଶ୍ଳୋକ)

---

☆ ବୋଲନ୍ତି ଶୁଣ ଯଦୁବୀର । ଧନ୍ୟ ବଚନ ଏ ତୋହର ।।
ତୋ ଚିତ୍ତ ଭାଗବତଧର୍ମେ । କଳ୍ପିଲା ପୂର୍ବ ପୁଣ୍ୟକର୍ମେ ।।
(ଭାଗବତ: ଜଗନ୍ନାଥ ଦାସ:୧୧ସ୍କ.୨ଅ.୧୧ ଶ୍ଳୋ)

## ଛପ୍ପୟ

*ଋଷଭ ତନୟ ଶତ ଭୟେ ଇକ୍ୟାସୀ ବିପ୍ର କହାୟେ ।*
*ନବ ଦ୍ୱୀପନି ନବ ନୃପତି ଭୂପ ବଡ଼ ଭରତ ବନାୟେ ।।*
*କବି, ହରି, ଅବିହୋତ୍ର, ପିପ୍‌ପଲାୟନ, କରଭାଜନ ।*
*ଅନ୍ତରିକ୍ଷ ଅରୁ ଚମସ, ଦ୍ରୁମିଳ, ଅରୁ ପ୍ରବୁଧ ଯୋଗିଗନ ।।*
*ନବଯୋଗେଶ୍ୱର ବିଦିତ ଜଗ, ଜନକ ସଭା ମହଁ ସବ ଗୟୋ ।*
*ମୈଥିଳ ମନ ଅତି ମୁଦିତ ହ୍ୱୈ, ପରମାରଥ ପୂଛତ ଭୟେ ।।*

ନିଜର ପ୍ରିୟ ପଦାର୍ଥ ସଂପର୍କରେ କେହି କିଛି କହେ, ଗାନ କରେ, ସ୍ମରଣ କରେ, ଅଥବା ପ୍ରକାରାନ୍ତରରେ ଅନୁମୋଦନ କରେ ତେବେ ତା' ପ୍ରତି ସ୍ୱାଭାବିକ ଅନୁରାଗ ହୋଇଯାଏ । ସଂସାରରେ ପ୍ରିୟ ସ୍ମରଣ ହେଉଛି ସାର, ଆଉ ସବୁ ଅସାର । ନିଜର ପ୍ରିୟ ଜିନିଷ ପାଇବାପାଇଁ ଲୋକମାନେ ବିଦେଶ, ସମୁଦ୍ରର ବକ୍ଷସ୍ଥଳକୁ ଚିରି ଦେଶାନ୍ତରକୁ ଯାଇଥା'ନ୍ତି । ତଥା ପ୍ରକାର ପ୍ରକାର ଉଦ୍ୟମ କରିଥାନ୍ତି । ସମସ୍ତ ପ୍ରକାର ଉଦ୍ୟମ ହୋଇଥାଏ ପ୍ରିୟ ପ୍ରାପ୍ତି ନିମନ୍ତେ । ପାର୍ଥକ୍ୟ ଏତିକି ଯେ କେତେକ ସଂସାରର ଏହି ନାଶବାନ ଅନିତ୍ୟ ପଦାର୍ଥକୁ ପ୍ରିୟ ବୋଲି ମନେକରିଥାନ୍ତି, ଆଉ କେତେକ ପରମାର୍ଥକୁ ପ୍ରିୟ ମନେକରନ୍ତି । କିନ୍ତୁ ଚାହାନ୍ତି ନିଜର ପ୍ରିୟକୁ । ଯାହାକୁ ପ୍ରିୟ ଭାବନ୍ତି ତା' ସମ୍ବନ୍ଧରେ ପ୍ରେମପୂର୍ବକ ଚର୍ଚ୍ଚା କରନ୍ତି ।

ମହାପ୍ରାଜ୍ଞ ସୂତ କହୁଛନ୍ତି,''ହେ ମୁନିମାନେ ! ବସୁଦେବ ନାରଦଙ୍କୁ ଭାଗବତ ସଂପର୍କରେ ପ୍ରଶ୍ନ କରିବାରୁ ନାରଦଙ୍କୁ ତାହା ଖୁବ୍ ଭଲ ଲାଗିଲା । ସେ କହିଲେ, 'ହେ ବସୁଦେବ ! ଆପଣଙ୍କ ପ୍ରଶ୍ନ ଆପଣଙ୍କର ବ୍ୟକ୍ତିଗତ ପ୍ରଶ୍ନ ନୁହେଁ । ଏହା ତ ପୂରା ଜଗତକୁ ପବିତ୍ର କରିଦେଉଥିବା ପ୍ରଶ୍ନ । ଆପଣ ଦେଖନ୍ତୁ, ଯେଉଁମାନେ ଧନ ରୋଜଗାର କରିବାକୁ ଚାହାନ୍ତି, ସେମାନେ ଦିନରାତି ଧନ କଥା ହି ଚର୍ଚ୍ଚା କରନ୍ତି । ସେମାନେ ବସିବାବେଳେ, ଚଲାବୁଲା କରିବା ବେଳେ ଧନ ଚିନ୍ତା ହିଁ କରୁଥାଆନ୍ତି । ରାତିରେ ଶୋଇଲେ ତା' ବିଷୟରେ ହିଁ ସ୍ୱପ୍ନ ଦେଖନ୍ତି । ସାରାଂଶ ହେଉଛି, ସେମାନେ ସେଇଥିରେ ତନ୍ମୟ ହୋଇଯାଆନ୍ତି । ଏହିଭଳି ଯେଉଁମାନେ ଭଗବାନଙ୍କୁ ପାଇବାକୁ ଚାହାନ୍ତି, ସେମାନଙ୍କୁ ଭଗବତ ଧର୍ମରେ ତଲ୍ଲୀନ ହେବା ଉଚିତ । ଯେତେବେଳେ ବି ସୁବିଧା ମିଳୁଥିବ, ସେତେବେଳେ କୌଣସି ଜଣେ ଭଗବତ୍ ଭକ୍ତ ଦେଖା ହୋଇଯାଉଥିବ, ଭଗବତ ଧର୍ମ ପ୍ରସଙ୍ଗ ଶ୍ରବଣ କରୁଥିବା ଉଚିତ । ଭାଗବତୀ କଥାକୁ ବାରମ୍ବାର ପଢୁଥିବା ଉଚିତ । ଥରେ ପଢିଦେଇଛି ବୋଲି ସନ୍ତୁଷ୍ଟ ହୋଇଯିବା ଉଚିତ ନୁହେଁ । **ବିଷୟାସକ୍ତମାନେ ବିଷୟକଥା ବାରମ୍ବାର ଚିନ୍ତନ କରିବାରେ ଯେଉଁଭଳି ନୂଆ ନୂଆ ଆନନ୍ଦ ପାଉଥା'ନ୍ତି, ଠିକ୍**

**ସେହିଭଳି ଭାଗବତୀ କଥାରାଶିକୁ ଥରକୁ ଥର ପଢ଼ିବା ଦ୍ୱାରା ନୂତନ ନୂତନ ପ୍ରେମ ଭାବ ଉତ୍ପନ୍ନ ହୋଇଥାଏ । ତହିଁରେ ବିଶେଷତା ଅନୁଭୂତ ହୁଏ ।** କେବଳ ଶ୍ରବଣ ଓ ପଠନ କରି ବି ସନ୍ତୁଷ୍ଟ ହୋଇଯିବା ଉଚିତ ନୁହେଁ । ସବୁବେଳେ ସେଇ ସେଇ କଥାକୁ ମନ କରୁଥିବା ଉଚିତ, ସ୍ମରଣ କରୁଥିବା ଉଚିତ । ଭାଗବତ-ଧର୍ମପ୍ରତି ମନରେ ଶ୍ରଦ୍ଧା-ରଖିଥିଲେ, ହୃଦୟରେ ସେଥିପ୍ରତି ଶ୍ରଦ୍ଧା ରଖିଥିଲେ, ଅନ୍ୟ ଲୋକମାନେ ଭାଗବତ-ଧର୍ମ ବିଷୟରେ କିଛି ଜାଣନ୍ତୁ, ଏପରି ପ୍ରଯତ୍ନ କରୁଥିଲେ, ଏହାର ପ୍ରସାର ପ୍ରଚାର ନିମନ୍ତେ ବିଦ୍ଧିବଦ୍ଧ ଯୋଜନା କରୁଥିଲେ, ଏପରି ଯୋଜନା ବା ଭାବନାକୁ ଅନୁମୋଦନ କରୁଥିଲେ, ଯଥାଶକ୍ତି ସହାୟତା କରୁଥିଲେ ସର୍ବୋତ୍ତମ କଥା ହୋଇଥାଏ । ଏହି ଭଳି **ଯେଉଁମାନଙ୍କ ମନରେ ଭଗବତ-ଧର୍ମପ୍ରତି ଆଦର ଉତ୍ପନ୍ନ ହୋଇଯାଏ, ପୂର୍ବରୁ ସେ ଅନ୍ୟ ମଣିଷର ଦ୍ରୋହ କରିଥିବା ଅଲଗା କଥା, ସେ ପୂର୍ବେ ବିଶ୍ୱଦ୍ରୋହ କରିଥିଲେ ବି, ଏବେ ଭାଗବତ-ଧର୍ମ ପ୍ରତି ଶ୍ରଦ୍ଧା ରଖିଥିବା ହେତୁ ତତ୍‌କାଳ ପବିତ୍ର ହୋଇଯାଏ । ନିଜେ ତ ଉଦ୍ଧାର ପାଇଯାଏ, ଅନ୍ୟଙ୍କୁ ବି ଉଦ୍ଧାର କରିବା ପାଇଁ ସମର୍ଥ ହୋଇଯାଏ ।''**

ମହାମନା ବସୁଦେବ କହିଲେ, ''ତାହାହେଲେ ହେ ବ୍ରହ୍ମନ୍ ! ଆପଣ ମୋ ଉପରେ ବି କୃପା କରିବା ହୁଅନ୍ତୁ । ମୋତେ ବି ଭାଗବତ-ଧର୍ମ ଶୁଣାନ୍ତୁ । ଆପଣଙ୍କୁ କଷ୍ଟ ତ ନିଶ୍ଚୟ ହେବ, କିନ୍ତୁ ଆପଣଙ୍କ ଭଳି ସାଧୁ ତ ପରକାର୍ଯ୍ୟ-ସାଧନରେ-ତତ୍ପର ରହିଥାଆନ୍ତି, ସେମାନେ ନିଜେ କଷ୍ଟ ସହ୍ୟକରି ଅନ୍ୟଙ୍କର କଷ୍ଟ ଲାଘବ କରନ୍ତି ।''

ଏପରି କଥା ଶୁଣି ନାରଦ ଚମକି ପଡ଼ିଲା ଭଳି କହିଲେ, ''ହେ ରାଜନ୍ ! ଭାଗବତ-ଧର୍ମ ଆଉ କଷ୍ଟ ! ଆପଣ ବଢ଼ିଆ କହିଲେ । ହେ ମହାଭାଗ ! ଭଗବାନଙ୍କ ଲୀଳା ସମ୍ବନ୍ଧରେ କହିବା ପାଇଁ ମୋତେ ସୁଯୋଗ ଦେଇ ଆପଣ ମୋ ଉପରେ ପରମ କୃପା କରିଛନ୍ତି । ଭଗବାନ୍‌ଙ୍କର ମଧୁମୟୀ ଲୀଳା, ତାଙ୍କର ଜଗମଙ୍ଗଳ ପବିତ୍ର ନାମର ଶ୍ରବଣ ତଥା କୀର୍ତ୍ତନ ବିଶ୍ୱକୁ ପବିତ୍ର କରିଥାଏ । ଆପଣ ପ୍ରଶ୍ନକରି ସେହି ପରମ କଲ୍ୟାଣକାରୀ ଶ୍ରୀମନ୍ନାରାୟଣଙ୍କୁ ମୋତେ ମନେପକାଇଦେଲେ । ତାଙ୍କର ପରମ ରୁଚିର ଭାଗବତ-ଧର୍ମ ସମ୍ବନ୍ଧରେ ମୋତେ ପ୍ରଶ୍ନ କଲେ । ସେହି ପ୍ରଶ୍ନର ଉତ୍ତର ଦେବାଦ୍ୱାରା ମୋର ଅନାୟାସରେ ଭଗବନ୍ନାମ ମାହାତ୍ମ୍ୟ ତଥା ଭଗବନ୍ ଲୀଳା କଥାର ସୁଯୋଗ ମିଳିଯିବ, ଏଥିରେ ମୁଁ ବି କୃତାର୍ଥ ହୋଇଯିବି । ଆପଣ ତ ଏପରି ବିଶ୍ୱକଲ୍ୟାଣକାରୀ ପ୍ରଶ୍ନକରି ମୋ ପ୍ରତି ଅନୁକମ୍ପା ପ୍ରଦର୍ଶନ କରିଛନ୍ତି । ଏହି ସଂକ୍ରାନ୍ତରେ ମୁଁ ଆପଣଙ୍କୁ ଗୋଟିଏ ଅତି ସୁନ୍ଦର କଥା ଶୁଣାଉଛି । ସେହି କଥାରେ ଭାଗବତ-ଧର୍ମର ହିଁ ବର୍ଣ୍ଣନା ଅଛି । ଏହି କଥା ରାଜର୍ଷି ଜନକ ଓ ନବଯୋଗେଶ୍ୱରଙ୍କ ସହିତ ହୋଇଥିଲା ।

ମହାମନା ବସୁଦେବ ପଚାରିଲେ, '' ଭଗବନ୍ ! ଏଇ ନବଯୋଗେଶ୍ୱର ପୁଣି କିଏ ?

କୃପାକରି ତାଙ୍କର ପରିଚୟ ପ୍ରଥମେ ଦିଅନ୍ତୁ । ଏବଂ ତା'ପରେ ସେହି ପବିତ୍ର କଥା କହିବେ ।

ଦେବର୍ଷି ନାରଦ କହିଲେ,''ରାଜନ୍ ! ସ୍ୱାୟମ୍ଭୁବ ମନୁଙ୍କର ପ୍ରିୟବ୍ରତ ନାମକ ପୁତ୍ର ଥିଲେ । ପ୍ରିୟବ୍ରତଙ୍କ ପୁଅର ନାମ ନାଭି, ଆଉ ଏହି ନାଭିଙ୍କ ଘରେ ଭଗବାନ୍ ମୋକ୍ଷଧର୍ମର ଉପଦେଶ ଦେବା ଉଦ୍ଦେଶ୍ୟରେ ଋଷଭ ଦେବ ରୂପରେ ଅବତାର ହୋଇଥିଲେ । ଭଗବାନ ଋଷଭ ଇନ୍ଦ୍ରଙ୍କ ଝିଅ ଜୟନ୍ତୀଙ୍କୁ ବିବାହ କରିଥିଲେ । ଭଗବତୀ ଜୟନ୍ତୀଙ୍କ ଗର୍ଭରେ ଭଗବାନ୍ ଏକ ଶତ ପୁତ୍ର ଜାତ କଲେ । ସେମାନଙ୍କ ଭିତରେ ଭରତ ହେଉଛନ୍ତି ଜ୍ୟେଷ୍ଠ । ସବୁ ପୁଅମାନେ ବେଦ ଶାସ୍ତ୍ରରେ ତ ପାରଙ୍ଗମ ଥିଲେ ସେମାନେ ଧର୍ମାତ୍ମା ଓ ବିନୟୀ ବି ଥିଲେ । ସେମାନଙ୍କ ନ' ପୁତ୍ର ନ' ବର୍ଷ ପର୍ଯ୍ୟନ୍ତ ରାଜା ହୋଇଥିଲେ । ଏହି ଭାରତବର୍ଷ ପୂର୍ବେ ଅଜନାମ-ଖଣ୍ଡ ନାମରେ ପ୍ରସିଦ୍ଧ ଥିଲା । ଭରତ ଯେତେବେଳେ ଏହାର ରାଜା ହେଲେ, ସେତେବେଳେ ଏହାର ନାମ ଭରତଖଣ୍ଡ ବା ଭାରତବର୍ଷ ହେଲା । ଏହି ମହାରାଜ ଭରତ ଜଣେ ପରମ ଭଗବତ୍ ଭକ୍ତ ଥିଲେ । ସେ ଏହି ବିଶାଳ ସାମ୍ରାଜ୍ୟକୁ ତୃଣ ସମ ବିଚାରକରି ତ୍ୟାଗ କରି ଶାଳଗ୍ରାମ କ୍ଷେତ୍ରକୁ ଯାଇ ତପ କରିବାରେ ଲାଗିଲେ । କୌଣସି ଏକ ପୂର୍ବଜନ୍ମର ଅଦୃଷ୍ଟ ହେତୁ ତାଙ୍କର ଗୋଟିଏ ମୃଗ ଶାବକ ସହିତ ପ୍ରେମ ହୋଇଗଲା, ଯାହା ଫଳରେ ତାଙ୍କୁ ଗୋଟିଏ ହରିଣ ଓ ଏକ ଜଡ଼ଭରତର - ଏପରି ଦୁଇଟି ଜନ୍ମ ଅଧିକା ନେବାକୁ ପଡ଼ିଥିଲା । ଏହିଭଳି ସେ ତିନି ଜନ୍ମରେ ପରମପଦ ପ୍ରାପ୍ତ ହୋଇଥିଲେ । ଭରତ ନ' ଜଣଙ୍କ ପରେ ରାଜା ହୋଇଥିଲେ । ଏହିଭଳି ଦଶଜଣଙ୍କ ପରେ ଆଉ ବାକୀ ରହିଲେ ନବେ । ଏହି ନବେଙ୍କ ଭିତରୁ ଏକାଅଶୀଜଣ ନିଜର ଅତି ଉଗ୍ର ପୁଣ୍ୟକର୍ମ ହେତୁ କ୍ଷତ୍ରିୟରୁ ବ୍ରାହ୍ମଣ ହୋଇଗଲେ । ଏମାନଙ୍କ ପରବର୍ତ୍ତୀ ବଂଶ ବ୍ରାହ୍ମଣ ହୋଇଥିଲେ । ବଳକା ଯେଉଁ ନ'ଜଣ ରହିଲେ ସେମାନେ ଗୃହତ୍ୟାଗୀ, ବିରାଗୀ, ଯୋଗେଶ୍ୱର ହୋଇଗଲେ । ଏହି ନ' ଜଣ ସବୁବେଳେ ଏକାଠି ରହୁଥିଲେ । ଏଣୁ ଏମାନଙ୍କୁ ନବଯୋଗେଶ୍ୱର ବୋଲି କୁହାଯାଉଥିଲା । ଏହି ନବ-ଯୋଗେଶ୍ୱରଙ୍କର ନାମ ଥିଲା- କବି, ହରି, ଅନ୍ତରୀକ୍ଷ, ପ୍ରବୁଦ୍ଧ, ପିପ୍ପଳାୟନ, ଆବିର୍ହୋତ୍ର, ଦ୍ରୁମିଳ, ଚମସ ଆଉ କରଭାଜନ ।

ମହାମନା ବସୁଦେବ ପଚାରିଲେ, ''ଭଗବନ୍ ! ଏହି ନବଯୋଗେଶ୍ୱରଙ୍କର ନିଷ୍ଠା କିପରି ଥିଲା ?''

ଦେବର୍ଷି ନାରଦ କହିଲେ, ''ରାଜନ୍ ! ଏମାନେ ସତ୍ ଅସତ୍, ଜଡ଼ ଚେତନ ଅଥବା ବ୍ୟକ୍ତ ଅବ୍ୟକ୍ତ ରୂପ ସମସ୍ତ ସଂସାରକୁ ଭଗବାନଙ୍କ ରୂପବୋଲି ଜାଣିଥିଲେ । ସମ୍ପୂର୍ଣ୍ଣ ଭୂତଙ୍କୁ ନିଜର ଆତ୍ମାରେ ଦେଖୁଥିଲେ । ସମସ୍ତ ଯେତେବେଳେ ଭଗବାନଙ୍କର ରୂପ,

ସେତେବେଳେ ଶୋକ, ମୋହ ତଥା ଭୟ ଆଦିର ଆଉ ଅସ୍ତିତ୍ୱ ରହିଲା ନାହିଁ । ଏଣୁ ଏମାନେ ସମସ୍ତେ ନିଡର ହୋଇ ସ୍ୱଚ୍ଛନ୍ଦରେ ପୃଥିବୀ ପୃଷ୍ଠରେ ବିଚରଣ କରିବାରେ ଲାଗିଲେ । ଏମାନଙ୍କର ସର୍ବତ୍ର ଅବ୍ୟାହତ ଗତି ଥିଲା । କୌଣସିଠାରେ କେହି ଏହାଙ୍କୁ ଗତିରୋଧ କରିପାରୁନଥିଲେ । ଯେଉଁସ୍ଥାନକୁ ଇଚ୍ଛା ହେଉଥାଏ ସେଠାକୁ ଚାଲିଯାଉଥା'ନ୍ତି । କେତେବେଳେ ଦେବଲୋକକୁ ତ ଆଉ କେତେବେଳେ ସିଦ୍ଧ ଲୋକକୁ, ପୁଣି କେତେବେଳେ ଗନ୍ଧର୍ବ ଲୋକକୁ ତ ଆଉ କେତେବେଳେ ସାଧ ଲୋକକୁ ଚାଲିଯାଉଥିଲେ । ଏହିଭଳି ଏମାନେ ସୁର, ଅସୁର, ସାଧ, ଗନ୍ଧର୍ବ, ଯକ୍ଷ, କିନ୍ନର, ନାଗ ତଥା ମନୁଷ୍ୟାଦି ଲୋକରେ ବିଚରଣ କରୁଥିଲେ । ଋଷି, ମୁନି, ଚାରଣ, ଭୂତନାଥ, ବିଦ୍ୟାଧର, ବ୍ରାହ୍ମଣ ତଥା ଗୋରୁମାନେ ରହୁଥିବା ପବିତ୍ର ସ୍ଥାନରେ ଏମାନେ ସୁଖପୂର୍ବକ ବାସ କରୁଥିଲେ ।

''ଥରକର କଥା । ଏମାନେ ଅନ୍ୟ ଦ୍ୱୀପ ତଥା ବର୍ଷରେ ବିଚରଣ କରି କରି ଭାରତବର୍ଷକୁ ଆସିଥିଲେ । କାଶୀ, ପ୍ରୟାଗ, ଗୟା ତଥା ଅନ୍ୟାନ୍ୟ ତୀର୍ଥ ବୁଲାବୁଲି କରିବା ପରେ ମିଥିଳାପୁରୀରେ ପହଞ୍ଚିଲେ । ସେତେବେଳେ ନିମିବଂଶୀୟ ମହାରାଜ ନିମି ଗୋଟିଏ ମହାନ୍ ଯଜ୍ଞାନୁଷ୍ଠାନ କରୁଥିଲେ । ବଡ଼ ବଡ଼ ବେଦଜ୍ଞ ମୁନି-ଋଷି ସେହି ଯଜ୍ଞରେ ଋତ୍ୱିଜ, ହୋତା ତଥା ସଦସ୍ୟତି ହୋଇଥିଲେ । ହଠାତ୍ ଏହି ସୂର୍ଯ୍ୟ-ସଦୃଶ ପରମ ତେଜସ୍ୱୀ ମହାଭାଗବତ ଯୋଗେଶ୍ୱରଙ୍କୁ ଦେଖି ଯଜ୍ଞର ଯଜମାନ ମହାରାଜ ବିଦେହ ତଥା ଯଜ୍ଞ କରାଉଥିବା ବ୍ରାହ୍ମଣମାନେ ଉଠି ଠିଆ ହୋଇଗଲେ । ଯଜ୍ଞ କୁଣ୍ଡରେ ପ୍ରଜ୍ୱଳିତ ହେଉଥିବା ଆହବନୀୟାଦି ଅଗ୍ନି ବି ଜ୍ୟୋତିରୂପରେ ଅଗ୍ନିକୁଣ୍ଡରୁ ବାହାରି ଆସି ଯୋଗେଶ୍ୱରଙ୍କ ସମ୍ମାନାର୍ଥେ ଠିଆ ହୋଇଗଲେ । ରାଜା ଆଗଭର ହୋଇ ଯୋଗେଶ୍ୱରଙ୍କୁ ସମ୍ମାନିତ କଲେ, ସେହି ନାରାୟଣ ପାରାୟଣ ମୁନିମାନଙ୍କୁ ସର୍ବୋତ୍ତମୋତ୍ତମ ଆସନରେ ବସାଇଲେ । ପାଦ୍ୟ, ଅର୍ଘ୍ୟ, ମଧୁପର୍କାଦି, ଦ୍ୱାରା ସେମାନଙ୍କୁ ପୂଜା କଲେ । ନ'ଟି ଆସନରେ ବସିଥିବା ସେହି ମୁନିମାନେ ନବ-ଅଗ୍ନି ସଦୃଶ ତେଜରେ ଉଦ୍‌ଭାସିତ ହେବାରେ ଲାଗିଥିଲେ । ସେମାନେ ବ୍ରହ୍ମାଙ୍କର ପରମତେଜସ୍ୱୀ ନ' ପୁତ୍ରଙ୍କ ଭଳି ସୁଶୋଭିତ ଦେଖାଯାଉଥିଲେ । ମୁନିମାନେ ସୁଖପୂର୍ବକ ବସିଥିଲେ । ଯଜ୍ଞର ବିଶ୍ରାମ ସମୟ ହେଲା । ସେତେବେଳେ ମହାରାଜ ବିଦେହ ପ୍ରଶ୍ନ ପଚାରିଥିଲେ । ମହାରାଜ ବିଦେହ ଯେଉଁ ପ୍ରଶ୍ନ କରିଥିଲେ, ଆଉ ନବଯୋଗେଶ୍ୱର ଯେଉଁ ଉତ୍ତର ଦେଇଥିଲେ ସେହି ପ୍ରଶ୍ନୋତ୍ତରରେ ଆପଣ ଆପଣଙ୍କର ସମସ୍ତ ପ୍ରଶ୍ନର ଯଥୋଚିତ ଉତ୍ତର ପାଇଯିବେ ।''

ଦେବର୍ଷି ନାରଦ କହିଚାଲିଥିଲେ, ''ହେ ମହାଭାଗ ବସୁଦେବ ! ନବଯୋଗେଶ୍ୱରଙ୍କୁ ବିଦେହ ରାଜା ଅତି ବିନୟର ସହିତ ଦୁଇ ହାତ ଯୋଡ଼ି କହିଲେ, 'ପ୍ରଭୁ ! ଆପଣମାନେ

ଏହି ଯଜ୍ଞରେ ଯୋଗଦାନ କରି ଆମକୁ ଗୌରବାନ୍ୱିତ କରିଛନ୍ତି । ଆପଣମାନେ ସ୍ୱୟଂ ସାକ୍ଷାତ୍ ଭଗବାନ ମଧୁସୂଦନଙ୍କର ପରମ ପ୍ରିୟ ପାର୍ଷଦ । ଭଗବାନଙ୍କର ପାର୍ଷଦ ସଂସାରୀ ପ୍ରାଣୀଙ୍କୁ ପବିତ୍ର କରିବା ପାଇଁ ହିଁ ତ ପର୍ଯ୍ୟଟନ କରୁଥା'ନ୍ତି । **ଆପଣମାନଙ୍କ ଭଳି ପରମ ଭାଗବତ ଭଗବଦ୍‌ଭକ୍ତ ନିଜେ ଆସି ଯେଉଁମାନଙ୍କୁ ଦର୍ଶନ ପ୍ରଦାନ କରନ୍ତି ସେମାନେ ସଂସାରରେ ନିଶ୍ଚିତ ଭାବେ ଅତି ଭାଗ୍ୟବାନ ।** ହେ ମହାମୁନିଗଣ ! ଏହି ଜୀବ ଚୌରାଶୀ ଲକ୍ଷ ଯୋନିରେ କର୍ମାନୁସାରେ ଘୂରି ବୁଲୁଥାଏ । ମନୁଷ୍ୟ ଦେହ ପାଇବା ଅତି ଦୁର୍ଲଭ କଥା । ଅନ୍ୟଯୋନିକୁ ଭୋଗ ଯୋନି ବୋଲି କୁହାଯାଏ । କାରଣ ଅନ୍ୟାନ୍ୟ ଯୋନିରେ ପ୍ରାଣୀ ପୂର୍ବକୃତ ପୁଣ୍ୟ ପାପକୁ ହିଁ ଭୋଗ କରିଥାଏ । ମୋକ୍ଷ ନିମନ୍ତେ ସାଧନ ପ୍ରାୟତଃ ଆଦୌ କରିପାରେ ନାହିଁ । ମୋକ୍ଷ ଏହି ମାନବ ଶରୀରରେ କେବଳ ସମ୍ଭବ ହୋଇଥାଏ । ମୋକ୍ଷ-ଦ୍ୱାର-ରୂପୀ ଏହି ମଣିଷ ଶରୀର ଅତି ଭାଗ୍ୟ କରିଥିଲେ ମିଳେ । ମଣିଷ ଜନ୍ମ ପାଇବା ପରେ ଭଗବଦ୍‌ଭକ୍ତଙ୍କ ଦର୍ଶନ ସତ୍‌ସଙ୍ଗ ପ୍ରାପ୍ତ ହେବା ଅତି ଦୁର୍ଲଭ କଥା ହୋଇଥାଏ । କୌଣସି କୌଣସି ପରମ ଭାଗ୍ୟବାନ୍‌ର ଏଭଳି ସୌଭାଗ୍ୟ ହୋଇଥାଏ । ଆପଣମାନଙ୍କ ଦର୍ଶନ ସ୍ୱତଃ ପାଇଥିବାରୁ ଆମେ ନିଶ୍ଚିତ ପରମ ଭାଗ୍ୟବାନ । ଏବେ ଆପଣମାନଙ୍କୁ ମୁଁ କିଛି ପଚାରିବାକୁ ମନ କରିଛି । କୃପାକରି ଯଦି ଅନୁମତି ଦିଅନ୍ତି ତେବେ ପଚାରନ୍ତି ।''

ଯୋଗେଶ୍ୱରମାନେ କହିଲେ, ''ରାଜନ୍ ! ସଂସାରରେ ଆପଣ ବିଦେହ ନାମରେ ପ୍ରସିଦ୍ଧ । ଆପଣ ହେଉଛନ୍ତି ଜ୍ଞାନୀଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣ ଯାହା ଇଚ୍ଛା କରୁଛନ୍ତି ପ୍ରସନ୍ନତାର ସହିତ ପଚାରନ୍ତୁ ।''

ଯୋଗେଶ୍ୱରମାନଙ୍କ ଠାରୁ ଏପରି ସୁନ୍ଦର ଅନୁମୋଦନ ପାଇବା ପରେ ମହାରାଜ ବିଦେହ ବିନମ୍ରତାର ସହିତ କହିଲେ, ''ହେ ନିଷ୍ପାପ ମୁନିଗଣ ! ମୁଁ ଆପଣଙ୍କୁ ପଚାରିବାକୁ ଚାହୁଁଛି ଯେ, **ଏହି ଅସାର ସଂସାରରେ ପରମ କଲ୍ୟାଣ କେଉଁଥିରେ ଅଛି ? କି ପ୍ରକାର କର୍ମ କଲେ ପରମପଦ ପ୍ରାପ୍ତି ସୁଲଭ ହୋଇଥାଏ ? ସଂସାରରେ ଯେତେ ମାନ, ସମ୍ମାନ, ଧନ ବୈଭବ ପାଇଲେ ସୁଦ୍ଧା,** ଆତ୍ୟନ୍ତିକ ଶାନ୍ତି ପ୍ରାପ୍ତ ହୁଏ ନାହିଁ- କିଛି ନା କିଛି ଶରୀରିକ ମାନସିକ ଚିନ୍ତା ରହିଥାଏ । ଆତ୍ୟନ୍ତିକ କଲ୍ୟାଣ ହୋଇପାରୁଥିବା ସମ୍ବନ୍ଧରେ ମୋର ଜାଣିବା ପାଇଁ ପ୍ରବଳ ଇଚ୍ଛା ହୋଇଛି । ସଂସାରରେ ମୁହୂର୍ତ୍ତକ ପାଇଁ ଯଦି ମହାତ୍ମାଙ୍କର ଦର୍ଶନ ମିଳିଯାଏ ତେବେ ତା' ସହିତ ସଂସାରର କୌଣସି ଧନ ସମାନ ହୋଇପାରେ ନାହିଁ । ସତ୍‌ସଂଗ ବଡ଼ ଭାଗ୍ୟରେ ମିଳେ । କୃପାକରି ମୋର ଏହି ପ୍ରଶ୍ନର ଉତ୍ତର ଦିଅନ୍ତୁ । ମହାତ୍ମାମାନେ ଅନଧିକାରୀର ପ୍ରଶ୍ନର ଉତ୍ତର ଦିଅନ୍ତି ନାହିଁ । ଏଣୁ ତେଣୁ କଥା କହି ଟାଳି ଦିଅନ୍ତି । ଯଦି ଆପଣମାନେ ମୋତେ ଅଧିକାରୀ

ହୋଇଥିବା ମନେ କରୁଛନ୍ତି, ଯୋଗ୍ୟ ବୋଲି ଜାଣୁଛନ୍ତି ତେବେ ସେହି ଭାଗବତ୍-ଧର୍ମ କଥା କୁହନ୍ତୁ, ଯାହା ଉପରେ ପ୍ରସନ୍ନ ହୋଇ ଅଜନ୍ମା ପ୍ରଭୁ ତାଙ୍କର ଶରଣ ଗ୍ରହଣ କରିଥିବା ଶରଣାଗତ ଭକ୍ତଙ୍କୁ ସ୍ୱୟଂ ନିଜକୁ ବି ଦେଇ ଦେଇ ଥାଆନ୍ତି । ତାଙ୍କୁ ନିଜ ସ୍ୱରୂପ ବି ପ୍ରଦାନ କରିଦେଇ ଥାଆନ୍ତି ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ବସୁଦେବଙ୍କୁ ନାରଦ କହୁଛନ୍ତି, ''ରାଜନ୍ ! ମହାରାଜ ବିଦେହ ଯେତେବେଳେ ନମ୍ରତା ପୂର୍ବକ ନବଯୋଗେଶ୍ୱରଙ୍କୁ ଏପରି ପ୍ରଶ୍ନ କଲେ ସେତେବେଳେ ସେଇ ଭାଇମାନଙ୍କ ଭିତରେ ଯିଏ ସବୁଠାରୁ ବଡ଼ ଯୋଗେଶ୍ୱର କବି, ରାଜାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ହେଲେ । ମହର୍ଷି କବି ମହାରାଜ ବିଦେହଙ୍କୁ ଉତ୍ତର ଦେବାକୁ ଯାଇଁ ଭାଗବତ-ଧର୍ମର ଅତି ଉତ୍ତମତା ସହିତ ନିରୂପଣ କଲେ ତାହା ମୁଁ ଆଗକୁ କହିବି । ସଂସାରରେ ଏହା ହେଉଛି ସମସ୍ତ ଉପଦେଶର ସାର । ଏହାକୁ ଶୁଣିବା ପରେ ଆଉ ଅଧିକ କିଛି ଶୁଣିବାର ଆବଶ୍ୟକତା ରହେ ନାହିଁ । ଏଣୁ ଏହାକୁ ସମାହିତ ଚିତ୍ତରେ ଶୁଣନ୍ତୁ ।''

## ଛପ୍ପୟ

*ବୋଲେ ବିଜ୍ଞ ବିଦେହ ବିପ୍ରଗନ ବାତ ବତାବେଂ ।*
*ଜା ଜଗ ମହଁ ଜା ସାର ଭାଗବତ-ଧର୍ମ ସୁନାବେଂ ।।*
*ଜିନ ଧର୍‌ମନି କୁଁ ପାଲି ଜଗତ୍ କେ ବନ୍ଧନ ଟୁଟେଁ ।*
*ଲୋକ ଔର ପରଲୋକ ଜୀବ କେ ଭୟ ସବ ଛୁଟେଁ ।।*
*ଜନକ ପ୍ରଶ୍ନ ସୁନି ମୁନିନି ମେ, ତୌ ଜୋ କବି ମୁନି ଜ୍ୟେଷ୍ଠ ହୈଂ ।*
*ଭୂପତି ତୈ କହିବୈଂ ଲଗେ, ଜୋ ସବଇ ବିଧି ଶ୍ରେଷ୍ଠ ହୈଂ ।।*



# ବିଦେହ-ଯୋଗେଶ୍ୱର ସମ୍ବାଦ

ମନ୍ୟେଽକୁତଶ୍ଚିଦ୍‌ଭୟମଚ୍ୟୁତସ୍ୟ
ପାଦାମ୍ବୁଜୋପାସନମତ୍ର ନିତ୍ୟମ୍ ।
ଉଦ୍‌ବିଗ୍ନବୁଦ୍ଧେରସଦାତ୍ମଭାବାଦ୍
ବିଶ୍ୱାତ୍ମନା ଯତ୍ର ନିବର୍ତ୍ତତେ ଭୀଃ ॥☆
(ଶ୍ରୀ ଭା. ୧୧ସ୍କ. ୨ଅ. ୩୩ ଶ୍ଳୋକ)

**ଛପ୍‌ପୟ**

*କବିବୋଲେ- 'ନୃପ ! ଅଜି ଚରନ ଚିନ୍ତନ ହୀ ଭୟହର ।*
*ସୁଗମ ଭାଗବତ ଧରମ ରାଜପଥ ସୁନ୍ଦର ସୁଖକର ॥*
*ତନ, ମନ, ବାନୀ, ବୁଦ୍ଧି ଆଦି ତେଁ କରେଂ କରମ ଜୋ ।*
*କୃଷ୍ଣାର୍ପନ କର ଦେଇ ନ ଫିରି ବନ୍ଧନ କାରକ ସୋ ॥*
*ପ୍ରଭୁ ଲୀଲା ନିତ ନିତ ସୁନୈ, ନାମ ଗାନ ନିରଭୟ କରୈଂ ।*
*ନାଚୈ ଗାବୈ ନେହ ଭରି, ହଁସି ରୋବୈ ଗିରି ଗିରି ପରୈ ॥*

ସଂସାରରେ ଯେତେ ପ୍ରାଣୀ ଅଛନ୍ତି ସମସ୍ତେ ଜଣେ ଜଣେ ବାଟୋଇ । ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପର୍ଯ୍ୟନ୍ତ ପ୍ରତ୍ୟେକ ଯାତ୍ରା କରୁଥାଆନ୍ତି । କେହି ଜ୍ଞାତସାରରେ କରୁଛି ତ କେହି ଅଜ୍ଞାତରେ । କେହି କେହି ନିଜକୁ ଯାତ୍ରୀ ବୋଲି ଜାଣିଥା'ନ୍ତି, ଆଉ ନିଜ ନିଜର ଗନ୍ତବ୍ୟ ସ୍ଥାନ ଉଦ୍ଦେଶ୍ୟରେ ଚାଲି ଥାଆନ୍ତି । କିନ୍ତୁ ଯେଉଁମାନେ ନିଜକୁ ଯାତ୍ରୀ ବୋଲି ଜାଣି ନାହାନ୍ତି, ସେମାନେ ବି ଚାଲିଛନ୍ତି, ହେଲେ ସେମାନେ ମୋହ-ମଦିରା ଅତ୍ୟଧିକ ପାନ କରିଥାଆନ୍ତି । ମଦ୍ୟପ ଚାଲୁଥିବା ବେଳେ ସେ ଚାଲୁଛି ବୋଲି ଜାଣିପାରେ ନାହିଁ । ସେ ବି ଚାଲୁଥାଏ ସତ, ହେଲେ ସେ ବିପରୀତ ଦଶା ଆଡ଼େ ଚାଲୁଥାଏ । କେହି ଦୟାଳୁ ଯଦି

---

☆ କବି ବୋଲନ୍ତି ରାୟେ ଶୁଣ । ଯେ ଭାଗବତ-ଧର୍ମ ଗୁଣ ॥
ନାନା ପ୍ରକାରେ ହରି ପାଦେ । ଯାହାର ଚିତ୍ତ ଅପ୍ରମାଦେ ॥
ଭଜଇ ଜାଣି ବିଷ୍ଣୁମାୟା । ସେ ହରି ତାରେ କରେ ଦୟା ॥
କୃଷ୍ଣର ଅଭୟ ଚରଣ । ଅଶେଷ ଦୁଃଖ ନିବାରଣ ॥
ଏଣେ ଯେ ଚିନ୍ତେ କୃଷ୍ଣ ପାଦ । ତାହାକୁ ନ ଲାଗେ ପ୍ରମାଦ ॥
ପଥ ନଜାଣି ଯେବେ ବୁଡ଼େ । ସେ ପ୍ରାଣୀ କେବେହେଁ ନପଡେ ॥
(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୨ୟ ଅ.)

ଦୟାପରବଶ ହୋଇ ତାକୁ ଧରି ରାଜପଥରେ ବାଟ କଢ଼ାଇ ଦିଏ ତେବେ ସେ କେତେବେଳେ ନିଶ୍ଚୟ ଗନ୍ତବ୍ୟ ସ୍ଥାନରେ ପହଞ୍ଚିଯାଏ । କେବଳ ରାଜପଥ ପାଇବାର ଆବଶ୍ୟକତା ଥାଏ । ରାଜପଥ ପାଇଗଲେ, ଚାଲି ଚାଲି ହେଉ, ଅଥବା କୌଣସି ଯାନରେ ହେଉ, ସେ ଠିକ୍ ସ୍ଥାନରେ ପହଞ୍ଚିଯାଏ । ସିଧା ବାଟ ପାଇଗଲେ ଗନ୍ତବ୍ୟ ସ୍ଥାନରେ ବିଳମ୍ବରେ ହେଲେ ବି ନିଶ୍ଚୟ ପହଞ୍ଚିଯାଇ ହୁଏ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ଜନକଙ୍କର ଭାଗବତ-ଧର୍ମ ସମ୍ବନ୍ଧୀ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ନବଯୋଗେଶ୍ୱର କବି କହିଲେ, 'ରାଜନ୍ ! ଆପଣ ଏପରି ସ୍ଥାନ କଥା ପଚାରିଛନ୍ତି ଯେଉଁଠାରେ କୌଣସି ପ୍ରକାର ଭୟ ନଥାଏ । ତେଣୁ ହେ ମହାରାଜ ! **ଭଗବାନ ବାସୁଦେବଙ୍କର ଚରଣାରବିନ୍ଦକୁ ପ୍ରତିଦିନ ଉପାସନା କରି ସକଳ ପ୍ରକାର ଭୟଶୂନ୍ୟ ହେବା ମୁଁ ଜାଣିଛି** । ହୃଦୟରେ ଯେଉଁଠାରେ ଭଗବାନଙ୍କର ଚରଣାରବିନ୍ଦର ଚିନ୍ତନ ହେବାରେ ଲାଗିଲା, ସେଠାରୁ ସକଳ ଭୟ ପଳାଇଯିବାରେ ଲାଗେ । ଯେପରି ଯେଉଁ ଗୁମ୍ଫାରେ ସିଂହ ପଶିଯାଏ ସେହି ଗୁମ୍ଫାକୁ ଅନ୍ୟ ଜୀବଜନ୍ତୁ ଯିବାକୁ ସାହସ କରନ୍ତି ନାହିଁ । ଏହି ମଣିଷ ଅଜ୍ଞାନାନ୍ଧକାର ହେତୁ ନିଜେ ନିଜକୁ ଭୁଲି ଯାଇଛି, ସେ ଏହି ଅସତ୍ ଶରୀରକୁ ସତ୍ ବୋଲି ଗ୍ରହଣ କରିନେଇଛି । ଅନାତ୍ମ ପଦାର୍ଥରେ ଆତ୍ମବୁଦ୍ଧି ସନ୍ନିହିତ କରିଦେଇଛି । ନାଶବାନ୍‌କୁ ଅବିନାଶୀ ବୋଲି ଗ୍ରହଣ କରିନେଇ ତା'ର ପାଳନ-ପୋଷଣରେ ମନପ୍ରାଣ ଲଗାଇ ଦେଇଛି । ଏପରି ଅଜ୍ଞ ପୁରୁଷ ବି ଯେଉଁ ପୁଣ୍ୟପଥକୁ ପାଇ ନିଜର ନିର୍ଦ୍ଦିଷ୍ଟ ଗନ୍ତବ୍ୟ ସ୍ଥାନରେ ପହଞ୍ଚିଯାଏ, ତା'ରି ନାମ ହେଉଛି **ଭାଗବତ-ଧର୍ମ** ।''

ରାଜା ପଚାରିଲେ, ''ଗୋଟିଏ ସ୍ଥାନକୁ ଯିବାପାଇଁ ପଥ ତ ଅନେକ ଥାଏ, ଆପଣ ଏହି ପଥର ପ୍ରଶଂସା କାହିଁକି କରୁଛନ୍ତି ? **ଭାଗବତ-ଧର୍ମରେ ଏପରି କି ବିଶେଷତା ଅଛି ?''**

ଯୋଗେଶ୍ୱର କବି କହିଲେ, ''ରାଜନ୍ ! **ଭାଗବତ-ଧର୍ମର ବିଶେଷତା ଏହା ଯେ, ଏହାକୁ ଆଶ୍ରୟ କରିଥିବା ଲୋକ କେବେ ବି ପ୍ରମାଦରେ ପଡ଼େ ନାହିଁ** । ଥରେ ବିଶ୍ୱାସ କରିଦେଲେ, ଯେ ହଁ ମୁଁ ଏହି ପଥରେ ଯିବି- ଏହା ଏତେ ବିସ୍ତୃତ ଓ ସରଳ ସିଧା ଛାୟାପ୍ରଦ ରାଜପଦ ଯେ ଏଥିରେ ଝୁଣ୍ଟିବାର ବା ପଥହୁଡିବାର ସମ୍ଭାବନା ହିଁ ନଥାଏ । ସ୍ଥାନେ ସ୍ଥାନେ ସୁନ୍ଦର, ଶୀତଳ ଜଳାଶୟର ବ୍ୟବସ୍ଥା ଥାଏ, ଶ୍ରମ ଶ୍ରାନ୍ତି ନିମନ୍ତେ ଅନ୍ୟାନ୍ୟ ଉପକରଣ ଥାଏ, ସ୍ୱାଦିଷ୍ଟ ଓ ପକ୍ୱ ଫଳ ବୃକ୍ଷରେ ଅଳ୍ପ ଉଚ୍ଚରେ ଫଳପୂର୍ଣ୍ଣ ଥାଏ ଯେପରି ଚାଲୁଥିବା ସମୟରେ ହାତ ବଢ଼ାଇ ତାହା ସଂଗ୍ରହ କରାଯାଇ ପାରିବ । ଏଥିରେ ସହଯାତ୍ରା କରୁଥିବା ସାଥୀ ଦୟାଳୁ, କୃପାଳୁ, ମଧୁରଭାଷୀ ତଥା ସୁହୃଦ ହୋଇଥା'ନ୍ତି । ଆପଣ

ଆଖିବୁଜି, କାହାକୁ କିଛି ନ ପଚାରି ଏହି ପଥରେ ଦୌଡ଼ିଲେ ବି କେଉଁଠାରେ ହେଲେ ଧକ୍କା ହେବେ ନାହିଁ କି କେଉଁଠାରେ ଝୁଣ୍ଟି ତଳେ ପଡ଼ିବେ ନାହିଁ । ଏହି ପଥରେ କାଦୁଅ ନାହିଁ, ଶିଉଳି ନାହିଁ, ଆବଡ଼ା-ଖାବଡ଼ା ନାହିଁ କି ଖାଲ-ଢିପ ନାହି । ଏକବାର ସମାନ-ସରଳ ମାର୍ଗ ।''

ମହାରାଜ ଜନକ ପଚାରିଲେ, ''ଭଗବନ୍ ! ଏହି **ଭାଗବତ-ଧର୍ମକୁ ପାଳନକାରୀ ମଣିଷର କର୍ତ୍ତବ୍ୟ କ'ଣ ? ସେ କ'ଣ କରିବା ଉଚିତ ?''**

କବି କହିଲେ, ''ଭାଗବତ-ଧର୍ମ ଏପରି କହେ ନାହିଁ ଯେ ତୁମେ ଯେଉଁ କୁଳଗତ କାର୍ଯ୍ୟ କରୁଛ ତାକୁ ଛାଡ଼ି ଅନ୍ୟ କାର୍ଯ୍ୟ କର । ଅଥବା ତୁମେ କୌଣସି କର୍ମ କରନାହିଁ । ଦେହଧାରୀମାନେ କର୍ମବିନା ରହିବା ଅସମ୍ଭବ କଥା । ତୁମେ ଯେଉଁ କାର୍ଯ୍ୟ କରୁଥିବ ତାକୁ ସଂଗେ ସଂଗେ କୃଷ୍ଣାର୍ପଣ କରିଦେଉଥିବ ।ତାକୁ ନିଜ ପାଖରେ ସଂଗ୍ରହକରି ରଖିବନାହିଁ । ଯାହା ପାଖକୁ ଯେତେ ବି ପଇସା ଆସୁଛି, ସେ ସଂଗେ ସଂଗେ ତାହା ଅନ୍ୟଙ୍କୁ ଦେଇ ଦେଉଛି, ପରୋପକାରରେ ବ୍ୟୟ କରିଦେଉଛି- ସେପରି ଲୋକର ଚୋର ଭୟ ନଥାଏ । ସେ ନିଶ୍ଚିନ୍ତରେ ଘୁଙ୍ଗୁଡ଼ିମାରି ଶୋଇପାରେ । ଭୟ ହୋଇଥାଏ ନିଜର ବୋଲି ସଂଗ୍ରହ କରିବା ଦ୍ୱାରା । ଆମ ଘର ପାଖରେ ଅନ୍ୟ ଜଣଙ୍କର ଧନ ଅଛି । ତାହା ଯଦି ଚୋରୀ ହୋଇଯାଏ ଅଥବା ନଷ୍ଟ ହୋଇଯାଏ, ତେବେ ଆମକୁ କିଛି ଚିନ୍ତା ନାହିଁ । ଯିଏ ସଂଗ୍ରହ କରିଥାଏ ତାକୁ ଘୋର ଚିନ୍ତା ଘାରେ । **ଏଣୁ କର୍ମର ଫଳ ସଂଗ୍ରହ କରିବା ଅନୁଚିତ । ତାହା ଭଗବତ୍ ଅର୍ପଣ କରିଦେଉଥିବା ଉଚିତ୍ ।**

ରାଜା କହିଲେ, ''ମହାରାଜ ! **ଅର୍ପଣ କିପରି କରାଯାଏ ?''**

ଯୋଗେଶ୍ୱର କବି କହିଲେ, ''ଯେଉଁଭଳି ଶରୀର ମାଧ୍ୟମରେ ଆମେ ପରୋପକାରାଦି ଯେଉଁ ସବୁ କାମ କଲୁ ସହସା 'କୃଷ୍ଣାର୍ପଣମସ୍ତୁ' କହି ଦେଉ- ଅର୍ଥାତ୍ ଏହି କର୍ମ ମୁଁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରିଦେଲି । ଏପରି କରିବାଦ୍ୱାରା ଯଦି କିଛି ପୁଣ୍ୟ ସେହି କାର୍ଯ୍ୟରୁ ମିଳିଥାଏ, ତେବେ ତାହା ଆମକୁ ସ୍ପର୍ଶ କରିବ ନାହିଁ । ଆଉ ଯଦି ପାପ ହୋଉଯାଇଥିବ, ତାହା ବି ଆମକୁ ସ୍ପର୍ଶ କରିବ ନାହିଁ । ଆମକୁ କେହି ଅମୃତ ଦେଲେ ଆମେ ତାହା ଅନ୍ୟଙ୍କୁ ବାଣ୍ଟିଦେଉ, ବିଷ ଦେଲେ ଆମେ ତାହା ବାଣ୍ଟିଦେଉ । ଆମେ ଯେତେବେଳେ ତାହା ସେବନ କରୁନାହୁଁ, ଆମେ ଯେତେବେଳେ ତାହା ଗ୍ରହଣ କରୁନାହୁଁ, ସେମିତି ସ୍ଥଳରେ ଆମକୁ ତା'ର ଅନୁକୂଳ ପ୍ରତିକୂଳ ଫଳ ମିଳିବ କିପରି ?'' ଆମେ ଏହିପରି କହିବା ସଂଗେ ସଂଗେ ତାହା କୃଷ୍ଣାର୍ପଣ ହୋଇଗଲା । ସେ କଥା ବା ବାଣୀ ଶ୍ରୀକୃଷ୍ଣଙ୍କର ବାଣୀ ହୋଇଗଲା, ଆମର ସେଥିରେ କିଛି ପ୍ରୟୋଜନ ନାହିଁ । ମନମଧ୍ୟରେ ଖରାପ ହେଉ, ଭଲ ହେଉ, ଯେଉଁ ଭାବନା ଆସେ ଆମେ ତତ୍କ୍ଷଣାତ୍

''ଶ୍ରୀକୃଷ୍ଣାର୍ପଣମସ୍ତୁ'' କହି ଦେଉ । ଏବେ ମନର ଭାବନାର ଯେଉଁ ପରିଣାମ ହେବ ତାହା ଶ୍ରୀକୃଷ୍ଣ ଜାଣନ୍ତି, ତାଙ୍କ କାମ ଜାଣେ- ଆମେ କିନ୍ତୁ ସେହି ଫଳାଫଳରୁ ନିର୍ମୁକ୍ତ ହୋଇଗଲୁ । ଆଖି ଯାହା ଦେଖିଲା, ନାକ ଯାହା ଶୁଂଘିଲା, ଜିଭ ଯାହା ଚାଖିଲା, କାନ ଯାହା ଶୁଣିଲା, ଚର୍ମ ଯେଉଁ ସ୍ପର୍ଶ ଲାଭକଲା, ଆଉ ଏହିଭଳି ଇନ୍ଦ୍ରିୟମାନେ ଯାହାସବୁ ବିଷୟ ଉପଭୋଗ କଲେ, କର୍ମେନ୍ଦ୍ରିୟମାନେ ଯାହା ସବୁ କର୍ମ ବି କଲେ, ତତ୍କାଳ ସେ ସମସ୍ତଙ୍କୁ 'କୃଷ୍ଣାର୍ପଣ କରିଦେବା ଉଚିତ । ଏପରି କଲେ ତାହା ସବୁ ଶ୍ରୀକୃଷ୍ଣଙ୍କର ସମ୍ପତ୍ତି ହୋଇଯାଏ । ବୁଦ୍ଧି ଯାହା ଚିନ୍ତାକଲା, ଅହଙ୍କାର ଯେଉଁସବୁ ଅହଙ୍କୃତି କଲା, ତାହା ଭୁଲରେ ବି ନିଜ ପାଖରେ ନରଖିବା ଉଚିତ । ଚୋରକୁ କୃଷ୍ଣଙ୍କୁ ସମର୍ପଣ କରିଦିଅ । ଯେତେବେଳେ ଚୋରକୁ ଆମେ ନିଜ ତରଫରୁ ନିଜର ସର୍ବସ୍ୱ ଦେଇ ଦେବା, ସେ ଆଉ ଚୋରାଇବାକୁ କିଛି ଥିବ କି ? ହେ ଭାଇ ! ଡର ଆସେ ସଂଗ୍ରହରେ । ତ୍ୟାଗ କରିଦେବା ମାତ୍ରେ ଶାନ୍ତି ମିଳେ । ତୁମେ ଯେଉଁଭଳି ସ୍ୱାଭାବାଧୀନ ହୋଇ କର୍ମ କରୁଥିବ ତାହାକୁ ସେହି ପରମାତ୍ମା ପ୍ରଭୁ ନାରାୟଣଙ୍କ ପାଇଁ ପ୍ରଦାନ କରିଦେଇ ନିଶ୍ଚିନ୍ତ ହୋଇଯିବା ଉଚିତ ।''

ରାଜା କହିଲେ, ''ଭଗବନ୍ ! ଆପଣ ଅତି ସରଳ ମାର୍ଗବୋଲି କହୁଥିଲେ, ମାତ୍ର ଏହି ମାର୍ଗ ତ ଅତି ଜଟିଳ, କଠିନ । ସାଂସାରିକ କୌଣସି କର୍ମ ତ ହୋଇପାରିବ ନାହିଁ । ଦିନ ରାତି ଅର୍ପଣ କରି ହିଁ ରହିବାକୁ ପଡ଼ିବ । କାରଣ ଏପରି କ୍ଷଣଟିଏ ବି କଟେ ନାହିଁ ଯେତେବେଳେ ତନୁରେ ହେଉ ବା ମନରେ ହେଉ ମଣିଷ କିଛି ନା କିଛି କରୁନଥାଏ । ଶରୀର ହୁଏତ କିଛି କରୁ ନଥାଇପାରେ, ମାତ୍ର ମନ ତ ନିଶ୍ଚୟ କିଛି ଭାବୁଥାଏ । ସଂସାରରେ ଭଲ ଖରାପ, ସବୁ ପ୍ରକାରର ଲୋକ ଅଛନ୍ତି- କେହି ଆଦର କରନ୍ତି, କେହି ଗାଳି ଦିଅନ୍ତି । ସେତେବେଳେ 'କୃଷ୍ଣାର୍ପଣ' କଥା ଭୁଲି ହୋଇଯାଏ । **ଅର୍ପଣ, ସମର୍ପଣ, ଭାବନା କିପରି ଆସେ ତା'ର ଉପାୟ କୁହନ୍ତୁ ।''**

ଏପରି କଥା ଶୁଣି ମହାମୁନି କବି କହିଲେ, ''ରାଜନ୍ ! ଆପଣ ପ୍ରଥମେ ଭୟ କାହିଁକି ହୁଏ ଭାବି ଦେଖନ୍ତୁ । ଦୂରରୁ ଅନ୍ଧକାରରେ ଆମେ ଗୋଟିଏ ଅନ୍... ଦଙ୍କା ହୋଇପଡ଼ିଥିବା ଦଉଡ଼ି ଦେଖୁଛେ, ତାକୁ ସର୍ପ ବୋଲି ଭାବି ଭୟ କରୁଛେ । ବାସ୍ତବରେ କିନ୍ତୁ ଦଉଡ଼ି ସର୍ପ ନୁହେଁ । ଆମର ଏପରି ବିପରୀତ ଧାରଣା ହୋଇଥାଏ ଅଜ୍ଞାନ ହେତୁ । ଠିକ୍ ସେହିଭଳି ଏହି ପୁରୁଷ ବିଶ୍ୱମ୍ଭରଙ୍କ ଠାରୁ ବିମୁଖ ହୋଇ ସଂସାରକୁ ସତ୍ ବୋଲି ମନେକରୁଛି ଓ ପ୍ରତାରିତ ହେଉଛି- ଆଉ ଏଥିରେ ହିଁ ସୁଖ ଖୋଜିବାରେ ଲାଗିଛି । କଦଳୀ ଗଛର ଗଣ୍ଡିରେ ଥିବା ଛେଲିକୁ ପରସ୍ତ ପରସ୍ତ କରି ବାହାର କରି ମଣିଷ ତା' ଭିତରେ ଫଳ ଖୋଜିବାରେ ଲାଗିଛି । ମାତ୍ର ଗୋଟିଏ ପରସ୍ତ ପରେ ଆଉ ଗୋଟିଏ ପରସ୍ତ ଛେଲି ହିଁ ବାହାରୁଛି । ଫଳର ଦେଖା ମିଳେ ନାହିଁ । ଠିକ୍ ଏହିଭଳି ଭଗବାନଙ୍କର

ମାୟାରେ ମୋହିତ ହୋଇ ମଣିଷ ଏହି ଦେହକୁ ନିଜର ରୂପ ବୋଲି ମନେକରିବାରେ ଲାଗିଛି, ଏହା ଦ୍ୱାରା ସାଂସାରିକ ସୁଖ ଭୋଗକରି ସୁଖୀ ହେବ ବୋଲି ଭାବିଛି । **ଯେଉଁ ଦେହ ସ୍ୱୟଂ, ଅସତ୍ ଓ ନାଶବାନ୍, ତହିଁରୁ ଅବିନାଶୀ ଓ ଶାଶ୍ୱତ ସୁଖ କିଭଳି ମିଳି ପାରିବ ! ଆତ୍ମା ଅତିରିକ୍ତ ଯେତେବେଳେ ଦ୍ୱିତୀୟବସ୍ତୁର ସତ୍ତା ବିଷୟରେ ଅଭିମାନ ଆସିଯାଏ, ସେତେବେଳେ ଭୟ ପ୍ରାପ୍ତ ହୁଏ ।** ସବୁବେଳେ ଭୟ ଅନ୍ୟଙ୍କଠାରୁ ହୋଇଥାଏ । ଆପଣା ଛାଏଁ ଭୟ କେବେବି ହୁଏ ନାହିଁ । ସ୍ତ୍ରୀ ଯେତେବେଳେ ଏକାକୀ ରହେ ସେତେବେଳେ ସେ ନିର୍ଭୟ ହୋଇ ନିଜର ସମସ୍ତ ଅଙ୍ଗକୁ ଖୋଲା ରଖେ । ଅନ୍ୟର କଳ୍ପନା ଆସିଯିବା ମାତ୍ରେ ସେ ଅଙ୍ଗକୁ ଘୋଡ଼ାଇ ପକାଏ । ଏଥିପାଇଁ ସତ୍ୟସ୍ୱରୂପ ଅଦ୍ୱୟ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାର କଳ୍ପନା ନ କରୁଥିବା ଉଚିତ । **ଯେଉଁ ବିବେକୀ ପୁରୁଷ ଭାଗବତ-ଧର୍ମର ଆଚରଣ କରୁଥାଏ ତାକୁ ନିଜର ଶିକ୍ଷା ପ୍ରଦାନକାରୀ ଗୁରୁଙ୍କଠାରେ ଇଷ୍ଟଭାବନା ଦୃଢ଼ୀଭୂତ କରି ରଖିଥିବା ଉଚିତ । ସେ ଯେପରି ଶିଖାନ୍ତି ସେପରି ଅନନ୍ୟ ଭକ୍ତି ଭାବରେ ଭଗବାନଙ୍କୁ ଭଜନ କରିବା ଉଚିତ ।''**

ମହାରାଜ ଜନକ କହିଲେ, ''ଭଗବନ୍ ! ଜ୍ଞାନ ଯିଏ ଦିଏ ସେ ହିଁ ଗୁରୁ । ଆପଣ ହେଉଛନ୍ତି ଆମର ଗୁରୁ । ଆମେ ଅସତ୍ ବସ୍ତୁର ଚିନ୍ତନ କରିବାକୁ ଚାହୁଁନାହୁଁ । ତେବେ ବି ଚିନ୍ତା କରି ପକାଉଛୁ । ଏପରି କଥା ଚିନ୍ତା ହେବାରୁ ଦୁଃଖ ହୁଏ ବୋଲି ବି ଆମେ ଜାଣୁଛୁ । ତେବେ ବି ତହିଁରେ ସୁଖ ପାଇବୁ ବୋଲି ବାଧ୍ୟ ହୋଇ, ବିବଶ ହୋଇ କରିପକାଉଛୁ । ଏପରି କ୍ଷେତ୍ରରେ ଆମର ଉପାୟ କ'ଣ ଅଛି ?''

ମହାମୁନି କବି ହସି ହସି କହିଲେ, ''ରାଜନ୍ ! କଥାରେ ଅସତ୍ କହିଦେଲେ ତାହା ଅସତ୍ କ'ଣ ହୋଇଯାଏ ? ସକଳ ପ୍ରକାର ବେଦ ଶାସ୍ତ୍ର ଢେଣ୍ଢୁରା ପିଟି ପିଟି ଉଚ୍ଚସ୍ୱରରେ ପ୍ରକାଶ କରିଛି ଯେ, ଏହି ଦ୍ୱୈତ ପ୍ରପଞ୍ଚ ବାସ୍ତବରେ କିଛି ନୁହେଁ । ଯେପରି ଦେଖା ଯାଏ, ସେପରି ନୁହେଁ, ତେବେ ବି ସତ୍ୟ ଭଳି ଆଭାସିତ ହେଉଥାଏ । ଆମେ ବସି ବସି ଭାବୁଛେ । ଗୋଟିଏ ରଥ ଆଣିବା, ସେଥିରେ ସୁନ୍ଦର ସୁନ୍ଦର ଘୋଡ଼ା ଯୋଚିବା । କୋମଳ ମୃଦୁଳ ଗଦି ପକାଇବା, ସେଥିରେ ବସି କାଶୀକୁ ଯିବା । ଏପରି କଥା ଭାବି ଭାବି ଯେତେବେଳେ ଆମେ ତନ୍ମୟ ହୋଇଯାଉ, ସେତେବେଳେ ଘୋଡ଼ା, ରଥ, ଗଦି ଆଦି ସତ୍ୟ ଭଳି ବୋଧ ହେଉଥାଏ, ମନେ ମନେ ରଥରେ ବସି ଯାଉଥିବା ବେଳେ ସତରେ ରଥରେ ବସି ଯାଉଥିବା ଭଳି ଲାଗେ । କିନ୍ତୁ ମନ ଅନ୍ୟକଥା ଭାବିବା କ୍ଷଣି ମନର ପୂର୍ବ ରଥ-ଘୋଡ଼ାଦି ଭାବନା ଅସତ୍ୟ ପ୍ରତୀତ ହୋଇଯାଏ । ଠିକ୍ ଏହିଭଳି ସ୍ୱପ୍ନରେ ରାଜା ହୋଇଯିବା, ଅତ୍ୟୁତ୍ତମ ସୁଖ ଭୋଗ କରିବା ଅନୁଭୂତ ହୁଏ । ଯେ ପର୍ଯ୍ୟନ୍ତ ସ୍ୱପ୍ନ ଦେଖୁଥିବ, ସ୍ୱପ୍ନର ଦୃଶ୍ୟ ସତ୍ୟଭଳି ଜଣାପଡୁଥିବ । କିନ୍ତୁ ସ୍ୱପ୍ନ ଭାଙ୍ଗିଯିବା ପରେ

କିଛି ନଥାଏ । ଏ ସମସ୍ତ ପଦାର୍ଥର ଚିତ୍ତ ହିଁ ମନକୁ ମନ କଳ୍ପନା କରିଥାଏ ଓ ତାହାହିଁ ଏଥିରେ ସୁଖାନୁଭୂତି କରିଥାଏ । ଏଣୁ ହତ୍ୟାର ମୂଳ ଏହି ଚିତ୍ତ ହୋଇଥାଏ । ଏଣୁ ଚୋରକୁ ନ ମାରି ତା' ମାତାକୁ ମାରିବା ଉଚିତ । ଫଳରେ ଚୋର ଆଉ ଜନ୍ମ ହୋଇପାରିବ ନାହିଁ । ବାହାର ପଦାର୍ଥକୁ ନଷ୍ଟ ନକରି ପ୍ରଥମେ ଏହି କର୍ମସମୂହର ସଂକଳ୍ପ-ବିକଳ୍ପକାରୀ ଚିତ୍ତକୁ ବଶୀଭୂତ କରିଦେବା ଉଚିତ । ସ୍ରୋତକୁ ଅଟକାଇଦେଲେ ଧାରା ଆପଣାଛାଏଁ ରୋକି ହୋଇଯିବ । ଚିତ୍ତ ବଶୀଭୂତ ହୋଇଯିବା କ୍ଷଣି ଦ୍ୱୈତବୁଦ୍ଧି ଦୂର ହୋଇଯିବ । ଯେତେବେଳେ ସର୍ବତ୍ର ଆତ୍ମରୂପ ଶ୍ରୀହରି ଦେଖାଯିବାରେ ଲାଗିବେ, ସେତେବେଳେ ଭୟ କେଉଁଠାରୁ ଆସିବ ?''

ମହାରାଜ ଜନକ କହିଲେ, ''ହେ ମହାମୁନି ! ଆପଣ ତ ଅସମ୍ଭବ କଥା କହୁଛନ୍ତି । ଚିତ୍ତର ସ୍ୱଭାବ ହେଉଛି ଭାବିବା, ଚିନ୍ତନ କରିବା । ଚିନ୍ତା ନ କରି ତାହା ମୁହୂର୍ତ୍ତଟିଏ ବି ରହିପାରେ ନାହିଁ । ସେପରି ପରିପ୍ରେକ୍ଷୀରେ **ଚିତ୍ତକୁ ରୋକିବା କିପରି ? କରିବା କ'ଣ ?''**

ଯୋଗେଶ୍ୱର କବି ହସି ହସି କହିଲେ, ''ରାଜନ୍ ! ଚିତ୍ତକୁ ଚିତ୍ତ ଚୋରଙ୍କ ଚିନ୍ତନରେ ଲଗାଇ ଦିଅ । ତାଙ୍କର ଭୁବନମୋହନ ରୂପର ଚିନ୍ତନ କରୁ, ତାଙ୍କର ଗୁଣ ଗାନକରୁ, ତାଙ୍କର ଶ୍ରୁତିମଧୁର ନାମକୁ ନିଃସଙ୍କୋଚ ଉଚ୍ଚାରଣ କରୁ । ସାରାଂଶ ହେଉଛି ନିଜ ଜୀବନକୁ ଧ୍ୟେୟ ନାମ-ସଂକୀର୍ତ୍ତନରେ ଅନୁରାଗ ଉତ୍ପନ୍ନ କରି ରଖିଥିବା ଉଚିତ ।''

ରାଜା ପଚାରିଲେ, ''ଭଗବନ୍ ! **ନାମସଂକୀର୍ତ୍ତନ କାହାକୁ କୁହନ୍ତି ? ନାମ ସଂକୀର୍ତ୍ତନ ପ୍ରତି ଅନୁରାଗ ଉତ୍ପନ୍ନ ହୁଏ କିଭଳି ?** ଭଗବନ୍ନାମରେ ଅନୁରାଗ ହୋଇଛି ବୋଲି ଜାଣିବା କିପରି ? କୃପାକରି ମୋର ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦିଅନ୍ତୁ ।''

ଏହାଶୁଣି ମହର୍ଷି କବି କହିଲେ, ''ରାଜନ୍ ! ଏହା ଅତି ଗୂଢ଼ କଥା । ତଥାପି ମୁଁ ଯାହା ଜାଣିଛି କହିବି । ଆପଣ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ନାମସଂକୀର୍ତ୍ତନର ମହିମା ପ୍ରସଙ୍ଗରେ ଯୋଗେଶ୍ୱର କବି ଯାହା କହିଲେ, ତାହା ମୁଁ ଆପଣମାନଙ୍କୁ କହୁଛି, ଆଉ ଏହା ହିଁ ମଣିଷଙ୍କର ପ୍ରଧାନ କର୍ତ୍ତବ୍ୟ ।''

**ଛପ୍ପୟ**

*ଲୋକ ଲାଜ କୁଁ ତ୍ୟାଗି ପୁକାରୈ ପ୍ରଭୁ ଅବ ଆଓ ।*
*ହରି ! ନାରାୟଣ ! କୃଷ୍ଣ ! କୃପାଲୋ ! ଦରଶ ଦିଖାଓ ।।*

ହେବିକେଂ ସଦା ଅସଂଗ ତ୍ୟାଗି ସଂକୋଚ ସବନିକୋ ।
କରେଂ ମଧୁର ସ୍ୱର ସତତ କୀରତନ ହରି ନାମନିକୋ ॥
କରତ-କରତ କୀରତନ କଲିତ, ହୋହି ପ୍ରେମ ପ୍ରଭୁ ପଦନି ମହଁ ।
ତବ ନିରଖୈ ନିଜ ଇଷ୍ଟକୂଁ, ଜୀବ ଚରାଚର ସବନି ମହଁ ॥



# ନାମ ସଂକୀର୍ତ୍ତନ ମହିମା

**ଶୃଣ୍ୱନ୍ ସୁଭଦ୍ରାଣି ରଥାଙ୍ଗପାଣେ-**
**ର୍ଜନ୍ମାନି କର୍ମାଣି ଚ ଯାନି ଲୋକେ ।**
**ଗୀତାନି ନାମାନି ତଦର୍ଥକାନି**
**ଗାୟନ୍ୱିଲଜ୍ଜୋ ବିଚରେଦସଙ୍ଗଃ ॥☆**

(ଶ୍ରୀ.ଭା.୧୧ସ୍କ. ୨ୟ ଅ. ୩୯ ଶ୍ଲୋକ)

### ଛପ୍ପୟ

ବୃକ୍ଷ, ନୀର, ନିଧି, ନଦୀ, ସରୋବର, ପୁର, ବନ, ଭୂଧର ।
ପୃଥିବୀ, ଜଲ, ଅରୁ ଅନିଲ, ଅନଲ, ନଭ, ନଖତ ଚରାଚରୁ ॥
ସବକୂଁ ପ୍ରଭୁ କୋ ରୂପ ସମୁଝି ନିତ ଶୀଶ ନବାବୈ ।
ଆଦର ସବକୋ କରୈ ଭେଦ ମନ ମହଁ ନହିଁ ଲାବୈ ।
ଭଗୈ ଭୂଖ ଭୋଜନ କରତ, ତୁଷ୍ଟି ପୁଷ୍ଟ ହୂ ହୋହି ଜ୍ୟୋଂ ।
ଭଜନ କରତ ପ୍ରଭୁ ପ୍ରେମ ଅରୁ ହୋହି ଜ୍ଞାନ ବୈରାଗ୍ୟ ତୋଂ ।

ଯାହା ସହିତ ପୂର୍ଣ୍ଣ ପରିଚୟ ହୋଇନଥିବ ତା'ପାଖରେ ସଂକୋଚ ହୋଇଥାଏ । ଯେଉଁ ମହାତ୍ମାମାନଙ୍କ ନାମ ଆମେ ଶୁଣିଥିବା, ସେମାନଙ୍କର କାର୍ଯ୍ୟ, ସେମାନଙ୍କର କୃତି ସହିତ ଆମର ପରିଚୟ ହୋଇଥିବ, କିନ୍ତୁ ପୂର୍ଣ୍ଣ ପରିଚୟ ହୋଇନଥିବ, ସେତେବେଳେ

---

☆ କୃଷ୍ଣଙ୍କ ଜନ୍ମ କର୍ମ ଯେତେ । ନାନା ଚରିତ ଏ ଜଗତେ ॥
ଶ୍ରବଣ ସ୍ମରଣ କୀର୍ତ୍ତନ । ତାରଇ ଅଶେଷ ଭୁବନ ॥
ସେ ନାମଭାବେ ଚିତ୍ତ ବଢ଼ି । ହୃଦରୁ ଲାଜଭୟ ଏଡ଼ି ॥
କାମାଦି ସଙ୍ଗ ଦୂର କରି । ଏ ଘୋର ସଂସାରେ ବିହରି ॥

(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୨ୟଅ.)

ପ୍ରଥମେ ପ୍ରଥମେ ତାଙ୍କ ପାଖରେ ଆମେ ସଂକୋଚ କରିଥାଉ । ଯେତେବେଳେ ପରିଚୟ ପ୍ରଗାଢ଼ ହୋଇଯାଏ, ଆମେ ଫୁଙ୍ଗୁଳା ହୋଇଯାଉ । କହିବା ନକହିବା ସବୁପ୍ରକାର କଥା ଖୋଲାଖୋଲି କହୁ । ଚୋର ପ୍ରଥମ ଚୋରି କରିବାବେଳେ ସଂକୋଚ କରେ । ଧୀରେ ଧୀରେ ତାହା ତା'ର ଅଭ୍ୟାସରେ ପଡ଼ିଯାଏ ସେତେବେଳେ ଚୋରି କରିବା ତା' ପାଖରେ ସାଧାରଣ କଥା ହୋଇଯାଏ । ନବବିବାହିତ ପତି-ପତ୍ନୀ ପ୍ରଥମ ମିଳନ ସମୟରେ ଉଭୟେ ଖୁବ୍ ସଂକୋଚ କରନ୍ତି । ପରେ ଦୁହିଁଙ୍କର ପୂର୍ଣ୍ଣ ପରିଚୟ ହୋଇଯାଏ । ଏହାପରେ କଳିକଜିଆ, ଏପରିକି ମାଡ଼ ପିଟାପିଟି ବି ସାଧାରଣ କଥା ହୋଇଯାଏ ।

ସଂକୋଚ ସେ ପର୍ଯ୍ୟନ୍ତ ରହିଥାଏ, ଯେ ପର୍ଯ୍ୟନ୍ତ ତହିଁରେ ତଦାକାର ହୋଇ ନଥାଉ । କୌଣସି ସଂପ୍ରଦାୟର ପ୍ରଥମେ ଦିକ୍ଷୀତ ହେବାବେଳେ ସଂପ୍ରଦାୟର ଚିହ୍ନ ଧାରଣ କରିବାକୁ ସଂକୋଚ ଲାଗେ । କିଛି ଦିନ ଧାରଣ କରିବାପରେ ଚିହ୍ନ ସହିତ ତଦାକାର ଭାବ ଆସିଯାଏ, ଏବଂ ଏହା ବିନା ଖାଲି ଖାଲି ଲାଗେ । ଠିକ୍ ଏହିଭଳି ଯିଏ ପୂର୍ବେ ଭଗବାନଙ୍କର ନାମ କୀର୍ତ୍ତନ କରିନଥାଏ, ପ୍ରଥମେ ପ୍ରଥମେ କୀର୍ତ୍ତନରେ ସ୍ୱରମିଳାଇ, ତାଳି ମିଳାଇ ବୋଲିବାରେ ସଂକୋଚ ଲାଗେ । କିନ୍ତୁ କିଛି କାଳ କରିବା ପରେ ଯେତେବେଳେ ସଂକୋଚ ଦୂର ହୋଇଯାଏ, ସମସ୍ତଙ୍କ ସମ୍ମୁଖରେ କୀର୍ତ୍ତନ କରି କରି ନାଚିବାରେ ବି ସାମାନ୍ୟ ସଂକୋଚ ଲାଗେନାହିଁ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, "ହେ ମୁନିଗଣ ! ମହାରାଜ ଜନକ ଯେତେବେଳେ ଯୋଗେଶ୍ୱର କବିଙ୍କୁ ସଂକୀର୍ତ୍ତନର ସ୍ୱରୂପ, ନାମ ସଂକୀର୍ତ୍ତନରେ ଅନୁରାଗ ହେବାର ଉପାୟ ତଥା ନାମସଂକୀର୍ତ୍ତନାନୁରାଗୀ ର ପରିଚୟ, ଏପରି ତିନୋଟି ପ୍ରଶ୍ନ ପଚାରିଲେ, ସେତେବେଳେ ଯୋଗେଶ୍ୱର କବି ତାଙ୍କ ପ୍ରଶ୍ନର ଉତ୍ତର ଦେଇଥିଲେ ।"

ମହାଯୋଗେଶ୍ୱର କବି ମହାରାଜ ବିଦେହଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ, "ରାଜନ୍ ! **ଭଗବାନଙ୍କ ନାମ, ତାଙ୍କ ଗୁଣାବଳୀକୁ ଉଚ୍ଚସ୍ୱରରେ ବାରମ୍ବାର ଉଚ୍ଚାରଣ କରିବା ହେଉଛି କୀର୍ତ୍ତନ** । ସେହି କୀର୍ତ୍ତନ ଯେତେବେଳେ ଅନେକ ଲୋକଙ୍କ ମେଳରେ ତାଳ ସ୍ୱର ବାଦ୍ୟ ସଂଗୀତ ସହିତ କରାଯାଏ, ସେତେବେଳେ ତାହା ସଂକୀର୍ତ୍ତନ ହୋଇଯାଏ । ନାମ ସଂକୀର୍ତ୍ତନରେ କେବଳ ଭଗବାନଙ୍କର ନାମ ହିଁ ବାରମ୍ବାର ଉଚ୍ଚାରିତ ହୁଏ; ଆଉ ଗୁଣ କୀର୍ତ୍ତନ ତଥା ଲୀଳା କୀର୍ତ୍ତନରେ ଭଗବାନଙ୍କ ଲୀଳାରାଶିର, ତାଙ୍କର ଦିବ୍ୟ ଚରିତ୍ର ଗାନ କରାହୁଏ । **ଯେ ପର୍ଯ୍ୟନ୍ତ ମନରେ ସାଂସାରିକ ବାସନା ପୂର୍ଣ୍ଣ ହୋଇ ରହିଥାଏ, ବିଷୟର ସଂକଳ୍ପ ବିକଳ୍ପର ଢେଉ ଉଠୁଥାଏ, ସେ ପର୍ଯ୍ୟନ୍ତ ଭଗବାନଙ୍କର ନାମରେ, କଥାରେ ପ୍ରେମ ଭାବ ଆସେନାହିଁ ।**"

ରାଜା ପଚାରିଲେ, ''ତେବେ ହେ ଭଗବନ୍ ! ଚିତ୍ତ ଶୁଦ୍ଧ ନ ହୋଇଥିଲେ କଥା କୀର୍ତ୍ତନରେ ଯୋଗଦେବା ବ୍ୟର୍ଥ ହୋଇଥାଏ ।''

ମହାମୁନି କବି କହିଲେ, ''ବ୍ୟର୍ଥ କାହିଁକି ହେବ ମହାରାଜ ! କଥା-କୀର୍ତ୍ତନରେ ଯୋଗ ଦେବା କଦାପି ବ୍ୟର୍ଥ ହୁଏନାହିଁ । ମନ ମଧ୍ୟରେ ବିଷୟ ବାସନାର ସଂକଳ୍ପ ବିକଳ୍ପ ହେଉଥିଲେ ବି କୀର୍ତ୍ତନରେ ଯୋଗ ଦେବା ଉଚିତ । କଥା କୀର୍ତ୍ତନ ଧୀରେ ଧୀରେ ସଂକଳ୍ପ ବିକଳ୍ପ ଦୂର କରେ ।''

ରାଜା କହିଲେ, ''ଭଗବନ୍ ! ମନ ସହିତ ଯୋଗ ନ ଦେଲେ ସମୟରତ କେବଳ ଅପଚୟ ହୋଇଥାଏ । ମନ ଯଦି ଲାଗୁନଥିବ ତେବେ କଥା କୀର୍ତ୍ତନରେ ଯୋଗଦେଇ ଲାଭ କ'ଣ ହେବ ? ପ୍ରଥମେ ଚିତ୍ତ ଶୁଦ୍ଧି କରିବା ପରେ କଥା କୀର୍ତ୍ତନରେ ଯୋଗଦେବା ଉଚିତ ।

ମହାଯୋଗେଶ୍ୱର କବି କହିଲେ, ''ମହାରାଜ ! ମନ ବିନା କୌଣସି କାମ ହୋଇନପାରେ । ବିନା ମନରେ ଆମେ ଶ୍ୱାସ ବି ନେଇ ପାରିବା ନାହିଁ । ମନରେ କିଛି ସଂକଳ୍ପ ରହିଥିଲେ କିଛି କାର୍ଯ୍ୟ ହୋଇପାରେ । ଯିଏ କଥା-କୀର୍ତ୍ତନରେ ମନ ବିନା, ଚିତ୍ତଶୁଦ୍ଧି ବିନା ଯୋଗ ଦିଏ, ତା' ମନରେ କିଛି ନା କିଛି ଦୁର୍ବଳତା ଏଥିପ୍ରତି ଥାଏ । ସେ ହୁଏତ ଏହା ଜାଣି ନଥାଇପାରେ । ଯଦି ଏଥିପ୍ରତି ତା'ର ସାମାନ୍ୟ ମାତ୍ର ଆଗ୍ରହ ନଥାନ୍ତା, ସେ କଦାପି ଯୋଗଦେଇ ନଥାନ୍ତା । ସବୁଦିନ ଯୋଗଦେବା ଦ୍ୱାରା ତା'ର ଆଗ୍ରହ ବଢ଼େ । ପୁଣି ମନ ଶୁଦ୍ଧିର ଉପାୟ ତ ହେଉଛି କଥାକୀର୍ତ୍ତନ । ଏହା ନିଶ୍ଚିତ ସତ୍ୟ ଯେ, ଯେପର୍ଯ୍ୟନ୍ତ ଘୋଡ଼ା ଚଢ଼ା ନ ଆସୁଥିବ ସେ ପର୍ଯ୍ୟନ୍ତ ଘୋଡ଼ାରେ ଚଢ଼ିବା ଉଚିତ ନୁହେଁ । କିନ୍ତୁ ଘୋଡ଼ା ଉପରେ ନ ଚଢ଼ିଲେ ଘୋଡ଼ା ଚଢ଼ିବା ଜାଣିବା କିପରି ଓ ସବୁଦିନ ଚଢ଼ିବା କିପରି ? ପହଁରା ଜାଣି ନଥିବା ଲୋକ ପାଣିରେ ପଶିବା ଉଚିତ ନୁହେଁ । କିନ୍ତୁ ପାଣିରେ ନ ପଶିଲେ ପହଁରା ଜାଣିବା କିପରି ? ଏଣୁ ମନ ନ ଲାଗୁଥିଲେ ସୁଦ୍ଧା କଥା-କୀର୍ତ୍ତନରେ ଯୋଗଦେବା ଉଚିତ ।''

ରାଜା କହିଲେ, ''ହଁ ଭଗବନ୍ ! ମୁଁ କୀର୍ତ୍ତନ ଓ ସଂକୀର୍ତ୍ତନ ବିଷୟରେ ତ ବୁଝିଗଲି, ହେଲେ ଭଗବାନଙ୍କ ନାମ ପ୍ରତି ଅନୁରାଗ ଆସିବ କିପରି ?''

ଯୋଗେଶ୍ୱର କବି କହିଲେ, ''ରାଜନ୍ ! ଏ କଥା ତ ମୁଁ ଆପଣଙ୍କୁ କହିସାରିଛି । ପ୍ରତିଦିନ ଅଭ୍ୟାସ ବଳରେ ଅନୁରାଗ ବଢ଼େ । ଅଭ୍ୟାସ ବଳରେ ଅତି କଠିନ କାର୍ଯ୍ୟବି ସହଜ ହୋଇଯାଏ । ଦେଖନ୍ତୁ, ରେଶମ ଦୌଡ଼ି କେଡ଼େ କୋମଳ ହୋଇଥାଏ । ଏହି କୋମଳ ରଜ୍ଜୁକୁ ଅତି କଠିନ ପଥରରେ ସବୁଦିନ ଘର୍ଷଣ କଲେ ପଥରରେ ବି ଗାତ

ହୋଇଯାଏ । ବୃକ୍ଷର ଗଣ୍ଡିର ବଲ୍‌କଲ କେଡ଼େ କଠିନ ହୋଇଥାଏ । ମାତ୍ର ଲତା ପ୍ରତିଦିନ ମାଡ଼ିବା ଫଳରେ ତହିଁରେ ଲତାମାଡ଼ିବା ଚିହ୍ନ ଖୋଦେଇ ହୋଇଯାଏ । ସଂସାରରେ ସମସ୍ତ କାମ ଅଭ୍ୟାସ ବଳରେ ସହଜ ହୋଇଥାଏ ।''

ରାଜା କହିଲେ, ''ଭଗବନ୍ ! ଆମମାନଙ୍କର ମନ ସ୍ୱଭାବତଃ ବିଷୟ ଆଡ଼କୁ ଯାଇଥାଏ । ବିଷୟବାର୍ତ୍ତା ଖୁବ୍ ମିଠା ଲାଗେ ।''

ମୁନି କହିଲେ, ''ରାଜନ୍ ! ଏହା ବି ହେଉଛି ଅଭ୍ୟାସର ଫଳ । ଜନ୍ମ ଜନ୍ମଧରି ଏହି ମନ ଆହାର, ବିହାର, ମୈଥୁନ ଆଦିରେ ଫସି ରହିଛି । କେତେ ଜନ୍ମ ଧରି ଏହି ସବୁ କର୍ମର ଅଭ୍ୟାସ ରହିଛି ତାହା କହି ହେବନାହିଁ । ଯେଉଁ କାର୍ଯ୍ୟ ପ୍ରତି ଇନ୍ଦ୍ରିୟଙ୍କର ଅନୁକୂଳ ଭାବ ହୋଇଯାଏ, ସେହି କାର୍ଯ୍ୟପ୍ରତି ସ୍ୱଭାବତଃ ବିନା ଶିଖାଇବାରେ ବି ସେଥିପ୍ରତି ପ୍ରବୃତ୍ତି ହୋଇଯାଏ । ବର୍ଷେ ଦୁଇବର୍ଷ ଧରି ଯେଉଁମାନଙ୍କର ଧୂମ୍ରପାନ, ସୁରାପାନର ଅଭ୍ୟାସ ହୋଇଯାଉଛି ସେହି କୁଅଭ୍ୟାସ ଛାଡ଼ିବା କଷ୍ଟକର ହୋଇଯାଉଛି । ବିଷୟକୁ ତ ଜନ୍ମ ଜନ୍ମ ଧରି ଜୀବ ଭୋଗକରି ଆସିଛି । ଏଥିପ୍ରତି ତେଣୁଁ ଅତିଦୃଢ଼ ଆକର୍ଷଣ ହୋଇଯାଇଥାଏ । ବିଷୟ ସମ୍ମୁଖକୁ ଆସିଯିବା କ୍ଷଣି ଚିତ୍ତ ଚଞ୍ଚଳ ହୋଇଉଠେ । ଏଥର କିନ୍ତୁ ଭଗବନ୍ନାମ ଅଭ୍ୟାସ କରିବାକୁ ହେବ । ମନ ଯେତେବେଳେ ଗୋଟିଏ ବିଷୟରେ ଲାଗିଯାଏ, ତହିଁରୁ ମନକୁ ହଟାଇ ଅନ୍ୟ ବିଷୟରେ ଲଗାଇବା କଠିନ ହୋଇଥାଏ । ତେଣୁ ଧୀରେ ଧୀରେ ବିଷୟରୁ ମନକୁ ଦୂରକରି, ବୈରାଗ୍ୟ ପ୍ରତି ଆକୃଷ୍ଟ କରି, ଭଗବାନଙ୍କ ଆଡ଼କୁ ମୁହାଁଇବା ଉଚିତ ।''

ରାଜା କହିଲେ, ''ବିଷୟରୁ ବୈରାଗ୍ୟ ହେବ କିପରି ? ଏହାର ପ୍ରଥମ ଉପାୟ ବତାନ୍ତୁ ।''

ଯୋଗେଶ୍ୱର କବି କହିଲେ, ''ରାଜନ୍ ! ଦେଖନ୍ତୁ । ଜଣକର ଗୁଡ଼ ଖାଇବା ଅଭ୍ୟାସ ହୋଇଯାଇଛି, ଆପଣ ତା' ମନକୁ ଗୁଡ଼ଠାରୁ ସେତେବେଳେ ଦୂରେଇ ପାରିବେ ଯେତେବେଳେ ଗୁଡ଼ଠାରୁ ଅଧିକ ଭଲ ଜିନିଷ, ମିଶ୍ରି ତା' ସମ୍ମୁଖରେ ରଖିବେ । ସମ୍ମୁଖରେ ରଖିବା ପରେ ବି ଯଦି କାମ ନହେଲା, ତେବେ ଗୁଡ଼ ଠାରୁ ମିଶ୍ରି ଉତ୍ତମ ବୋଲି ବୁଝାଇବାକୁ ହୋଇଥାଏ । ତା'ର ଇଚ୍ଛା ନଥିଲେ ସୁଦ୍ଧା ଦାନାଟିଏ ମିଶ୍ରି ତା' ପାଟିରେ ପକାଇଦେବେ । ସଂସାରୀ ଲୋକଙ୍କ ସ୍ୱାଭାବିକ ପ୍ରବୃତ୍ତି ସାଂସାରିକ କଥା ଶୁଣିବା ପାଇଁ ହୋଇଥାଏ । ପୁରୁଷଙ୍କୁ ସୁନ୍ଦରୀ ସ୍ତ୍ରୀ ମାନଙ୍କର, ସ୍ତ୍ରୀଙ୍କୁ ସୁନ୍ଦର ସୁନ୍ଦର ପୁରୁଷମାନଙ୍କ କଥା ଶୁଣିବାକୁ ଖୁବ୍ ଭଲ ଲାଗେ । **ସଂସାରର ସମସ୍ତ ପୁରୁଷଙ୍କଠାରୁ ଶ୍ରୀକୃଷ୍ଣ ଅତି ସୁନ୍ଦର । ସ୍ତ୍ରୀମାନଙ୍କଠାରୁ ଅଧିକ ଅନିନ୍ଦ୍ୟ ସୁନ୍ଦରୀ ହେଉଛନ୍ତି ଶ୍ରୀରାଧା । ଏଣୁ ଶ୍ରୀରାଧା-ଶ୍ରୀକୃଷ୍ଣଙ୍କ ଲୀଳା ଶ୍ରବଣ କରିବା ଉଚିତ । ମନକୁ ସାଂସାରିକ ବିଷୟରୁ ଦୂରକୁ ନେଇ**

**ଶ୍ରୀରାଧା-କୃଷ୍ଣଙ୍କର ବିହାର ପ୍ରସଙ୍ଗର ଦିବ୍ୟ କଥା ପ୍ରତି ଲଗାଇଦେବା ଉଚିତ ।** ଏତେ ଶୀଘ୍ର ମନ ବିଷୟରୁ ଦୂର ହୋଇନପାରେ, କାରଣ ଅନେକ ପ୍ରାଚୀନ କାଳରୁ ଅଭ୍ୟାସ ରହିଯାଇଥାଏ । ବିଷ୍ଠାକୀଟକୁ ବିଷ୍ଠାର ଦୁର୍ଗନ୍ଧ ଜଣାପଡ଼େ ନାହିଁ । ରଶୁଣ ପିଆଜ ଖାଉଥିବା ଲୋକଙ୍କୁ ଏହାର ଗନ୍ଧ ଜଣାପଡ଼େ ନାହିଁ । କିନ୍ତୁ କିଛି ଦିନ ଛାଡ଼ିଦେବା ପରେ ଏହାର ଦୁର୍ଗନ୍ଧ ଜଣାପଡ଼େ । ତେଣୁ କିଛି ସମୟ ବାହାରକରି ମନ ନଥିଲେ ସୁଦ୍ଧା କଥା-କୀର୍ତ୍ତନରେ ଯୋଗଦେବା ଉଚିତ । ଭଗବାନଙ୍କର ସୁନ୍ଦର ସୁନ୍ଦର ନାମ, ତାଙ୍କର ଜନ୍ମ ଚରିତ ଓ କର୍ମରାଶି ଶ୍ରବଣ କରିବା ଉଚିତ । ଇଚ୍ଛା ନ ଥିଲେ ସୁଦ୍ଧା କାନରେ ଭଗବାନଙ୍କ କଥା ପକାଇବା ଉଚିତ । ଚରିତ୍ର ଶୁଣି ଶୁଣି ଗୋଟିଏ ପରିଭାଷା କରିଦେଲେ ଭଗବାନଙ୍କର ଚରିତ ମନେପଡ଼ିଯାଏ ।''

ରାଜା ପଚାରିଲେ, ''ପରିଭାଷା କିପରି କରାଯାଏ ଭଗବନ୍ ?''

ମହାମୁନି କବି କହିଲେ, ''ପରିଭାଷା କହିଲେ ଆମକୁ ଭଗବାନଙ୍କ ନାମ ସ୍ମରଣ ରଖିବାକୁ ହେବ । ତେଣୁ କେତେକ ନାମ, ଯଥା ଦେବକୀନନ୍ଦନ, ବାସୁଦେବ, ମଥୁରେଶ- ଏପରି କେତେକ ନାମକୁ ମନେରଖିବାକୁ ହେବ । ଦେବକୀ-ବାସୁଦେବଙ୍କ ନାମ ମନେପଡ଼ିଯିବା ମାତ୍ରେ ଜନ୍ମ ଚରିତ୍ର ମନେପଡ଼ିଯାଉଥିବ । ବ୍ରଜର ଲୀଳା ମନେରଖିବାକୁ ହେଲେ ନନ୍ଦନନ୍ଦନ, ଯଶୋଦାନନ୍ଦନ, ଗୋପୀଜନବଲ୍ଲଭ, ଗୋପାଳ, ଏହି ନାମତକ ମନେରଖିବା ଉଚିତ । ପୂତନା ଲୀଳା ମନେରଖିବାକୁ ହେଲେ ପୂତନାରୀ; ଲବଣୀଚୋରି କଥା ମନେରଖିବା ପାଇଁ ନବନୀତଚୋର, ଲବଣୀଚୋର ନାମକୁ; ଜାମଳାର୍ଜୁନ ଲୀଳା ମନେରଖିବା ପାଇଁ ଦାମୋଦର; ଗୋବର୍ଦ୍ଧନ ଲୀଳା ପାଇଁ ଗିରିଧାରୀ; ରାସଲୀଳା ପାଇଁ କଂସାରୀ- ଏହିଭଳି ତାଙ୍କର ଚିତ୍ରିତ ଲୀଳା ପାଇଁ ରଖାଯାଇଥିବା ନାମକୁ ମନେରଖିବାକୁ ହୋଇଥାଏ । କଥା ଶ୍ରବଣ ପରେ କିଛି ସମୟ ତା' ବିଷୟରେ ମନନ କରିବା ଉଚିତ । ଏହାପରେ ଧୀରେ ଧୀରେ ସେହି ନାମକୁ ଉଚ୍ଚାରଣ କରୁଥିବା ଦରକାର । **ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରୀ, ହେ ନାଥ ନାରାୟଣ ବାସୁଦେବ ।** ଏପରି ଓଠରେ ଉଚ୍ଚାରଣ କରିବା ଦରକାର । **ଯେଉଁ ବସ୍ତୁକୁ ଆମେ ନିଜର କରିନେଉ ତା' ପ୍ରତି ଆମର ଆପଣାପଣ ହୋଇଯାଏ । ଏହାପରେ ସମସ୍ତଙ୍କ ଆଗରେ ଏହା କହିବାକୁ ଲାଜ ଲାଗେ ନାହିଁ । ସମ୍ବନ୍ଧ ନ ହେବା ପର୍ଯ୍ୟନ୍ତ ସଂକୋଚ ଲାଗେ ।** ଥରେ ହାତଗଣ୍ଠି ପଡ଼ିଗଲେ ସମସ୍ତଙ୍କ ସାମନାରେ ନିର୍ଭୟ ହୋଇ କହିଦେଉ ଯେ, ଇଏ ଆମର ଅମୁକ । ଏହିଭଳି ନାମ ନେଉ ନେଉ ନାମ ପ୍ରତି ଆସକ୍ତି ତ ବଢ଼େ, ଅନ୍ୟ ପକ୍ଷରେ ବିଷୟ ପ୍ରତି ଆସକ୍ତି ଧୀରେ ଧୀରେ କମେ । ଏହାପରେ ଉଚ୍ଚସ୍ୱରରେ ଭଗବାନଙ୍କର ନାମ ଗାନ କରିବା ଉଚିତ । ଉଚ୍ଚ ସ୍ୱରରେ ଗାନ କରିବା ଦ୍ୱାରା ଯେଉଁ ହୃଦୟ ପାଷାଣ ଭଳି କଠିନ

ହୋଇଯାଇଛି ତାହା ଧୀରେ ଧୀରେ ତରଳେ । ଅନେକ ଏପରି ଦେଖାଯାଆନ୍ତି, ସେମାନଙ୍କ ଆଖିକୁ ଲୁହ ଆସେ ନାହିଁ, ଭଗବାନଙ୍କର ସୁମଧୁର ନାମ ଶୁଣି ରୋମାଞ୍ଚିତ ହୁଅନ୍ତି ନାହିଁ- ସେପରି ଲୋକଙ୍କର ହୃଦୟ ପାଷାଣଠାରୁ ହେଲେ ଅଧିକ କଠିନ ବୋଲି ଜାଣିବାକୁ ହେବ । ହେଲେ ଅନବରତ ନାମ ଗାନ କରିବା ଦ୍ୱାରା ସେମାନଙ୍କର ହୃଦୟ ବି ତରଳିଯାଏ । ନାମ ଗାନ କରୁ କରୁ ହୃଦୟ ଯେତେବେଳେ ପୂର୍ଣ୍ଣ ଦ୍ରବିତ ହୋଇଯାଏ, ସେତେବେଳେ ସ୍ୱତଃ ନାଚ ଆସିଯାଏ ।''

ରାଜା ଜନକ କହିଲେ, ''ଆଜ୍ଞା ମହାରାଜ ! ସମସ୍ତଙ୍କ ସାମନାରେ ନାଚିଲେ ଲୋକେ କ'ଣ କହିବେ ? ବଡ଼ ଲଜ୍ୟା-ଜନକ କଥା ହେବନି ?''

ମହାମୁନି କବି ହସି ହସି କହିଲେ, ''ରାଜନ୍ ! ଏଥିରେ ଲଜ୍ୟା ହେବାର ପ୍ରସଙ୍ଗ କ'ଣ ଅଛି ? ଲୋକମାନେ ଯାହା କହିବେ କୁହନ୍ତୁ, ଆମେ ତ ସମସ୍ତଙ୍କର ଠିକା ନେଇନେ । ଲୋକମାନେ ସ୍ତ୍ରୀମାନଙ୍କ ପାଖରେ ମୁଣ୍ଡଗଡ଼ାନ୍ତି, ସାକୁଲେଇ ହୁଅନ୍ତି, ପାଦ ଧରନ୍ତି, ସେମାନେ ଯେପରି ନଚାନ୍ତି ସେପରି ନାଚନ୍ତି । ଏଥିରେ ତ ସେମାନଙ୍କୁ ଲଜ୍ୟା ଲାଗେନାହିଁ ! ଜଣେ କୋଟିପତି ବିଭାଘରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କଲା, ପୁଅର ସ୍ୱନକ୍ଷତ୍ର ଦିବସରେ ମନଇଚ୍ଛା ଧନ ଉଡ଼ାଇଲା- କିନ୍ତୁ ସେ ତା' ଦୋକାନରେ ବସିଥିବା ବେଳେ ବ୍ୟବସାୟୀଙ୍କ ସହିତ ପଇସାଟିଏ ପାଇଁ ବି କଳି କରିବାକୁ ସଂକୋଚ କରେନାହିଁ । ଏତେ ଧନୀ ଲୋକର ପଇସାଟିଏ ବି ଛାଡ଼ିବାକୁ ଲାଜ ମାଡ଼େନାହିଁ । ଗୋଟିଏ ରାଜ୍ୟର ଶାସନକର୍ତ୍ତା ସମସ୍ତଙ୍କୁ ଶାସନ କରେ, ହେଲେ ରାଷ୍ଟ୍ରପତି ଆସିଲେ ସେ ଯେମିତି ନଚାନ୍ତି ସେହିଭଳି ନାଚେ । ଲଜ୍ୟା ଛାଡ଼ି କୁକୁରଙ୍କ ପରି ତାଙ୍କ ପଛେ ପଛେ ଗୋଡ଼ାଏ । ଏଥିରେ ତ ତାକୁ ଲାଜ ମାଡ଼େ ନାହିଁ ।

ଜଣେ ବେଶ୍ୟା ଅଙ୍ଗସୌଷ୍ଠଭକୁ ସଜାଇ ଯାଉଥିବା ବେଳେ କୌଣସି ଜଣେ ଅପରିଚିତ ବ୍ୟକ୍ତି ତାକୁ ଛୁଇଁ ଦେଲେ ସେ ସତେ କେଡ଼େ କ୍ରୁଦ୍ଧ ନ ହୁଏ । ହେଲେ ସେ ସମସ୍ତଙ୍କ ସମ୍ମୁଖରେ ପାହୁଁଜି ପିନ୍ଧି ନାଚେ, ନାଚିବାରେ ତାକୁ ଲାଜ ଲାଗେ ନାହିଁ ।

ଜଣେ ରଜା ସବୁବେଳେ ଖୁବ୍ ଗମ୍ଭୀର ହୋଇ ରହେ । ସମସ୍ତଙ୍କୁ ଭୟଭୀତ କରେ । ସେ ଯେତେବେଳେ ତା' ପୁଅ ସହିତ ଖେଳେ ସେତେବେଳେ ପୁଅ ମୁହଁରେ ମୁହଁ ଯୋଡ଼ିଦିଏ । ତା' ପାଇଁ ଘୋଡ଼ା ହୁଏ । ଟପ ଟପ ଟାକରା ଫୁଟାଇ ଘୋଡ଼ା ଦୌଡିବା ଭଳି ପୁଅକୁ ପିଠିରେ ବସାଇ ଦଉଡ଼େ । ସେତେବେଳେ ତାକୁ ଲାଜ ଲାଗେ ନାହିଁ ତ !

ଜଣେ ସୈନିକ, ଖୁବ୍ ସାହସୀ, ଖୁବ୍ ଶୂରବୀର, କିନ୍ତୁ ସେନାରେ ଯେତେବେଳେ ସୈନିକ ପ୍ରଦର୍ଶନ କରେ ସେତେବେଳେ ତା' ଉପର ଅଧିକାରୀ ତାକୁ କେମିତି ନଚାଏ ?

ବସ, ଉଠ, ଡାହାଣକୁ,ବାମକୁ, ଆଗକୁ ଚାଲ, ପଛକୁ ଚାଲ, ଧାଡିରେ ରୁହ, ଧାଡିରୁ ବାହାର, ପଛକୁ ବୁଲ, ପୁଣି ଆଗକୁ ବୁଲ - ବଡ ଅଧିକାରୀ ଏହିପରି ନଚାଏ । ତାକୁ ତ ଲାଜ ଲାଗେ ନାହିଁ ।''

ରାଜା କହିଲେ, ''ଭଗବନ୍ ! ଏ ସବୁ କାମରେ ଲାଜ କଲେ ଜୀବିକା କିଭଳି ଚଳିବ ? ଏହା ତ କରିବାକୁ ପଡ଼େ ।''

ଯୋଗେଶ୍ୱର କବି କହିଲେ, ''ଠିକ୍ ଏହିଭଳି ଭକ୍ତ ଭଗବାନଙ୍କ ପାଖରେ ନାଚିବାକୁ ବିବଶ ହୋଇଥାଏ । ତାଙ୍କ ସମ୍ମୁଖରେ ଭକ୍ତକୁ ସବୁ କରିବାକୁ ପଡ଼େ । ସେ ଲୋକଲଜ୍ଜାକୁ ଦେଖେନାହିଁ । ସମସ୍ତଙ୍କର ସଙ୍ଗତ୍ୟାଗକରି ଅସଙ୍ଗ ଭାବରେ ସଂସାରରେ ବିଚରଣ କରୁଥାଏ ।''

ବିଦେହ ରାଜା ପଚାରିଲେ, **''ଭଗବନ୍ ! ଯିଏ ଅସଙ୍ଗ ହୋଇଗଲା, ପ୍ରଭୁଙ୍କ ପ୍ରତି ଯାହାର ଦୃଢ଼ ଅନୁରାଗ ହୋଇଗଲା, ସେପରି ଲୋକର ପ୍ରକୃତି କିପରି ହୋଇଥାଏ, ଚେଷ୍ଟା କିପରି ହୋଇଥାଏ ?''**

ମହାମୁନି କବି କହିଲେ, ''ରାଜନ୍ ! ଭଗବାନଙ୍କ ପ୍ରତି ଦୃଢ଼ ଅନୁରାଗ ଯାହାର ହୋଇଯାଇଥାଏ, ବିଷୟ ପ୍ରତି ଯାହାର ଅନୁରାଗ ହ୍ରାସ ହୋଇଯାଇଥାଏ ସେପରି ଲୋକ ଏକାକୀ ଅସଙ୍ଗ ଭାବରେ ବିଚରଣ କରୁଥାଏ । ଶ୍ୟାମସୁନ୍ଦରଙ୍କର ସୁଖଦ ସ୍ମୃତି ତା' ହୃଦୟରେ ଅବିଚ୍ଛିନ୍ନ ଭାବରେ ଥାଏ । ତା' ହୃଦୟ ନବନୀତ ଭଳି ଦ୍ରବିତ ହୋଇ, ତରଳ ହୋଇ ରହିଥାଏ । ଦୁଧପୂର୍ଣ୍ଣ ପାତ୍ରକୁ ସାମାନ୍ୟ ମାତ୍ର ଆଘାତ ଦେବାକ୍ଷଣି ଦୁଧ ତହିଁରୁ ଚହଲି ପଡ଼ିବା ଭଳି ତା' ହୃଦୟ ଚହଲୁ ଥାଏ । ହୃଦୟ ଥଳ ଥଳ, ଅତି କୋମଳ ହୋଇଯାଏ । ସଂସାରର ଲୋକମାନେ ଆମର ଆଚରଣ ଦେଖି କ'ଣ କହିବେ, ଏ କଥା ତା' ଚିନ୍ତା ଭିତରକୁ ଆଦୌ ପଶେ ନାହିଁ । କେତେବେଳେ ଭଗବାନଙ୍କର ସଙ୍ଗମ ସୁଖାନୁଭୂତିରେ ଆନନ୍ଦମଗ୍ନ ହୋଇ ହସୁଥାଏ, ପୁଣି କେତେବେଳେ ଶ୍ୟାମସୁନ୍ଦରଙ୍କର ସ୍ମୃତିରେ ତାଙ୍କ ବିରହ ଅନୁଭବ କରି ଧକେଇ ଧକେଇ କାନ୍ଦିବାରେ ଲାଗେ । କେତେବେଳେ ଚିତ୍କାର କରି ଉଠେ, 'ହା ପ୍ରାଣନାଥ ! ତୁମେ କେଉଁଆଡେ ଗଲ । ହେ କରୁଣାକର ! କୃପାକର । ହେ ନାଥ ପ୍ରାଣନାଥ, ତୁମ ଦର୍ଶନ ବିନା ମୁଁ କିପରି ବ୍ୟର୍ଥରେ ଏହି ଜୀବନ କଟାଇବି ? ଦର୍ଶନ ଦିଅ ହେ ପ୍ରଭୁ ! ହେ କୃଷ୍ଣ ! ହେ କୃପାଳୁ ! ହେ ଅଶରଣ ଶରଣ, ହେ ରମାନାଥ ! ହେ ବ୍ରଜବଲ୍ଲଭ ! ଏହିପରି ଭଗବାନଙ୍କୁ ଚିତ୍କାର କରି ଡାକ ପକାଏ । ପୁଣି କେତେବେଳେ ଗାଇ ଉଠେ, 'ହେ ଗୋବର୍ଦ୍ଧନ ଗିରିଧାରୀ, ତୁମ ବିନା ମୋ କଥା କିଏ ବୁଝିବ ହେ !' କେତେବେଳେ ଗୋଟିଏ ମାତ୍ର ପଦକୁ ବାରମ୍ବାର ଗାନ

କରୁଥାଏ, ପୁଣି କେତେବେଳେ ହାବ ଭାବ ପ୍ରଦର୍ଶନ କରି କରି ନାଚେ । ସାଧାରଣ ଭାବରେ କହିଲେ ତା'ର ପ୍ରକୃତି ଉନ୍ମତ୍ତ ସଦୃଶ ହୋଇଯାଏ । ତାଙ୍କ ଦୃଷ୍ଟିରେ ସଂସାର ରହି ନଥାଏ । ସେ ଓ ତାଙ୍କର ପ୍ରାଣନାଥ । ଯେପରି କଲେ ତାଙ୍କ ପ୍ରାଣନାଥଙ୍କ ମନ ବୁଝିବ ବୋଲି ସେ ଭାବେ ସେହିଭଳି ଚେଷ୍ଟା, କର୍ମ କରିବାରେ ଲାଗେ ।''

ଏପରି କଥା ଶୁଣି ବିଦେହ ରାଜ ଆଶ୍ଚର୍ଯ୍ୟ ଭାବ ପ୍ରକାଶ କରି କହିଲେ, ''ଭଗବନ୍ ! ଏହା ତ ଅତି ଉଚ୍ଚ ସ୍ଥିତିର କଥା ଆପଣ କହୁଛନ୍ତି । ଏପରି ସ୍ଥିତି ଆସେ କିପରି ? କି' ପ୍ରକାର ସାଧନ ଅବଲମ୍ବନ କଲେ ଏପରି ସ୍ଥିତି ଆସିଥାଏ ?''

ମହାମୁନି କବି କହିଲେ, ''ରାଜନ୍ ! ଯାହାଙ୍କ ଉପରେ ଶ୍ରୀହରି କୃପାକରନ୍ତି, ସେହିମାନଙ୍କୁ ଏପରି ସ୍ଥିତି ପ୍ରାପ୍ତ ହୋଇଥାଏ । ଏହା କୃପା-ସାଧ୍ୟ । ତେବେ ବି ଜଗତକୁ ହରିରୂପରେ ସବୁବେଳେ ଦେଖୁଥିଲେ ଏପରି ସ୍ଥିତ ପ୍ରାପ୍ତ ହୋଇପାରେ ।''

ରାଜା କହିଲେ, ''ଭଗବନ୍ ! ଜଗତକୁ ହରିରୂପରେ କିପରି ଦେଖିହୁଏ ? ଜଗତରେ ଅନେକ ଜିନିଷ ଅଛି, ଅନେକ ପ୍ରକାର ପ୍ରକୃତିର ପ୍ରାଣୀ ଅଛନ୍ତି; ସେମାନଙ୍କ ଭିତରୁ କିଏ ଆମ ଉପରେ କ୍ରୋଧ ତ ଆଉ କିଏ ଦ୍ୱେଷ କରନ୍ତି । ସେମାନଙ୍କୁ ଆମେ ହରି ବୋଲି ମାନିବା କିଭଳି ?''

ମହାମୁନି କବି କହିଲେ, ''ଅନେକଙ୍କ ମଧ୍ୟରେ ସମତା ରଖିବା, ସମ ଭାବରେ ଦର୍ଶନ କରିବା ତ ହେଉଛି ସାଧନ । ସର୍ବପ୍ରଥମେ 'ସମସ୍ତେ ଆମର ପୂଜନୀୟ' ଏପରି ଏକ ଧାରଣା ମନରେ ସୃଷ୍ଟିକରି ଦୃଢୀଭୂତ କର । ଏପରି ଧାରଣା ବୁଦ୍ଧିରେ ଦୃଢୀଭୂତ ହୋଇଗଲେ ଅନ୍ୟଙ୍କ ପ୍ରତି ରାଗ ବା ଦ୍ୱେଷ ଉତ୍ପନ୍ନ ହେବନାହିଁ ।''

ମହାରାଜା ବିଦେହ ପଚାରିଲେ, ''ଏହି ପୂଜ୍ୟ-ବୁଦ୍ଧି କିପରି ସାଧନା ଦ୍ୱାରା କରିହୁଏ ଭଗବନ୍ ?''

ମହାଯୋଗେଶ୍ୱର କବି କହିଲେ, ''ରାଜନ୍ ! ଦେଖ- ତୁମେ ପ୍ରଥମେ ଯାହାଙ୍କୁ ଦେଖ ତାଙ୍କୁ ଈଶ୍ୱର ବୋଲି ଭାବନା କରି ପ୍ରଣାମ କର । ଈଶ୍ୱର ତ ଅଣୁ ଅଣୁରେ ଅଛନ୍ତି । ଉପରର ରୂପକୁ ନଦେଖି ତା' ଭିତରେ ଅନ୍ତରାତ୍ମା ଅଛନ୍ତି ବୋଲି ଜାଣି, ତାଙ୍କୁ ଦେଖୁଛ- ଏପରି ଭାବନାର ସହିତ ପ୍ରଣାମ କର । ପୃଥିବୀକୁ ଦେଖ- ଇଏ ବି ଭଗବାନ ବୋଲି ମନରେ ଭାବନା କର, ଏବଂ ପ୍ରଣାମ କର । ଜଳକୁ ଦେଖ, ତାକୁ ବି ପ୍ରଣାମ କର । ବାପୀ, କୂପ, ତଡ଼ାଗ, ନଦ, ନଦୀ, ସରୋବର, ସମୁଦ୍ର ଏ ସମସ୍ତ ଭଗବାନଙ୍କର ରୂପ ବୋଲି ଜାଣି ପ୍ରଣାମ କର । ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର ତଥା ସମସ୍ତ ପ୍ରକାଶମୟ ବସ୍ତୁକୁ ଦେଖି ପ୍ରଣାମ କର । ବାୟୁକୁ ପ୍ରଣାମ କର, ଆକାଶକୁ ପ୍ରଣାମ କର, ବନ, ପର୍ବତ, ବୃକ୍ଷ, ଗ୍ରହ, ନକ୍ଷତ୍ର, ତାରା ମଣ୍ଡଳ, ପିଣ୍ଡଜ, ଦେହଜ ଆଉ ଉଦ୍ଭିଦଜ- ଯାହା ଆଖିକୁ ଦେଖାଯାଏ

ସମସ୍ତଙ୍କୁ ମନେ ମନେ ପ୍ରଣାମ କର । ସମସ୍ତଙ୍କୁ ଆଦର ବୁଦ୍ଧିରେ ଦେଖ । ଏପରି କରୁ କରୁ ସମସ୍ତଙ୍କଠାରେ ସ୍ୱତଃ ଆଦରବୁଦ୍ଧି ବର୍ଦ୍ଧନ ହୁଏ । ଏପରି ସାଧନ କରୁ କରୁ ଏପରି ଭାବନା ଦୃଢ଼ୀଭୂତ ହୋଇଯିବ ଯେ ଏହି ଚରାଚର ଜୀବ ଶ୍ରୀହରିଙ୍କ ଶରୀର । ଏହିଭଳି ସବୁଥିରେ ସେ (ଶ୍ରୀହରି) ଥିବା ଜାଣି ଅନନ୍ୟ ଭାବରେ ଏକଦ୍ୱର ଉପାସନା କର ।''

ମହାରାଜ ଜନକ ପଚାରିଲେ, ''ଭଗବନ୍ ! ଆପଣ ସେତେବେଳୁ ତିନୋଟି କଥା କହିଛନ୍ତି । ପ୍ରଥମତଃ, ଆପଣ କହିଛନ୍ତି, ସଂସାର ବିଷୟରୁ ମୁହଁ ମୋଡ଼ିଦେବା ପାଇଁ; ଅର୍ଥାତ୍ ବୈରାଗ୍ୟ ଧାରଣ କରିବା ପାଇଁ । ଦ୍ୱିତୀୟ କଥା କହିଛନ୍ତି ଯେ ଭଗବାନଙ୍କର ସ୍ୱରୂପକୁ ସମସ୍ତଙ୍କଠାରେ ଅନୁଭବ କରିବା ଉଚିତ, ଯେ ସେ ସମସ୍ତଙ୍କଠାରେ ରମଣ କରୁଛନ୍ତି । ତୃତୀୟରେ ଭଗବାନଙ୍କଠାରେ ପ୍ରଗାଢ଼ ପ୍ରେମଭାବ ସ୍ଥାପିତ କରିବା ପାଇଁ କହିଛନ୍ତି । ଏହି ତିନୋଟି ମଧ୍ୟରୁ ପ୍ରଥମେ କେଉଁ ସାଧନ କରିବା ଉଚିତ ?''

ମହାରାଜ ଜନକଙ୍କଠାରୁ ଏପରି ପ୍ରଶ୍ନ ଶୁଣି ମହାମୁନି କବି ହସିପକାଇଲେ । ସେ ସହାସ୍ୟ ବଦନରେ କହିଲେ, ''ରାଜନ୍ ! ଭଗବାନଙ୍କର ଭଜନ କରୁଥିଲେ, ଅନବରତ ତାଙ୍କ ନାମ କୀର୍ତ୍ତନ କରୁଥିଲେ ତଥା ତାଙ୍କ ଗୁଣାବଳୀ ଶ୍ରବଣ କରୁଥିଲେ ଆପଣ ପଚାରିଥିବା ତିନୋଟିଯାକ କଥା ଆପଣାଛାଏଁ ପ୍ରାପ୍ତ ହୋଇଯାଏ । ଯେପରି କେହି ଭୋକିଲା ଥିଲାବେଳେ ତା' ଆଗରେ କ୍ଷୀର, ମହନଭୋଗ ତଥା ମାଲପୁଆ ରଖିଦେଲେ ସେ ମାଲପୁଆରୁ ଖଣ୍ଡେ ଛିଣ୍ଡାଇ କ୍ଷୀରରେ ବୁଡ଼ାଇ ମୁହଁରେ ପୂରାଇ ଚୋବାଇବାରେ ଲାଗେ । ଏହା ପରେ ପୁଣି ଦ୍ୱିତୀୟ ଗ୍ରାସ ନିଏ । ଏହି ସମୟରେ ସେ ଗୋଟିଏ ମାତ୍ର କାମକରେ ଅର୍ଥାତ୍ କେବଳ ଭୋଜନ କରୁଥାଏ, କିନ୍ତୁ ପ୍ରତ୍ୟେକ ଗ୍ରାସରେ ତିନୋଟି କାମ ସଂପାଦିତ ହେଉଥାଏ । ପ୍ରଥମତଃ ସେ ଯେତିକି ଯେତିକି ଭୋଜନ କରୁଥାଏ ସେତିକି ସେତିକି ଅଧିକ ଅଧିକ ତୃପ୍ତି ଅନୁଭବ କରୁଥାଏ । ଏହି ତୃପ୍ତି ସହିତ ବଳ ବି ବଢୁଥାଏ, ଶିଥିଳ ଇନ୍ଦ୍ରିୟ ଚୈତନ୍ୟ ପ୍ରାପ୍ତ ହେଉଥାଏ, ପ୍ରାଣ-ପୋଷଣ ହେଉଥାଏ, ଅର୍ଥାତ୍ ତୁଷ୍ଟି ସହିତ ପୁଷ୍ଟି ବି ହେଉଥାଏ, ଓ ପ୍ରତି ଗ୍ରାସରେ କ୍ଷୁଧା ବି ନିବୃତ୍ତ ହେଉଥାଏ । ଅର୍ଥାତ୍, ତିନୋଟି କାମ ଏକା ସହିତ ସାଧିତ ହେଉଥାଏ । ଠିକ୍ ଏହିଭଳି, ଭଗବାନଙ୍କୁ ଭଜନ କରିବା ଫଳରେ ସାଧକର ପ୍ରଭୁପ୍ରେମ ବଢୁଥାଏ, ବିଷୟ ପ୍ରତି ବୈରାଗ୍ୟ ହେଉଥାଏ, ଏବଂ ସର୍ବେଶ୍ୱରଙ୍କ ସ୍ୱରୂପ ଅନୁଭୂତ ହେବାରେ ଲାଗିଥାଏ- ଆଉ ଏଇ ତିନୋଟି କଥା ଏକାବେଳକେ ସାଧିତ ହେଉଥାଏ । ଏଥିପାଇଁ ପୃଥକ୍ ପୃଥକ୍ ସାଧନାର ଆବଶ୍ୟକତା ପଡ଼େ ନାହିଁ ।''

ମହାରାଜ ବିଦେହ କହିଲେ, ''ହେ ଭଗବନ୍ ! ଏହି ପ୍ରସଙ୍ଗକୁ ଆଉ ଟିକିଏ ଭଲ ଭାବରେ ବୁଝାନ୍ତୁ ।''

ମହାମୁନି କବି କହିଲେ, ''ଆଚ୍ଛା, ଦେଖ । ଜଣେ ମଣିଷ ଅଛି । ସେ ସବୁବେଳେ ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ ! ହେ ନାଥ ନାରାୟଣ ବାସୁଦେବ; ଅଥବା ଅନ୍ୟ କେଉଁ ଭଗବାନ୍‌ଙ୍କର ନାମ ଉଚ୍ଚାରଣ କରିବାରେ ଲାଗିଛି । ତାଙ୍କରି କଥା ସବୁବେଳେ ଶୁଣୁଛି, ଏଣୁ ତେଣୁ ସାଂସାରିକ ବିଷୟରେ ନିନ୍ଦା-ସ୍ତୁତି ଆଦି ଶୁଣିବା ପାଇଁ ତା'ର ସମୟ ନଥାଏ । ଏପରି ଲୋକର ତ ସଂସାରୀ ବିଷୟ ପ୍ରତି ବୈରାଗ୍ୟ ସ୍ୱତଃ ଜାତ ହେବ । ଗୋଟିଏ ଅନ୍ଧାର ଘରେ ଆମେ ଗୋଟିଏ ଦୀପ ଜାଳି ଦେବା । ଦୀପଟି ରଖିଦେବା କ୍ଷଣି ଅନ୍ଧକାର ଦୂରହୋଇଗଲା । ଠେଙ୍ଗା ଧରି ଅନ୍ଧକାରକୁ ବାଡ଼େଇ ବାହାର କରିବାକୁ ପଡ଼ିଲା ନାହିଁ । ଠିକ୍ ସେହିଭଳି ଯେ ପର୍ଯ୍ୟନ୍ତ ଆମେ ସାଂସାରିକ ବିଷୟ ପ୍ରତି ଆକୃଷ୍ଟ ହୋଇ ରହିଥିବା, ସେ ପର୍ଯ୍ୟନ୍ତ ଆମେ ସଂସାର ସମ୍ବନ୍ଧରେ କଥାବାର୍ତ୍ତା ହେଉଥିବା, ସଂସାର ବିଷୟ ସଂଗ୍ରହ ନିମନ୍ତେ ଉଦ୍ୟମ କରୁଥିବା, ପ୍ରତ୍ୟେକ ସମୟରେ ସଂସାର ହିଁ ଆମ ହୃଦୟରେ ବସି ରହିଥିବ । **ଯେତେବେଳେ ଭଗବାନଙ୍କର ନାମ, ତାଙ୍କ ଚରିତ୍ର ଚିତ୍ତରେ ପ୍ରବେଶ କରିଯିବ, ସେତେବେଳେ ସଂସାର ସ୍ୱତଃ ଅପସୃତ ହୋଇଯିବ । ଏହିଭଳି କଥା-କୀର୍ତ୍ତନ-ପ୍ରେମୀଙ୍କୁ ସଂସାରର କଥା ବିଷଭଳି ଲାଗିଥାଏ ।** କଥାକୀର୍ତ୍ତନ ପ୍ରତି ପ୍ରେମ ହୋଇଯିବା କ୍ଷଣି ବୈରାଗ୍ୟ ସ୍ୱତଃ ଆସିଯାଏ । ଯାହା ଦେଖା ଯାଉଛି, ଦେଖି ହେଉଛି, ଭାବନାକୁ ଆସୁଛି ସେ ସମସ୍ତ ଯେତେବେଳେ ମୋର ଇଷ୍ଟ ରୂପ, ସେପରି କ୍ଷେତ୍ରରେ ବିରୋଧ ପୁଣି କାହା ସହିତ କରିଯିବ । କାହାକୁ ଛାଡ଼ିବା ଆଉ କାହାକୁ ଗ୍ରହଣ କରିବା । ସବୁ ଯେତେବେଳେ ଇଷ୍ଟଙ୍କ ରୂପ, ତେବେ ସମସ୍ତଙ୍କୁ ପ୍ରେମ କରିବା ଉଚିତ, ସମସ୍ତଙ୍କୁ ଆଦର କରିବା ଉଚିତ, ସମସ୍ତଙ୍କୁ ନିଜର କରିବା ଉଚିତ, ସମସ୍ତଙ୍କୁ ହୃଦୟରେ ଆଲିଙ୍ଗନ କରିବା ଉଚିତ ।

''ଏହିଭଳି ହେ ରାଜନ୍ ! **ଯିଏ କେବଳ ଭଗବାନଙ୍କ ଭଜନରେ ସଂଲଗ୍ନ ରହିଥାଏ, ପ୍ରଭୁଙ୍କ ପାଦପଦ୍ମକୁ ଯିଏ ଅନବରତ ଚିନ୍ତା କରୁଥାଏ, ଏହିଭଳି ଭାବୁକ ଭକ୍ତକୁ ଭଗବଦ୍ ପ୍ରେମ, ବିଷୟରୁ ବୈରାଗ୍ୟ ଆଉ ଭଗବଦ୍ ପ୍ରବୋଧ ଏହି ତିନୋଟି କଥା ଅନାୟାସରେ ଅବଶ୍ୟ ପ୍ରାପ୍ତ ହୋଇଥାଏ ।** ଏହି ତିନୋଟି କଥା ପ୍ରାପ୍ତ ହୋଇଗଲେ, ଆଉ ଅଧିକ କିଛି ପାଇବାକୁ ନଥାଏ । ପ୍ରଭୁଙ୍କ ପ୍ରତି ପ୍ରେମ ତ ହେଉଛି ଜୀବନର ଲକ୍ଷ୍ୟ । ଏହାହିଁ ହେଉଛି ଶାଶ୍ୱତ ଶାନ୍ତିର ମୁଖ୍ୟକାରଣ । ଶାନ୍ତି ପାଇଁ ହିଁ ଜୀବ ଏଣେ ତେଣେ ଦୌଡୁଥାଏ । ଏହି ଶାନ୍ତି ବିଷୟ ଚିନ୍ତନରେ ନୁହେଁ, ଭଗବାନଙ୍କ ଚିନ୍ତନରେ, ତାଙ୍କ ନାମ କୀର୍ତ୍ତନ କରିବାରେ, ତାଙ୍କ ଗୁଣ ଶ୍ରବଣ କରିବାରେ ଆମକୁ ପ୍ରାପ୍ତ ହୋଇଥାଏ ।''

ଏପରି କଥା ଶୁଣି ବିଦେହରାଜ ଜନକ ଅତି ପ୍ରସନ୍ନ ହୋଇଗଲେ । ସେ ତାଙ୍କର

ପ୍ରସନ୍ନତା ପ୍ରକାଶ କରିବାକୁ ଯାଇ କହିଲେ, ''ପ୍ରଭୁ ! ଆପଣଙ୍କ କଥା ଯେତେ ଶୁଣିଲେ ବି ମୋର ତୃପ୍ତି ହେଉନାହିଁ । ସବୁ ସମୟରେ ଅନବରତ ଏହି କଥା ଶୁଣିବା ପାଇଁ ମନ ହେଉଛି । ଭଗବନ୍ ! ଆପଣ ଭଗବତ୍ ଭକ୍ତଙ୍କର ମହିମା ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । ଏବେ ମୁଁ ସେହି ଭାଗବତମାନଙ୍କ ସମ୍ବନ୍ଧରେ ଅଧିକ କିଛି ବିଶେଷ ରୂପରେ ଶୁଣିବା ପାଇଁ ଚାହୁଁଛି । କାରଣ ଭଗବାନଙ୍କୁ ଦେଖିବା ଅତି କଷ୍ଟକର, ଆଉ ଭକ୍ତମାନେ ତ ପ୍ରତ୍ୟେକ୍ଷରେ ଦେଖାଯାଆନ୍ତି । କୃପାକରି ଆମକୁ ଭଗବଦ୍ ଭକ୍ତଙ୍କ ଧର୍ମ ସମ୍ବନ୍ଧରେ କୁହନ୍ତୁ । ଭକ୍ତର ସ୍ୱଭାବ କିପରି ହୋଇଥାଏ ? ଭଗବଦ୍ ଭକ୍ତଙ୍କର ତ ଦୁଇଟି ହାତ, ଦୁଇଟି ଗୋଡ଼, ଦୁଇଟି ଆଖି ଆଦି ଥାଏ । ସେମାନେ ବି ମଣିଷଙ୍କ ଭଳି ହୋଇଥା'ନ୍ତି । ଜଣେ ଭଗବତ୍- ଭକ୍ତକୁ ଆମେ ଜାଣିବା କିପରି ? ସେମାନଙ୍କର ଆଚରଣ କିପରି ହୋଇଥାଏ ? କେଉଁ କେଉଁ କାର୍ଯ୍ୟ କରିବା ଦ୍ୱାରା ଏମାନେ ଭଗବାନଙ୍କର ଏଡ଼େ ପ୍ରିୟ ହୋଇପାରିଛନ୍ତି । ମୋ ଉପରେ ଅନୁଗ୍ରହ କରି ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଯେତେବେଳେ ଯୋଗେଶ୍ୱର କବିଙ୍କୁ ମହାରାଜ ଜନକ ଏପରି ପ୍ରଶ୍ନ ପଚାରିଲେ, ସେ ତାଙ୍କର ସାନଭାଇ ହରିଙ୍କ ଆଡ଼କୁ ଚାହିଁ ଇଙ୍ଗିତ ଦେଲେ । ନ' ଭାଇ ବସିଛନ୍ତି । ରାଜାଙ୍କୁ ସମସ୍ତେ କିଛି କିଛି ଉତ୍ତର ଦେବା ଆବଶ୍ୟକ । ଏଣୁ ମହାମୁନି କବି କହିଲେ, ''ରାଜନ୍ ! ତୁମର ଏହି ପ୍ରଶ୍ନର ଉତ୍ତର ମୋର ସାନଭାଇ ହରି ଦେବ ।''

ଏହା ଶୁଣି ରାଜା ଆନନ୍ଦରେ ଶ୍ରଦ୍ଧାପୂର୍ବକ ହରିଙ୍କ ଆଡ଼କୁ ଚାହିଁବାରେ ଲାଗିଲେ । ଏବେ ମହାମୁନି ହରି ଯେଉଁ ଭଳି ଉତ୍ତର ଦେଲେ ତାହା ବର୍ଣ୍ଣନା କରୁଛି ।''

## ଛପ୍ପୟ

*ପୁନି ନୃପ କହେଂ ବିଦେହ- ''ଭାଗବତ କୈସେ ଜାନେଂ ।*
*ହୈଂ ଯେ ଭଗବଦ୍‌ଭକ୍ତ କୌନ ବିଧି ତୈଂ ପହିଚାନେ ॥*
*ସବ ଇ ଦେହିଁ ବତାଇ ଭାଗବତ ଲକ୍ଷନ ଭଗବନ୍ ।*
*ଭକ୍ତ ଆଚରନ, ଚଲନ, ମିଲନ, ବୋଲନ ଅରୁ ଚିତବନ ॥*
*ମୁନି କବି ଭୂପତି ପ୍ରଶ୍ନ ସୁନି, ନିରଖେ୍ୟ ମୁନିବର ହରି ଜବହିଁ ।*
*ସମୁଝି ବନ୍ଧୁ ସଂକେତ ହରି, ଲଗେ ଦୈନ ଉତ୍ତର ତବହିଁ ॥*



# ଭଗବଦ୍ ଭକ୍ତଙ୍କ ଲକ୍ଷଣ

ଦେହେନ୍ଦ୍ରିୟପ୍ରାଣମନୋଧିୟାଂ ଯୋ
ଜନ୍ମାପ୍ୟୟକ୍ଷୁଦ୍‌ଭୟତର୍ଷକୃଚ୍ଛ୍ରୈଃ ।
ସଂସାରଧର୍ମୈରବିମୁହ୍ୟମାନଃ
ସ୍ମୃତ୍ୟା ହରେର୍ଭାଗବତପ୍ରଧାନଃ ।।☆
(ଶ୍ରୀ ଭା. ୧୧ଶ ସ୍କ. ୨ୟ ଅ. ୪୯ ଶ୍ଲୋକ)

**ଛପ୍ପୟ**

*ହରି ବୋଲେ- ''ନୃପ ! ଶ୍ରେଷ୍ଠ ଭକ୍ତ ହରି ସବହିଁ ନିହାରେଂ ।*
*ଅପନେ ମହିଁ ଲଖି ସବନି ନ କବହୂଁ ଅସତ୍ ଉଚାରେଂ ।।*
*ଯେ ତୋ ଉତ୍ତମ ଭକ୍ତ ମଧ୍ୟ କଛୁ ଭେଦ ଜନାବେଂ ।*
*ଖଲନି ଉପେକ୍ଷା, ନେହ ଭକ୍ତ, ହରି ପ୍ରେମ ଦୃଢ଼ାବେଂ ।।*
*ଅଧମ ନ ପୂଜହିଁ ଭକ୍ତକୁଁ, ପ୍ରଭୁହିଁ ନ ନିରଖେଂ ସବନି ମହିଁ ।*
*ପ୍ରତିମା ପୂଜନ କରହିଁ ନିତ, ଲହୈଂ ସିଦ୍ଧି କଛୁ ଦିନନି ମହିଁ ।।*

ଏକ ଜ୍ଞାନକୁ ଭିନ୍ନ ଭିନ୍ନ ପ୍ରକୃତି ସମ୍ପନ୍ନ ତିନି ପୁରୁଷ ଭିନ୍ନ ଭିନ୍ନ ରୂପରେ ଧାରଣ କରନ୍ତି । ଏକମାତ୍ର ଭୋଜ୍ୟ ପଦାର୍ଥକୁ ତିନି ପ୍ରକୃତିର ଲୋକ ତିନି ପ୍ରକାର ତିଆରି କରି ଖାଆନ୍ତି । ଏକ ପ୍ରକାର ଧନକୁ ତିନି ପ୍ରକାରର ଲୋକ ତିନି ପ୍ରକାର ଉପଯୋଗ କରନ୍ତି । ଏକ ପ୍ରକାର ଶକ୍ତିକୁ ତିନି ସ୍ୱଭାବର ଲୋକ ତିନି ପ୍ରକାର କାମରେ ପ୍ରୟୋଗ କରନ୍ତି । ସାରାଂଶ ଏହା ଯେ ପାତ୍ର ଭେଦରେ ବସ୍ତୁରେ ବି ବିଭେଦତା ଦେଖାଯାଏ, ପ୍ରତୀତ ହୁଏ । ଶ୍ରୀ ଭଗବାନ **ମାୟିକ ଗୁଣରହିତ ସର୍ବାନ୍ତର୍ଯାମୀ ସର୍ବଗତ** । ତଥାପି ତ୍ରିଗୁଣମୟୀ ପୁରୁଷ ତାହାଙ୍କୁ ତିନି ପ୍ରକାରରେ ଗ୍ରହଣ କରିଥାଆନ୍ତି । ଯଥା ଉତ୍ତମ, ମଧ୍ୟମ ଓ ଅଧମ । ତିନି

☆ ଦେହର ଜନ୍ମ ମୃତ୍ୟୁ ଦୁଇ । ସଂସାର ଧର୍ମ ଏ ବୋଲାଇ ।।
ଇନ୍ଦ୍ରିୟମାନଙ୍କର ଶ୍ରମ । ପ୍ରାଣର କ୍ଷୁଧା ତୃଷା ଧର୍ମ ।।
ମନର ଭୟ ବୁଦ୍ଧି ଧର୍ମ । ତୃଷ୍ଣା ଏଣେ ଯେ ନୋହି ଭ୍ରମ ।।
ହରିଙ୍କୁ ସ୍ମରଣ କରଇ । ଉତ୍ତମ ଭାଗବତ ସେହି ।।
(ଭାଗବତ : ଜଗନ୍ନାଥ ଦାସ : ୧୧ମ ସ୍କ. ୩ୟ ଅ.)

ପ୍ରକାରର ଅଧିକାରୀ ହୋଇଥିବାରୁ ଭଗବାନଙ୍କର ଉପାସନାର ବି ତିନି ପ୍ରକାରତା (ଭେଦ) ଆଉ ଏହି ତିନି ପ୍ରକାରତାର ତିନି ତିନି ଓ ଏହି ତିନି-ଗୁଡ଼ିକର ବି ଅନେକ ପ୍ରକାରତା ହୋଇଯାଏ । **ଯେଉଁମାନେ ଭଗବାନଙ୍କର ଆଶ୍ରୟ ଗ୍ରହଣ କରିସାରିଛନ୍ତି ସେମାନେ ଉତ୍ତମ ଅଧିକାରୀ, ମଧ୍ୟମ ଅଧିକାରୀ ଅଥବା ଅଧମ ହୋଇଥାନ୍ତୁ, ବିଳମ୍ବରେ ହେଉ ଅଥବା ଶୀଘ୍ର, ସମସ୍ତେ ପରମପଦ ପ୍ରାପ୍ତ ହୋଇଥା'ନ୍ତି । ସମସ୍ତଙ୍କୁ ତାଙ୍କ ଚରଣାରବିନ୍ଦରେ ଶରଣ ମିଳିଥାଏ ।**

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ବିଦେହ ଯେତେବେଳେ ଭଗବଦ୍ ଭକ୍ତଙ୍କ ପ୍ରସଙ୍ଗରେ ପ୍ରଶ୍ନ କଲେ ସେତେବେଳେ ନବଯୋଗେଶ୍ୱରଙ୍କ ମଧ୍ୟରେ କବିଙ୍କଠାରୁ ସାନ ହରି ନାମକ ଦ୍ୱିତୀୟ ଯୋଗେଶ୍ୱର ଥିଲେ, ସେ କହିଲେ, 'ରାଜନ୍ ! ଭଗବଦ୍ ଭକ୍ତ ତିନି ଶ୍ରେଣୀର ହୋଇଥା'ନ୍ତି ।ଉତ୍ତମ, ମଧ୍ୟମ ଆଉ ଅଧମ । ଆପଣ ଏହି ତିନି ପ୍ରକାରଙ୍କ ଭିତରୁ କାହା ସଂକ୍ରାନ୍ତରେ ଜାଣିବାକୁ ଚାହୁଁଛନ୍ତି ।''

ରାଜା କହିଲେ, ''ଭଗବନ୍ ! ମୋତେ ସମସ୍ତ ପ୍ରକାରର ଭକ୍ତଙ୍କ କଥା କୁହନ୍ତୁ । ହେଲେ ଉତ୍ତମ ଭକ୍ତଙ୍କ ବିଷୟରେ ବିଶେଷ ଭାବରେ କୁହନ୍ତୁ ।''

ଏପରି କଥା ଶୁଣି ହରି କହିଲେ, ''ରାଜନ୍ ! ଉତ୍ତମ ଭକ୍ତ ସେହିମାନଙ୍କୁ କୁହାଯାଏ, ଯେଉଁମାନେ ସଂପୂର୍ଣ୍ଣ ଭୂତରେ ବ୍ୟାପ୍ତ ଆତ୍ମାକୁ ଦେଖୁଥା'ନ୍ତି, ଅର୍ଥାତ୍ ଏହା ଯଜ୍ଞଦତ୍ତ, ଏହା ଦେବଦତ୍ତ, ଇଏ ବ୍ରାହ୍ମଣ, ଇଏ ଚଣ୍ଡାଳ- ଏ ସମସ୍ତ ପ୍ରତି ଧ୍ୟାନ ଦିଅନ୍ତି ନାହିଁ । ସେମାନଙ୍କର ଦୃଷ୍ଟି ସବୁବେଳେ ଆତ୍ମା ଉପରେ ହିଁ ସ୍ଥିର ଥାଏ । ସମସ୍ତଙ୍କଠାରେ ନିଜର ଇଷ୍ଟଙ୍କୁ ହିଁ ଦେଖୁଥାଆନ୍ତି । ସେମାନଙ୍କ ଦୃଷ୍ଟିରେ ସମସ୍ତେ ହେଉଛନ୍ତି ଭଗବାନଙ୍କର ରୂପ ଆଉ ନିଜର ଭଗବତ୍ ସ୍ୱରୂପରେ ଅର୍ଥାତ୍, ନିଜର ଅନ୍ତରାତ୍ମାରେ ସକଳ ପ୍ରାଣୀଙ୍କୁ ଦେଖୁଥା'ନ୍ତି । ଅର୍ଥାତ୍, ମୋ ଅନ୍ତର୍ଯାମୀ ଭଗବାନ ସମସ୍ତଙ୍କଠାରେ ଅଛନ୍ତି । ଆଉ ଭଗବଦ୍ ରୂପରେ ଯିଏ ମୋର ଅନ୍ତଃକରଣରେ ବିରାଜମାନ ସେମାନଙ୍କଠାରେ ବି ଅଛନ୍ତି । ଏହିଭଳି ଯେଉଁମାନଙ୍କ ଦୃଷ୍ଟିରେ ଭଗବଦ୍‌ଭାବ ବ୍ୟତୀତ ଅନ୍ୟ କିଛି ନଥାଏ, ସେମାନେ ଉତ୍ତମ ଭଗବଦ୍‌ଭକ୍ତ ହୋଇଥା'ନ୍ତି । ଏଇମାନେ ହିଁ ହେଉଛନ୍ତି ସର୍ବୋତ୍ତମ ଭାଗବତ ।''

ମହାରାଜ ବିଦେହ ପଚାରିଲେ, ''ଭଗବନ୍ ! ମଧ୍ୟମ ଭକ୍ତଙ୍କର ଲକ୍ଷଣ କ'ଣ ?''

ଯୋଗେଶ୍ୱର ହରି କହିଲେ, ''ରାଜନ୍ ! ଉତ୍ତମ ଭକ୍ତ ସଂସାରରେ କୌଣସିଠାରେ ଭେଦଭାବ ଦେଖନ୍ତି ନାହିଁ । ସମସ୍ତଙ୍କୁ ଭଗବଦ୍‌ରୂପ ଆତ୍ମରୂପରେ ଦେଖନ୍ତି । କିନ୍ତୁ ମଧ୍ୟମ ଭକ୍ତଙ୍କ ଦୃଷ୍ଟିରେ କିଛି ଭେଦ ଥାଏ ।

''ସଂସାରରେ ତିନି ପ୍ରକାରର ଲୋକ ଦେଖାଯାଆନ୍ତି- ଭକ୍ତ, ଅଭକ୍ତ ଆଉ ଅଜ୍ଞାନୀ । ମଧ୍ୟମ ଭକ୍ତ ଏହି ତିନିଜଣଙ୍କ ସହିତ ତିନି ପ୍ରକାରର ବ୍ୟବହାର ଦେଖାଇଥା'ନ୍ତି । ଭଗବାନଙ୍କଠାରେ ଏମାନଙ୍କର ପ୍ରଗାଢ଼ ପ୍ରେମ ଥାଏ । ଭଗବଦ୍‌ଭକ୍ତଙ୍କୁ ଯେଉଁଠାରେ ଦେଖନ୍ତି, ଅତି ପ୍ରସନ୍ନ ହୁଅନ୍ତି । ଭଗବତ୍‌ଭକ୍ତ କେଉଁଠାରେ ଥିଲେ ତାଙ୍କୁ ଦେଖିବାପାଇଁ ଆଗ୍ରହରେ ଯାଆନ୍ତି । ସେଠାକୁ ଯାଇ ତାଙ୍କ ସହିତ ମିତ୍ରତା କରନ୍ତି । ତାଙ୍କ ସହିତ ନିଜର ପ୍ରେମ ସଂପର୍କ ସ୍ଥାପନ କରନ୍ତି । ସେମାନଙ୍କୁ ଆବଶ୍ୟକ ଜିନିଷ ଅର୍ପଣ କରନ୍ତି । ସେମାନେ ଯେଉଁ ପଞ୍ଚାମୃତ ଅଥବା ଭଗବାନଙ୍କ ପ୍ରସାଦ, ବା ନିଜର ଲାଗି ହୋଇଥିବା, ବ୍ୟବହାର କରିଥିବା ବସ୍ତ୍ର ଦିଅନ୍ତି ତାହାକୁ ଶ୍ରଦ୍ଧାର ସହିତ ମସ୍ତକରେ ଧାରଣକରି ଗ୍ରହଣ କରନ୍ତି । ନିଜର ଦୁଃଖ କଥା ସେମାନଙ୍କୁ କୁହନ୍ତି ଓ ସେମାନଙ୍କର ଦୁଃଖ ସୁଖ ଶୁଣନ୍ତି । ଉତ୍ସବ, ପର୍ବ ଅଥବା ଅନ୍ୟ ସମୟରେ ଭଗବତ୍‌ଭକ୍ତଙ୍କୁ ଡାକି ନିଜର ଏକ ଗୋଷ୍ଠୀ କରନ୍ତି ବା ଯେଉଁଠାରେ ଏପରି ଗୋଷ୍ଠୀ ହୁଏ ସେଥିରେ ମିଶନ୍ତି । ସାରାଂଶ ହେଉଛି, ସେମାନଙ୍କ ସହିତ ସୌହାର୍ଦ୍ଧ୍ୟ ଭାବ ରଖନ୍ତି । ପ୍ରତ୍ୟେକ କଥାରେ ଆତ୍ମୀୟତା ପ୍ରକଟ କରନ୍ତି । କିନ୍ତୁ ଯେଉଁମାନେ ଅଭକ୍ତ, ଭଗବାନଙ୍କୁ ଦ୍ୱେଷ କରନ୍ତି, ଶୁଷ୍କ ତାର୍କିକ ନାସ୍ତିକ, ସେମାନଙ୍କୁ ନା ରାଗ କରନ୍ତି ନା ଦ୍ୱେଷ । ସେମାନଙ୍କୁ ଉପେକ୍ଷା କରନ୍ତି । ଯେଉଁଠାରେ ବୈଷ୍ଣବଙ୍କୁ ହାସ୍ୟାସ୍ପଦିତ, ପରିହାସିତ ହେଉଥିବା ଦେଖନ୍ତି, ମୁହଁ ତଳକୁ ପୋତି ପଳାଇ ଆସନ୍ତି । ସେଠାରେ ନା ବାଦ-ବିବାଦ କରନ୍ତି, ନା କୌଣସି ପ୍ରକାର ସମ୍ବନ୍ଧ ରଖନ୍ତି । ସବୁବେଳେ ଉପେକ୍ଷା ଭାବ ରଖିଥା'ନ୍ତି । ସେମାନେ ଦୁଇ ଚାରି ପଦ କହିଦେଲେ ବି, ଚୁପ୍‌ଚାପ ଶୁଣି ନିଅନ୍ତି ।

''ଏପରି ଭକ୍ତ ଓ ଅଭକ୍ତଙ୍କ ବ୍ୟତୀତ ତୃତୀୟରେ ଯେଉଁ ଅଜ୍ଞାନୀ ରହିଲେ, ଯେଉଁମାନଙ୍କର ଈଶ୍ୱରଙ୍କ ସମ୍ବନ୍ଧରେ ସାଧାରଣ ଜ୍ଞାନ ବି ନଥାଏ, ଧର୍ମ କ'ଣ, ଭକ୍ତି କାହାକୁ କରିବା କଥା, ପୂଜା କିପରି କରାଯିବା କଥା- ଜାଣନ୍ତି ନାହିଁ । ଏମାନେ ଯଦିଓ ଭଗବାନଙ୍କ ଭଜନର ବିରୋଧୀ ନୁହନ୍ତି, କିନ୍ତୁ ଭଜନର ପ୍ରକ୍ରିୟା-ପ୍ରଣାଳୀ ଜାଣନ୍ତି ନାହିଁ, ହେଲେ ଏପରି ଅଜ୍ଞାନୀଙ୍କ ଉପରେ ସବୁବେଳେ କୃପା ଭାବ ରଖିଥା'ନ୍ତି, ଏମାନଙ୍କୁ ମନ୍ତ୍ର ଦୀକ୍ଷା ଦିଅନ୍ତି ଅଥବା କୌଣସି ଯୋଗ୍ୟ ଭଗବଦ୍‌ଭକ୍ତଙ୍କ ଠାରୁ ଦୀକ୍ଷା ଗ୍ରହଣ କରାଇ ଦିଅନ୍ତି । ଶାସ୍ତ୍ରରୁ ବଛା ବଛା ଉପଦେଶ ସଂଗ୍ରହକରି ଶୁଣାଇ ଦିଅନ୍ତି, ବୁଝାଇ ଦିଅନ୍ତି, ଲେଖାଇ ଦିଅନ୍ତି । ଆଉ ବି ତାଙ୍କର ହୋଇଯିବା ପାଇଁ ସହାୟତା କରନ୍ତି । ଏହିଭଳି ସେ ଭକ୍ତ, ଅଭକ୍ତ ଓ ଅଜ୍ଞାନୀଙ୍କ ସହିତ ମୈତ୍ରୀ, ଉପେକ୍ଷା ଆଉ କୃପା, ତିନି ପ୍ରକାରର ବ୍ୟବହାର କରିଥାନ୍ତି, ହେଲେ କାହା ସହିତ ଦ୍ୱେଷ ଭାବ ରଖନ୍ତି ନାହିଁ, ସେପରି ଲୋକଙ୍କୁ ମଧ୍ୟମ ଭକ୍ତ କୁହାଯାଏ ।

ରାଜା ବିଦେହ ପଚାରିଲେ, ''ଭଗବନ୍ ! **ସାଧାରଣ ଭକ୍ତଙ୍କ ପରିଭାଷା** କ'ଣ ?''

ମହାମୁନି ହରି କହିଲେ, ''ରାଜନ୍ ! ଯିଏ ଭଗବାନଙ୍କ ଅର୍ଚ୍ଚନା ବିଗ୍ରହରେ ଭଗବଦ୍ ଭାବ ରଖିଥାଏ; ମୂର୍ତ୍ତି ପୂଜା ଶ୍ରଦ୍ଧାର ସହିତ କରୁଥାଏ, କିନ୍ତୁ ଭଗବାନଙ୍କର ଭକ୍ତଙ୍କଠାରେ ତଥା ଅନ୍ୟ ପ୍ରାଣୀଙ୍କଠାରେ ପ୍ରେମ ଭାବ ରଖେନାହିଁ - ସେପରି ଭକ୍ତ ହେଉଛି ପ୍ରାକୃତ* ଭକ୍ତ । ଏପରି ଭକ୍ତମାନେ ଭଗବାନଙ୍କ ପୂଜା-ସାମଗ୍ରୀ ଯତ୍ନପୂର୍ବକ ସଂଗ୍ରହ କରନ୍ତି, ମାତ୍ର କୌଣସି ଭଗବଦ୍‌ଭକ୍ତ ଆସିଗଲେ ତାକୁ ଆଦର କରନ୍ତି ନାହିଁ । ଏପରି ଭକ୍ତ ଏଇ ଅଳ୍ପ ଦିନ ହେବ ଭକ୍ତି ଆରମ୍ଭ କରିଛି ବୋଲି ଜାଣିବାକୁ ହେବ । ଏହି କଥାର ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ଦେଉଛି ଶୁଣନ୍ତୁ ।

''କେତେକ ଭକ୍ତ ଗଙ୍ଗାଜଳ ଧରି ଶ୍ରୀ ରାମେଶ୍ୱରଙ୍କ ଉପରେ ଲାଗି କରିବା ପାଇଁ ପାଦରେ ଚାଲି ଚାଲି ଯାଉଥିଲେ । ରାମେଶ୍ୱରରେ ପହଞ୍ଚିବାକୁ ଆଉ ଅଳ୍ପଦୂର ଥିଲା, ଏହି ସମୟରେ ଏକ ତୃଷାର୍ତ୍ତ ଗଧ ମୃତପ୍ରାୟ ଧକାଇବାରେ ଲାଗିଥିଲା । ସେ ବୁନ୍ଦିଏ ଜଳପାଇଁ ବ୍ୟାକୁଳ ହେଉଥିଲା । ସେହି ଭକ୍ତଙ୍କ ମଧ୍ୟରୁ ଜଣେ କାହାକୁ କିଛି ନପଚାରି ସିଧା ସିଧା ଗଧକୁ ତା' ପାଖରେ ଥିବା ସମସ୍ତ ଗଙ୍ଗାଜଳ ପିଆଇ ଦେଲା । ଗଙ୍ଗାଜଳ ପାନକରି ଗଧ ପୁଣି ସତେଜ ହୋଇଗଲା । ଭକ୍ତ ଜଣକ ଗଙ୍ଗାଜଳବିନା ଆନନ୍ଦରେ ଶ୍ରୀରାମେଶ୍ୱରଙ୍କ ଅଭିମୁଖେ ଚାଲିଲା ।

''କିଛିବାଟ ଯିବାପରେ ସେମାନଙ୍କୁ ଜଣେ ତୃଷାର୍ତ୍ତ ମଣିଷ ମୁନ୍ଦିଏ ପାଣି ମାଗିଲା । ସେ କହିଲା, 'ମୁଁ ଅତି ତୃଷାର୍ତ୍ତ । ମୋତେ ଟିକିଏ ପାଣି ଦିଅନ୍ତୁ । ଜଳ ବିନା ମୋ ପ୍ରାଣ ନାଶ ହୋଇଯିବ । ଏହା ଶୁଣି ଭକ୍ତମାନଙ୍କ ଭିତରୁ ଅନେକ କହିଲେ, ଆମ ପାଖରେ ପାଣି କାଇଁ । ଶ୍ରୀରାମେଶ୍ୱରଙ୍କ ଉପରେ ଜଳ ଚଢ଼ାଇବା ପାଇଁ ଆମେ କେବଳ ଗଙ୍ଗାଜଳ ଧରିଛୁ ।' ଏପରି କହି ସେହି ତୃଷାର୍ତ୍ତକୁ ଉପେକ୍ଷା କରି ସମସ୍ତେ ଚାଲିଗଲେ । କିନ୍ତୁ ସେମାନଙ୍କ ଭିତରୁ କେତେଜଣଙ୍କର ଦୟା ଆସିଲା । ସେମାନେ ନିଜ ନିଜ ଭିତରେ କଥା ହେଲେ, 'ଚାଲ ଭାଇ ! ଆମେ ସମସ୍ତେ ମୁନ୍ଦିଏ ମୁନ୍ଦିଏ ଗଙ୍ଗାଜଳ ବାହାର କରି ତୃଷାର୍ତ୍ତକୁ ଦେବା । ପୂରା ନ ହେଲେ ବି କିଛି ତୃଷା ନିବାରିତ ତ ହୋଇଯିବ । ଆମେ ତାକୁ ସାଙ୍ଗରେ ନେଇ ଯିବା । କିଛି ବାଟ ଯିବାପରେ ସେ ପାଣି ପାଇବ, ଆଉ ଆମ ଗଙ୍ଗାଜଳ ମଧ୍ୟ ରହିବ ।'' ଏପରି ପ୍ରସ୍ତାବରେ ସମସ୍ତେ ପୋସେ ପୋସେ ଗଙ୍ଗାଜଳ ଦେଲେ । ଗଙ୍ଗାଜଳ ପିଆଇ ତାକୁ ସାଙ୍ଗରେ ଧରି ଚାଲିଲେ । ଏହିଭଳି ସେହି ତୃଷାର୍ତ୍ତର ପ୍ରାଣ ରକ୍ଷା ହୋଇଗଲା ।

''ଏହି ଭକ୍ତଙ୍କ ଭିତରୁ ଯିଏ ଗଧକୁ ଦେଖି ଆତ୍ମଭାବରେ ସମସ୍ତ ଗଙ୍ଗାଜଳ ପ୍ରସନ୍ନତା

---

* ଇତର, ଅଧମ, ନୀଚ

ପୂର୍ବକ ପିଆଇ ଦେଇଥିଲା ସେ ହେଉଛି ଉତ୍ତମ ଭକ୍ତ । ସେ ସେହି ଗଧ ଦେହରେ ଶ୍ରୀରାମେଶ୍ୱରଙ୍କୁ ଦର୍ଶନ କଲା । ଆଉ ଶ୍ରୀରାମେଶ୍ୱର ବି ନିମନ୍ତେ ଗଙ୍ଗାଜଳ ଗ୍ରହଣ କଲେ । ଯେଉଁମାନେ ଶ୍ରୀରାମେଶ୍ୱର ଗଧ ରୂପରେ ଭକ୍ତଠାରୁ ଗଙ୍ଗାଜଳ ରଖି କୃପାପୂର୍ବକ କିଛି ଗଙ୍ଗାଜଳ ତୃଷାର୍ତ୍ତ ଲୋକକୁ ଦେଲେ ସେମାନେ ମଧ୍ୟମ ଧରଣର ଭକ୍ତ । ସେମାନଙ୍କ ଦୃଷ୍ଟିରେ କିଛି ଭେଦ ଭାବ ରହିଥିଲା । କିନ୍ତୁ ଯେଉଁମାନେ କିଛି ଜଳ ନ ଦେଇ କେବଳ ଶ୍ରୀରାମେଶ୍ୱରଙ୍କୁ ଜଳଦେଲେ ପୁଣ୍ୟ ହେବ ବୋଲି ଭାବନାରେ ଗଙ୍ଗାଜଳ ସାଇତି ରଖିଲେ ସେମାନେ ପ୍ରାକୃତ ଭକ୍ତ । ଭକ୍ତି କରି କରି ସେମାନେ ବି ମଧ୍ୟମ ଓ ଉତ୍ତମ ଭକ୍ତ ହୋଇପାରିବେ । ଏମାନେ ଭକ୍ତିଭବନର ରାସ୍ତା ଧରିନେଇଥିଲେ ବୋଲି ବୁଝିବାକୁ ହେବ । ଯିଏ ସିଧା ରାଜପଥକୁ ଧରିନେଇଥାଏ, ସେ ଯେତେ ଧୀରେ ଧୀରେ ଚାଲୁ ପଛେ, ରହି ରହି ଯାଉଥାଉ ପଛେ, ଦିନେ ନା ଦିନେ ନିଶ୍ଚୟ ଠିକଣା ସ୍ଥାନରେ ପହଞ୍ଚିଯାଏ । ଯେଉଁମାନେ ବର୍ତ୍ତମାନ ସୁଦ୍ଧା ଯାତ୍ରା ଆରମ୍ଭ କରିନାହାନ୍ତି ସେମାନେ କ'ଣ ଅବା ଆଶା କରିପାରନ୍ତି ! ତିନି ପ୍ରକାରର ଭଗବଦ୍‌ଭକ୍ତଙ୍କ ନିମନ୍ତେ ସଂକ୍ଷେପରେ ମୁଁ ଦୃଷ୍ଟାନ୍ତ କହିଲି । ଏବେ ଆପଣ ଆଉ କ'ଣ ଜାଣିବାକୁ ଚାହାନ୍ତି କୁହନ୍ତୁ ।''

ମହାରାଜ ବିଦେହ ପଚାରିଲେ, ''ବ୍ରହ୍ମନ୍ ! ଶ୍ରେଷ୍ଠ ଭକ୍ତଙ୍କ ପ୍ରସଙ୍ଗରେ ଅଧିକ ବିସ୍ତୃତ ଭାବରେ ଜାଣିବାକୁ ଚାହୁଁଛି । କୃପାକରି ଉତ୍ତମ ଭକ୍ତଙ୍କ ଲକ୍ଷଣ ବିଶେଷ ରୂପରେ କୁହନ୍ତୁ । ସେମାନଙ୍କର ମହିମା ଅଧିକ ସୁନ୍ଦର ରୂପରେ ବୁଝାନ୍ତୁ ।''

ଯୋଗେଶ୍ୱର ହରି କହିଲେ, ''ରାଜନ୍ ! ଭଗବଦ୍‌ଭକ୍ତଙ୍କ ମହିମା ପୁଣି କେହି ବର୍ଣ୍ଣନା କରିପାରେ ? ସେମାନେ ତ ଭଗବାନଙ୍କ ଭଳି ହୋଇଥା'ନ୍ତି । ସେମାନେ ସଂସାରରେ ରହି ସୁଦ୍ଧା ସଂସାରୀ ଭାବରୁ ଦୂରରେ ରହିଥାଆନ୍ତି । ସେମାନଙ୍କୁ ସଂସାର ସ୍ପର୍ଶ କରିପାରେ ନାହିଁ ।''

ରାଜା ପଚାରିଲେ, ''ଭଗବନ୍ ! ଏହି ସାଂସାରିକ ଦ୍ରବ୍ୟ ସମସ୍ତଙ୍କୁ ତା' ଆଡ଼କୁ ଆକର୍ଷଣ କରିବାରେ ଲାଗିଥାଏ । ଇନ୍ଦ୍ରିୟମାନେ ବିଷୟ ସମ୍ମୁଖକୁ ଆସିବାମାତ୍ରେ ତାକୁ ଭୋଗ କରିବାପାଇଁ ଇଚ୍ଛା କରନ୍ତି । ଜିଭ ସହିତ ମିଠାର ସମ୍ବନ୍ଧ ହୋଇଗଲେ ସ୍ୱାଦ ତ ନିଶ୍ଚୟ ଆସିଯିବ । ଅନେକ ଭକ୍ତ ତ ମିଠେଇ ଖାଉଥିବା ଆମେ ଦେଖୁଛେ । ସେମାନଙ୍କୁ କ'ଣ ଇନ୍ଦ୍ରିୟ ଅନୁକୂଳ ଭୋଗ ଲାଭକରି ପ୍ରସନ୍ନତା ଅଥବା ପ୍ରତିକୂଳ ବିଷୟ ଲାଭକରି ଦୁଃଖ ହେଉନଥିବ ?''

ମୁନି କହିଲେ, ''ରାଜନ୍ ! ପ୍ରଥମେ ଦୁଃଖ-ସୁଖ କଥା ଭଲଭାବରେ ବୁଝିଥିବା ଉଚିତ । ଜିନିଷ ଗୋଟିଏ । ଜଣଙ୍କୁ ତାହା ଭଲ ଲାଗିଲେ, ଆଉ ଜଣଙ୍କୁ ତାହା ଭଲ ଲାଗେ ନାହିଁ । ସୁଖ-ଦୁଃଖ ହେଉଛି ମନର କଥା । ମନକୁ ତାହା ଭଲ ଲାଗିଲେ ଆମକୁ ତାହା

ସୁଖ ଲାଗେ । ମନର ଗ୍ରହଣ କରିବାକୁ ଇଚ୍ଛା ନ ହେଲେ ଆମକୁ ତାହା ଦୁଃଖ ଲାଗେ । ଭଗବଦ୍-ଭକ୍ତ ଯେଉଁ ପର୍ଯ୍ୟନ୍ତ ସଂସାରରେ ରହିଥାଏ- ଯେଉଁ ପର୍ଯ୍ୟନ୍ତ ଶରୀର ଧାରଣ କରିଥାଏ- ସେହି ପର୍ଯ୍ୟନ୍ତ ଇନ୍ଦ୍ରିୟଙ୍କଦ୍ୱାରା ବିଷୟ ଗ୍ରହଣ କରୁଥାଏ । ଖିଆପିଆ କରେ, ଦେଖେ, ଶୁଣେ, ଶୁଙ୍ଘେ, ସକଳ ପ୍ରକାର ଇନ୍ଦ୍ରିୟ ସମ୍ବନ୍ଧୀୟ ବିଷୟକୁ ସଦାଚାର-ସଂଯମପୂର୍ବକ ଉପଭୋଗ କରୁଥାଏ । କିନ୍ତୁ ଏ ସମସ୍ତ ହେଉଛି ଭଗବାନଙ୍କର ମାୟା ବୋଲି ସେ ସବୁସମୟରେ ଦୃଢ଼ରୂପେ ଜାଣିଥାଏ । ଯେତେବେଳେ ସେ ଏହି ମନ୍ତ୍ରକୁ ଭୁଲିଯାଏ, ସେହି ସମୟରେ ସେ ବିଷୟରେ ଫସିଯାଏ, ବନ୍ଧନରେ ପଡ଼ିଯାଏ । **ସାଂସାରିକ ଲୋକର ଯେତେବେଳେ ଅସତ୍‌ରେ ସତ୍ ଭାବନା ହୋଇଯାଏ ସେତେବେଳେ ସେ ତାକୁ ଭଗବଦ୍‌ଭକ୍ତି ଦ୍ୱାରା ନାଶ କରିଦିଏ । ତା' ଦୃଷ୍ଟିରେ ସେତେବେଳେ ଏହି ଭୋଗ୍ୟ ପଦାର୍ଥରେ ସୁଖ ନାହିଁ, ଶାନ୍ତି ନାହିଁ, ସତ୍ୟତା ନାହିଁ ବୋଲି ଆସିଯାଏ ।** ଏଣୁ ଯଦି ତାକୁ ଇନ୍ଦ୍ରିୟଙ୍କର ପ୍ରତିକୂଳ ପଦାର୍ଥ ମିଳିଯାଏ, ସେତେବେଳେ ତାକୁ ଦେଖି ନା ତ ସେ ଦ୍ୱେଷ କରେ, ନା ଅନୁକୂଳ ପଦାର୍ଥ ମିଳିଗଲେ ଉତ୍‌ଫୁଲ୍ଲିତ ହୁଏ । ସେ ଅନୁକୂଳ ପ୍ରତିକୂଳ ଉଭୟ ଦଶାରେ ସମାନ ଭାବ ରଖିଥାଏ । ଏହିଭଳି ଜଳରେ ରହି ପଦ୍ମ ଭଳି ନିର୍ଲେପ ରହିଥିବା ଲୋକ ହିଁ ସର୍ବଶ୍ରେଷ୍ଠ ଭଗବଦ୍‌ଭକ୍ତ ହୋଇଥାଏ । ଏପରି ଭକ୍ତ ଉତ୍ତମ ଭକ୍ତ ହୋଇଥାଏ ।''

ରାଜା ପଚାରିଲେ, ''ମହାରାଜ ! ଏହା ତ ଅତି କଷ୍ଟକର କଥା । ବିଷୟକୁ ଉପଭୋଗ କରିବା, ଏହାର ସୁଖ-ଦୁଃଖକୁ ଅନୁଭବ କରିବା ନାହିଁ- ଏହା ତ ଅସମ୍ଭବ କଥା । ହେ ମହାନୁଭବ ! ଅଗ୍ନିକୁ ସ୍ପର୍ଶକଲେ ଗରମ ହେବନାହିଁ- ଏହା କ'ଣ କେବେ ସମ୍ଭବ ?''

ଏପରି କଥା ଶୁଣି ଯୋଗେଶ୍ୱର ହରି କହିଲେ, ''ରାଜନ୍ ! ଇନ୍ଦ୍ରିୟମାନେ କ'ଣ ସ୍ୱତଃ ବିଷୟ-ଉପଭୋଗ କରନ୍ତି ? ସେମାନେ ତ ମନଦ୍ୱାରା କରିଥାନ୍ତି । **ଆଖି ରୂପକୁ ଦେଖେ, ଏ କଥା ସତ୍ୟ । କିନ୍ତୁ ଯେ ପର୍ଯ୍ୟନ୍ତ ଆଖି ସହିତ ମନ ଥାଏ ଆମକୁ ବିଷୟ ଜଣାପଡ଼େ । ମନ ଅନ୍ୟ ଆଡ଼େ ଥିଲେ, ଆଖି ମେଲା ଥିଲେ ବି ରୂପ ଦେଖାଯାଏ ନାହିଁ । ମନ ଅନ୍ୟ ଆଡ଼େ ଥିଲେ ଜିଭରେ ଯେତେ ମିଠା ଜିନିଷ ଥୋଇଲେ ବି ତାହାର ସ୍ୱାଦ ଜାଣିହୁଏ ନାହିଁ ।** ଦେଖନ୍ତୁ, ପିଲା ରାତିରେ ଶୋଇଥାଏ, ମା' ତାକୁ ଉଠାଇ କୋଳକରେ ଓ କ୍ଷୀର ପିଆଏ । ପିଲାଟି ଗିନାଟିଯାକ କ୍ଷୀର ପିଇଦିଏ । ହେଲେ ସକାଳୁ ଉଠି 'ମୋତେ କ୍ଷୀର ପେଇଲୁ ନାହିଁ' ବୋଲି ମା' ସହିତ କଳି କରେ । ପିଲାଟି ଦୁଧ ପିଇଛି, ତାହା ପୁଣି ମିଠା ଦୁଧ, ଜିଭ ସହିତ ତା'ର ସମ୍ବନ୍ଧ ବି ହୋଇଛି; କିନ୍ତୁ ମନ ସେତେବେଳେ ନିଦ୍ରାରେ ଅଭିଭୂତ ହୋଇ ରହିଥାଏ, ତା'ର ଜିଭ ସହିତ ସମ୍ବନ୍ଧ ନଥାଏ ।

ଦୁଧ ସ୍ୱଭାବ ଓ ପିଲାଟିର ଅଭ୍ୟାସ ହେତୁ ତା' ଗଳା ବାଟେ ପେଟକୁ ଚାଲିଯାଏ, ହେଲେ ସ୍ୱାଦ ଅନୁଭବ ହୁଏନାହିଁ । ଏହିଭଳି ଭଗବଦ୍‌ଭକ୍ତଙ୍କ ମନ ହରି ସ୍ମରଣରେ ଅନବରତ ନିମଗ୍ନ ରହିଥାଏ । ଦେଖନ୍ତୁ, ଜଣେ ସତୀ ସ୍ତ୍ରୀ ଅଛି, ତା' ସ୍ୱାମୀ ମରିଯାଇଛି, ସେ ତା' ସହିତ ସତୀ ହେବାକୁ ଚାହୁଁଛି, କାନ୍ଦୁନାହିଁ, ହସି ହସି ଶୃଙ୍ଗାର କରୁଛି । ସ୍ୱାମୀକୁ କୋଳରେ ଧରି ପ୍ରଜ୍ୱଳିତା ଚିତା ଭିତରକୁ ପ୍ରବେଶ କରିଯାଉଛି । ହେଲେ ତାକୁ କଷ୍ଟ ହେଉନାହିଁ, କାରଣ ତା'ର ମନ ପତି ସହିତ ରହିଯାଇଛି । ବେଳେ ବେଳେ ମନ ଅନ୍ୟକଥା ଚିନ୍ତାକରୁଥିବା ବେଳେ ଯଦି କେହି ଆମକୁ ଛୁଇଁଦିଏ ସେତେବେଳେ ତାହା ଆମେ ଜାଣିପାରୁନା । ଗରମ-ଥଣ୍ଡାର ସ୍ପର୍ଶ ଇନ୍ଦ୍ରିୟଙ୍କ ସମ୍ବନ୍ଧରେ ହେଉଥିଲେ ବି ଏହାର ପରିଣାମରୁ ବଞ୍ଚିତ ହୋଇଥାଏ । ଭକ୍ତ ତ ଭଗବାନଙ୍କ ସହିତ ତଲ୍ଲୀନ ଥାଏ । ଶରୀର ସ୍ୱଭାବାନୁସାରେ ଚାଲିଥାଏ ।''

ମହାରାଜ ବିଦେହ କହିଲେ, ''ଭଗବନ୍ ! ଦେହର ଯେଉଁ ସୁଖ-ଦୁଃଖ ରୂପ ଧର୍ମ ଅଛି, ଏହା ତାଙ୍କୁ ହିଁ ତ ହୋଇଥାଏ ନା ?''

ଯୋଗେଶ୍ୱର ହରି କହିଲେ, ''ହୁଏ ନାହିଁ କିପରି, ଦେହାଦିର ଧର୍ମ ତ ହୋଇଥାଏ । କିନ୍ତୁ ସେଥିରେ ସେ ଲିପ୍ତ ହୁଏନାହିଁ । ନିଜ ଦେହରେ ସେ ସେହି ସୁଖ-ଦୁଃଖକୁ ଆରୋପିତ କରେନାହିଁ । ଦେହର ଧର୍ମ ଯେପରି ଜନ୍ମ ଓ ମୃତ୍ୟୁ- ଭଗବଦ୍‌ଭକ୍ତ ଦେହ ଯେ ପର୍ଯ୍ୟନ୍ତ ଅଛି, ସେ ପର୍ଯ୍ୟନ୍ତ ଅଛି, ଅନ୍ତ ହୋଇଗଲେ ବି ସେମାନେ ଏଥିପାଇଁ ଚିନ୍ତିତ ହୁଅନ୍ତି ନାହିଁ । ସେ ଦେହଠାରୁ ପୃଥକ୍ ବୋଲି ସବୁବେଳେ ଜାଣିଥାଏ । ହେ ରାଜନ୍, ଦେଖନ୍ତୁ ! ବସ୍ତ୍ର ଗୋଟିଏ, ବସ୍ତ୍ରକୁ ପିନ୍ଧିବା ଲୋକ ଜଣେ । ଘରଟିଏ ଅଛି, ଘରେ ଜଣେ ରୁହନ୍ତି । ବସ୍ତ୍ରଟି ଚିରିଗଲେ ବସ୍ତ୍ର ପରିଧାନ କରିଥିବା ଲୋକ ତ ଚିରିଯାଏ ନାହିଁ । ଘରଟି ଭାଙ୍ଗି ଗଲେ ଘରେ ରହୁଥିବା ଲୋକ ତ ନଷ୍ଟ ହୋଇଯାଏ ନାହିଁ; କାରଣ ଘରେ ରହୁଥିବା ଲୋକଠାରୁ ଘର ହେଉଛି ଅଲଗା । ଠିକ୍ ଏହିଭଳି ଆତ୍ମାର ଜନ୍ମ ମୃତ୍ୟୁ ନଥାଏ । ଶରୀର ଜନ୍ମ ହୁଏ, ମରେ । ଆତ୍ମାଠାରୁ ଶରୀର ହେଉଛି ଭିନ୍ନ । ଭଗବଦ୍ ଭକ୍ତଙ୍କର ଏପରି ଦୃଢ଼ ଧାରଣା ହୋଇଯାଇଥାଏ । ଏଣୁ ଜନ୍ମ-ମୃତ୍ୟୁରେ ସେମାନଙ୍କର ମୋହ ହୋଇନଥାଏ । ଦେହଠାରୁ ସୂକ୍ଷ୍ମ ହେଉଛି ଇନ୍ଦ୍ରିୟ । ଇନ୍ଦ୍ରିୟଙ୍କର ଧର୍ମ ହେଉଛି ପରିଶ୍ରମ କରିବା, କ୍ଲାନ୍ତ ହୋଇଯିବା, ଦୋଷଯୁକ୍ତ ହୋଇଯିବା । ଆଖି ଆଉ ଦେଖି ନ ପାରିଲେ ମଣିଷ ଅନ୍ଧ ହୋଇଯାଏ । କାନ ଆଉ ଶୁଣି ନ ପାରିବା ଅର୍ଥ କାଲ ହୋଇଯିବା । ଏଣୁ ଏହି ଅନ୍ଧତ୍ୱ, ବଧିରତ୍ୱ ଅଥବା ଅନ୍ୟ ବିକାର ଆଦି ହୋଇଯିବା ତ ଆତ୍ମା ଦ୍ୱାରା ହୋଇନଥାଏ । ଏ ସମସ୍ତ ଇନ୍ଦ୍ରିୟଙ୍କୁ ହୋଇଥାଏ । ତେଣୁ ଏଥିଯୋଗୁ ଭଗବଦ୍‌ଭକ୍ତ ଦୁଃଖୀ ହୁଏନାହିଁ । ତାଙ୍କୁ ଶୋକ ହୁଏ ନାହିଁ । ଇନ୍ଦ୍ରିୟଙ୍କ ଧର୍ମକୁ ସେ ନିଜଠାରେ ଆରୋପିତ କରେନାହିଁ ।

ଇନ୍ଦ୍ରିୟଙ୍କଠାରୁ ସୂକ୍ଷ୍ମ ହେଉଛି ପ୍ରାଣ । ପ୍ରାଣ ଦଶ ପ୍ରକାରର, - ପ୍ରାଣ, ଅପାନ, ଉଦାନ, ସମାନ, ବ୍ୟାନ, କୂର୍ମ, କୃକଳ, ଧନଞ୍ଜୟ, ଦେବଦତ୍ତ ଆଉ ନାଗ । କ୍ଷୁଧା, ପିପାସା ହେଉଛି ଏମାନଙ୍କର ଧର୍ମ । ଦେହ କ୍ଷୁଧା ପିପାସା ଦ୍ୱାରା ଆକ୍ରାନ୍ତ ହୋଇଗଲେ ଭଗବଦ୍‌ଭକ୍ତ ଏହାକୁ ପ୍ରାଣର ଧର୍ମ ବୋଲି ଜାଣି ସ୍ୱୟଂ ନିର୍ବିକାର ରହେ ।

ପ୍ରାଣଠାରୁ ସୂକ୍ଷ୍ମ ହେଉଛି ମନ । ଭୟ ଆଦି ହେବା ହେଉଛି ମନର ଧର୍ମ । ସିଂହର ହେଣ୍ଟାଳ ଶୁଣିଲେ ଅଥବା ଭୟଙ୍କର ଭୂତକୁ ସାମନାରେ ଦେଖିଲେ ଭୟ ଜାତ ହୁଏ । ଏହି ଭୟ ମନରେ ଜାତ ହୋଇଥାଏ । ଭଗବଦ୍‌ଭକ୍ତ କିନ୍ତୁ ସବୁବେଳେ ନିର୍ଭୟ ରହିଥାଏ । ସବୁବେଳେ ଭୟ ଅନ୍ୟଙ୍କଠାରୁ ଉତ୍ପନ୍ନ ହୋଇଥାଏ । ଆତ୍ମା ହେଉଛି ଅଦ୍ୱୟ- ଏଥିରେ ଭୟର କଳ୍ପନା ବି ହୁଏନାହିଁ । **ସମସ୍ତଙ୍କଠାରେ ଯିଏ ପରମାତ୍ମାଙ୍କୁ ଦର୍ଶନ କରୁଥାଏ ସେ ପୁଣି କାହାକୁ ଭୟ କରିବ !** ନିଜେ ନିଜକୁ ଦେଖି କେହି କେବେ ଭୟ କରେ କି ?

ମନଠାରୁ ସୂକ୍ଷ୍ମ ହେଉଛି ବୁଦ୍ଧି । ତୃଷ୍ଣା କରିବା, ଅଧିକ ଦ୍ରବ ସଂଗ୍ରହ କରିବା- ଏ ସବୁ ବୁଦ୍ଧିରେ ହୁଏ । ବୁଦ୍ଧିରେ ଭାବନା କରୁ, ଯେଉଁ ବସ୍ତୁ ଆସିଛି ତାକୁ ଯତ୍ନ ସହକାରେ ସଂଗ୍ରହ କରୁ କାରଣ ସମ୍ଭବତଃ ଭବିଷ୍ୟତରେ ନମିଳିପାରେ । ଅଧିକ ବସ୍ତୁ ଥିଲେ ଅଧିକ ସୁଖ ମିଳିବ । ଭଗବଦ୍ ଭକ୍ତ ଏପରି ଭାବନା କାହିଁକି କରିବ । ତା'ର ପରମାତ୍ମା ତ ସର୍ବତ୍ର ପରିପୂର୍ଣ୍ଣ ହୋଇ ରହିଥା'ନ୍ତି । ସେଥିରେ ତ ନ୍ୟୁନତା ନଥାଏ । ତୃଷ୍ଣା ଆଦି ବୁଦ୍ଧିର ଧର୍ମରେ ସେ ଆଦୌ ମୋହିତ ହୁଏନାହିଁ । **ଯିଏ ଦେହ, ଇନ୍ଦ୍ରିୟ, ପ୍ରାଣ, ମନ, ତଥା ବୁଦ୍ଧି ବିଷୟରେ ନିଜଠାରେ ଆରୋପିତ କରି ଶୋକ, ମୋହ ପ୍ରାପ୍ତ ହୁଏନାହିଁ ସେ ହିଁ ଶ୍ରେଷ୍ଠ ଭଗବଦ୍‌ଭକ୍ତ ହୋଇଥାଏ ।''**

ମହାରାଜ ବିଦେହ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, ''ଭଗବନ୍ ! ଆପଣ ଅତି ଗୁରୁତ୍ୱପୂର୍ଣ୍ଣ କଥା କହୁଛନ୍ତି । ଏହି ଧର୍ମ ଦେହର, ଏହା ଇନ୍ଦ୍ରିୟଙ୍କର, ଏହା ପ୍ରାଣର, ଏହା ମନ ଆଉ ବୁଦ୍ଧିର ବୋଲି ଯଦି ଜଣେ ଭାବେ ତେବେ ସଂସାରରେ ତା' ପାଇଁ ତ ଆଉ କୌଣସି କାମ ରହିବ ନାହିଁ ।''

ମହାମୁନି ହରି ହସି ହସି କହିଲେ, ''ରାଜନ୍ ! ମୁଁ କ'ଣ ସରଳ କଥା କହୁଛି କି ! ମୁଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହିଁ କହୁଛି । **ବିଷୟଠାରୁ ଗୁରୁତ୍ୱ ହେଉଛି ଇନ୍ଦ୍ରିୟ, ଇନ୍ଦ୍ରିୟଙ୍କ ଉପରେ ମନ, ମନ ଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ବୁଦ୍ଧି, ବୁଦ୍ଧିଠାରୁ ଅଧିକ ଗୁରୁତର ହେଉଛି ଆତ୍ମା, ଆଉ ସବୁଠାରୁ ଉଚ୍ଚ ହେଉଛି ପରମାତ୍ମା ।** ମୁଁ ତ ଆତ୍ମା ସମ୍ବନ୍ଧୀୟ କଥା କହୁଛି । ପୃଥିବୀ, ଜଳ, ତେଜ, ବାୟୁ ଆଉ ଆକାଶରେ ନିର୍ମିତ କ୍ଷୁଦ୍ର ଭୌତିକ ବସ୍ତୁ ସମ୍ବନ୍ଧରେ ମୁଁ ତ କିଛି କହୁନାହିଁ । ଆପଣ ଚିନ୍ତାକରନ୍ତୁ, ସଂସାରର ସମସ୍ତ କାମ କାମନାରେ ହୋଇଥାଏ । ଭଗବଦ୍‌ଭକ୍ତଙ୍କ ଚିତ୍ତ ସବୁସମୟରେ ଭଗବାନ୍

ବାସୁଦେବଙ୍କ ଚରଣାରବିନ୍ଦରେ ନିହିତ ରହିଥାଏ । ତା'ର ଏକମାତ୍ର ଗତି ହୋଇଥା'ନ୍ତି ଶ୍ୟାମସୁନ୍ଦର । ଏହି ସଂସାରୀ କାମନାସମୂହ ଆଉ କର୍ମର ବୀଜର ବାସନାସମୂହର ତା' ଚିତ୍ତରେ ଉତ୍ପନ୍ନ ହେବା କେବେ ବି ସମ୍ଭବ ହୁଏ ନାହିଁ । ସେତେବେଳେ ତା' ନିମନ୍ତେ ଏକମାତ୍ର ଭଭଗବଦ୍‌ଭକ୍ତି ହିଁ ଶ୍ରେଷ୍ଠକାର୍ଯ୍ୟ ହୋଇଥାଏ । ଶରୀର ଥାଉ ଅଥବା ନଷ୍ଟ ହୋଇଯାଉ, ଶ୍ରେଷ୍ଠ ଭକ୍ତଙ୍କର ଏଥିପ୍ରତି ସାମାନ୍ୟମାତ୍ର ଚିନ୍ତା ନଥାଏ । ଏହିପରି ଦୃଢ଼ ଭକ୍ତି ଯାହାର ହୋଇଯାଇଥାଏ ସେ ହିଁ ସଂପୂର୍ଣ୍ଣ ଭଗବଦ୍ ଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇଥାଏ ।''

ଏପରି କଥା ଶୁଣି ରାଜା କହିଲେ, ''ପ୍ରଭୁ ! ଯେତେବେଳ ଠାରୁ ମୁଁ ଆପଣଙ୍କ ମୁହଁରୁ ଭଗବଦ୍‌ଭକ୍ତଙ୍କ ବିଷୟରେ ଶୁଣୁଛି ସେତେବେଳଠାରୁ ସଂସାର ବିଷୟରେ ମୁଁ ଭୁଲିଯାଇଛି । ମୋର ମନ ଏତେବେଳ ପର୍ଯ୍ୟନ୍ତ ଦେହ, ଇନ୍ଦ୍ରିୟାଦିଙ୍କଠାରୁ ଉପରକୁ ଉଠିଯାଇ ସେହି ସତ୍ ପଦାର୍ଥକୁ ଖୋଜିବାରେ ଲାଗିଛି । ଭଗବଦ୍ ଭକ୍ତଙ୍କ ସମ୍ବନ୍ଧରେ ମୁଁ ଆହୁରି ଅଧିକ ଶୁଣିବାକୁ ଚାହୁଁଛି । ଭଗବଦ୍‌ଭକ୍ତଙ୍କ ମହିମା ପ୍ରସଙ୍ଗରେ ମୋତେ କୃପାକରି ଅଧିକ କିଛି କୁହନ୍ତୁ । ସେମାନଙ୍କର ଉତ୍ତମ ଉତ୍ତମ ଲକ୍ଷଣ ସଂପର୍କରେ କିଛି ବିଶେଷ କଥା କୁହନ୍ତୁ ।''

ଏହାଶୁଣି ଯୋଗେଶ୍ୱର ହରି କହିଲେ, ''ଠିକ୍ ଅଛି ରାଜନ୍ ! ମୁଁ କିଛି ସମୟ ଭଗବଦ୍ ସ୍ୱରୂପ ଭକ୍ତଙ୍କ ପାଦପଦ୍ମକୁ ସ୍ମରଣ କରିନିଏ, ଏହାପରେ ସେମାନଙ୍କର କୃପାରେ ସେମାନଙ୍କର କିଛି ଅଧିକ ମହିମା ବର୍ଣ୍ଣନା କରି ମୋର ବାଣୀକୁ ସଫଳ କରିବି ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଏପରି କହି ମହାଯୋଗେଶ୍ୱର ହରି କିଛି ସମୟ ପାଇଁ ମୌନ ହୋଇଗଲେ ।''

## ଛପ୍‌ପୟ

*କରୈ ସକଲ ବ୍ୟବହାର ହୋହି ଆସକ୍ତ ନ ତବହୂଁ ।*
*ସମଝୈ ମାୟା ସବହିଁ କରୈ ନହିଁ ସୁଖ ଦୁଃଖ କବହୁଁ ।।*
*ଜୋ ସାଂସାରିକ ଧରମ ନ ମୋହିତ ତିନି ମହଁ ହୋବୈ ।*
*ହଁସେ ନ ଲଖି ଅନକୂଲ ନିରଖି ପ୍ରତିକୂଲ ନ ରୋବୈ ।।*
*ଜନମ, କରମ, ଆଶ୍ରମ, ବରନ, ଜାତି ଭେଦ ମନତୈ ତଜୈଂ ।*
*ତେ ଈ ଭଗବଦ୍‌ଭକ୍ତ ବର, ପ୍ରେମ ସହିତ ପ୍ରଭୁ କୂଁ ଭଜୈ ।।*



# ପରମ ଭାଗବତଙ୍କ ଲକ୍ଷଣ

ତ୍ରିଭୁବନବିଭବହେତବେଽପ୍ୟକୁଣ୍ଠ-
ସ୍ମୃତିରଜିତାତ୍ମସୁରାଦିଭିର୍ବିମୃଗ୍ୟାତ୍ ।
ନ ଚଳତି ଭଗବତ୍ପଦାରବିନ୍ଦା-
ଲ୍ଲବନିମିଷାର୍ଧମପି ଯଃ ସ ବୈଷ୍ଣବାଗ୍ରୟଃ ।।☆

(ଶ୍ରୀ ଭା. ୧୧ସ୍କ. ୨ଯ. ଅ. ୫୩ ଶ୍ଳୋକ)

**ଛପ୍ପୟ**

*ପରମ ଭାଗବତ ମୈଂ ମେରୀ ମହଁ ନାହିଁ ଭୁଲାବୈଂ ।*
*ହରି ସୁମିରନ କେ ହେତୁ ରାଜ ବୈଭବ ଠୁକରାବୈଂ ।।*
*ସୁମିରନ ନିଶି ଦିନ କରେଂ ନହୀଂ ପ୍ରଭୁ ପଦ ବିସରାବୈ ।*
*ସମଦରଶୀ ବନି ଜାର୍ଯଁ, ପରମପଦ ତବରି ପାବୈ ।।*
*ପଲ ପଲ ସେବହିଁ ହରି ଚରନ, ଶରନ ଗହୈଂ ସବ କଛୁ ସହୈଂ ।*
*ତିନିକୂଁ ଋଷି ମୁନି ବେଦବିତ, ଭକ୍ତ ମୁକୁଟମନି ବର କହୈଂ ।।*

ଯେଉଁ ବସ୍ତୁ ପାଇଁ ଯେତେ ଅଧିକ ତ୍ୟାଗ କରାଯାଏ, ସେହି ବସ୍ତୁର ମହତ୍ତ୍ୱ ସେତେ ଅଧିକ ହୋଇଥାଏ ବୋଲି ଜଣାଯାଏ । ଜଣଙ୍କ ପାଖରେ ଛୋଟିଆ ଘୋଡ଼ାଟିଏ ଅଛି । ତାକୁ ଗୋଟିଏ ହାତୀ, ଘୋଡ଼ା ବଦଳରେ ଯଚା ଗଲା । ସେ ଯଦି ଘୋଡ଼ା ଦେଇ ହାତୀଟି ନିଏ ତେବେ ଘୋଡ଼ାଠାରୁ ହାତୀକୁ ବଡ଼ ବୋଲି ମନେକରୁଥିବାରୁ ସେ ଏପରି କରିଥାଏ । ଛୋଟିଆ ଜିନିଷ ଦେଇ ବଡ ଜିନିଷ ପାଇବା ପାଇଁ ସମସ୍ତେ ଇଚ୍ଛା କରନ୍ତି । **ଭକ୍ତ ଦୃଷ୍ଟିରେ ଭଗବାନ୍ ହୋଇଥା'ନ୍ତି ସବୁଠାରୁ ବଡ଼ । ଭଗବାନ୍‌ଙ୍କ ପାଇଁ ସେ ସର୍ବସ୍ୱ ତ୍ୟାଗ କରିଥାଏ । ଯେଉଁ ବସ୍ତୁକୁ ସଂସାରର ଲୋକ ମହାନ୍ ବୋଲି ଭାବିଥାଏ ସେମାନଙ୍କ**

☆ ଏ ତିନିଭୁବନ ସମ୍ପତ୍ତି । ହେଲେ ହେଁ ତହୁଁ ନ ଚଳନ୍ତି ।।
ନୁହନ୍ତି ମାୟାରେ ମୋହିତ । ସେ ପ୍ରାଣୀ ମହାଭାଗ୍ୟବନ୍ତ ।।
ସେ ପ୍ରଭୁପାଦ ନିତ୍ୟେ ଚିନ୍ତି । ଲବ ନିମିଷ ନ ଛାଡ଼ନ୍ତି ।।
ବିଷ୍ଣୁ ଭକତ ସେ ପ୍ରଧାନ । ନିସ୍ତରେ ତାକୁ ଦେଖି ଜନ ।।
କେବେହେଁ ନୋହେ ମତିଭ୍ରମ । ସେ ପ୍ରାଣୀ ନାରାୟଣ ସମ ।।

(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୩ୟ ଅ.)

ଦୃଷ୍ଟିରେ ଭଗବଦ୍ ସ୍ମରଣ ତୁଳନାରେ ତାହା ତୁଚ୍ଛ ଜଣାଯାଇଥାଏ । ଭଗବାନ୍‌ଙ୍କର ଏପରି ମହତ୍ତ୍ୱ ଯିଏ ବୁଝିଯାଇଥାଏ ସେହିଁ ହୋଇଥାଏ ପରମ ଭକ୍ତ ଓ ସେ ହିଁ ହୋଇଥାଏ ପ୍ରକୃତ ଭଗବଦ୍ ଭକ୍ତ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଯୋଗେଶ୍ୱର ହରି ମହାରାଜ ଜନକ ପଚାରିବାରୁ ତାଙ୍କୁ ଭଗବଦ୍‌ଭକ୍ତଙ୍କ ଲକ୍ଷଣ କହୁଛନ୍ତି । ସେ କହିଲେ, ''ରାଜନ୍ ! ଗୋଟିଏ ରାଗକୁ ହଜାରେ ଥର, ଲକ୍ଷେ ଥର ବୋଲିବା ଦ୍ୱାରା ତାହା ଅଭ୍ୟାସରେ ପଡ଼ିଯାଏ, ହୃଦୟଙ୍ଗମ ହୋଇଯାଏ; ଏହାପରେ ସ୍ୱପ୍ନରେ ବି ତାହା ଭୁଲି ହୁଏନାହିଁ । ପିଲାଟିଏ ଯେତେବେଳେ ଜନ୍ମ ଗ୍ରହଣକରେ ସେତେବେଳେ ତା'ର ନାଁ, ଗାଁ, ଜାତି, ସମ୍ବନ୍ଧ ଆଦି କୌଣସି ପ୍ରକାର ଅହଂକାର ନଥାଏ । ସେତେବେଳେ ତା' ନିଜର ନା କୌଣସି ନାମ ଥିଲା; ନା ଜାତି, ନା କାହା ସହିତ କୌଣସି ସମ୍ବନ୍ଧ । ମାତା-ପିତାଙ୍କ ସହିତ ସମ୍ବନ୍ଧିତ ହୋଇଯିବା ପରେ ତା'ର ଅନେକ ସମ୍ବନ୍ଧ ହୋଇଯାଏ; ତା'ର ଗୋଟିଏ ନାମ ରଖାହୁଏ, ମାତା ପିତାଙ୍କ ଜାତି ସହିତ ତା' ଜାତି ସ୍ଥିରୀକୃତ ହୋଇଯାଏ । ଜଣକୁ ଚିହ୍ନାଇ ଦିଆହୁଏ ଯେ, 'ଇଏ ତୋର ଦଦେଇ' । ଏହା ପରଠାରୁ ସେହି ଲୋକକୁ ଦଦେଇ ଦଦେଇ ଏପରି ଅନେକ ଥର କହିବା ଦ୍ୱାରା ତା'ର ଅଭ୍ୟାସରେ ପଡ଼ିଯାଏ । ବଡ଼ ହେଲେ ସେ ଏହା ଭୁଲିପାରେ ନାହିଁ । ଏହିଭଳି ଦେବଦତ୍ତ ଶର୍ମା, ଯଜ୍ଞଦତ୍ତ ଶର୍ମା, ବିଶ୍ୱାମିତ୍ର ଗୁପ୍ତ, ଗୋବର୍ଦ୍ଧନ ଦାସ ଏପରି ନାମ ରଖାଯାଏ । ଅନବରତ କହି କହି ନିଜ ଭିତରେ ଏ ସମସ୍ତର ଏପରି ଅଭ୍ୟାସ ହୋଇଯାଏ ଯେ, ମୃତ୍ୟୁ ପର୍ଯ୍ୟନ୍ତ ଏହି ସଂସ୍କାର ଲିଭାଇ ହୁଏନାହିଁ । ଆଉ ଏଥିଯୋଗୁ ବାରମ୍ବାର ଜନ୍ମ ନେବାକୁ ହୋଇଥାଏ । ଅନବରତ ଅଭ୍ୟାସ ଫଳରେ ଏହି ଶରୀର ସହିତ ଆତ୍ମବୁଦ୍ଧି ହୋଇଯାଏ, ମୁଁ ମୋ ପଣିଆ; ତୁ ତୋ ପଣିଆ ଦୃଢ଼ ହୋଇଯାଏ; ଫଳରେ ଏହି ଶରୀରକୁ 'ମୁଁ' ବୋଲି ଦୃଢ଼ ଧାରଣା ହୋଇଯାଏ । ଯେପରି ମୋର ବସ୍ତ୍ର, ମୋର ଘର କହିବା ଦ୍ୱାରା ମୁଁ ଭିନ୍ନ, ଘର ଭିନ୍ନ, ବସ୍ତ୍ର ଭିନ୍ନ ହୋଇଥାଏ; ଠିକ୍ ସେହିଭଳି ମୋର ଶରୀର, ମୋର ଇନ୍ଦ୍ରିୟ, ମୋ ମନ, ମୋ ବୁଦ୍ଧି ଆଦି କହିବା ଫଳରେ 'ମୁଁ' ଏହି ଶରୀର, ଇନ୍ଦ୍ରିୟ ତଥା ଅନ୍ତଃକରଣଠାରୁ ପୃଥକ୍; କିଂତୁ ଅଜ୍ଞାନବଶତଃ ଏହି ଶରୀରଠାରେ ଅହଂ ଭାବ ଦୂର ହୋଇଯାଏ । ଭକ୍ତର ଭଗବଦ୍-ଭକ୍ତି କରି କରି ଏହି ଅଜ୍ଞାନ୍ ଦୂର ହୋଇଯାଏ । ଏପରି ଅଜ୍ଞାନ ଯାହାର ଯେତେ ପରିମାଣରେ ଦୂର ହୋଇଥାଏ, ସେ ସେତେ ଅଧିକ ଉନ୍ନତ ଭକ୍ତ ହୋଇଥାଏ । ଯେଉଁ ଭଗବଦ୍‌ଭକ୍ତ ଉଚ୍ଚକୁଳରେ ଜାତହୋଇ ଥିବାରୁ, ଯାଗ ଯଜ୍ଞାଦି ବଡ଼ ବଡ଼ ସତ୍‌କର୍ମ କରୁଥିବାରୁ- ମୁଁ ଶ୍ରେଷ୍ଠ କର୍ମ କରୁଛି, ମୁଁ ଉତ୍ତମ ଆଶ୍ରମରେ ଅଛି, ମୁଁ ଉଚ୍ଚ ଜାତି ବିଶିଷ୍ଟ- ଏ ଭଳି ମିଥ୍ୟା ଅହଂକୃତି କରେ ନାହିଁ, ମୁଁ ସର୍ବଶ୍ରେଷ୍ଠ ବୋଲି ମିଥ୍ୟା ଅହଂଭାବ କରେନାହିଁ- ସେ ହିଁ କେବଳ ଭଗବାନ୍‌ଙ୍କର ପ୍ରିୟ ହୋଇଥାଏ, ସେ ହିଁ ସମସ୍ତଙ୍କଠାରୁ ଶ୍ରେଷ୍ଠ ଭକ୍ତ ହୋଇଥାଏ ।

ରାଜା କହିଲେ, ''ପ୍ରଭୁ ! ଏପରି ସ୍ଥିତି କିଭଳି ହୋଇଥାଏ ? ଜାତି, ବର୍ଣ୍ଣ, ଆଶ୍ରମ, କୁଳ ତଥା ଧନ ଆଦିର ଅହଂକାର ତ ସ୍ୱତଃ ହୋଇଯାଏ ।''

ମହାମୁନି ହରି କହିଲେ, ''ହଁ, ମନକୁମନ ହୋଇଯାଏ । ହେଲେ ଏହା ନ ହେବାକୁ ତ ଚେଷ୍ଟା କରାଯିବା ହେଉଛି ସାଧନା । ସମଦର୍ଶୀ ଭାବନାରେ ଏହା ଦୂର ହୋଇଯାଏ । ଆମପାଖରେ ଯେଉଁ ସୁନା, ଧନ ଆଦି ଅଛି ତାକୁ ହାତରେ ଧରି ନିଜେ ନିଜକୁ ପଚାରିବା, 'ମୁଁ ଏ ସମସ୍ତକୁ ମୋର ବୋଲି କହୁଛି; ପୂର୍ବେ ଏହା ମୋ ପାଖରେ ନଥିଲା, ବାପା ଏ ସବୁ ଦେଇଛନ୍ତି । ବାପା ଏହାକୁ ବଣିଆ ଘରୁ ଆଣିଥିଲେ, ବଣିଆକୁ ଅମୁକ ଲୋକ ବିକ୍ରୀ କରିଥିଲା; ଅମୁକ ଚୋର ରାଜାଙ୍କ ଘରୁ ଏହି ସୁନା ପ୍ରଥମେ ଚୋରାଇ ଆଣିଥିଲା; ମୋ ପୂର୍ବରୁ ଏହାକୁ କେତେ ନା କେତେ ଲୋକ ମୋର ମୋର ବୋଲି କହିଛନ୍ତି । ଏହି ସୁନା ଯେତେବେଳେ ଏତେ ଲୋକଙ୍କର ହୋଇପାରିଲା ନାହିଁ, ଏବେ ତାହା ମୋର କିପରି ହେବ ! ଏଣୁ ଏଥିରୁ ମମତ୍ୱ ଦୂର କରିଦେବା ଉଚିତ ।

''ବିଷ୍ଣୁମିତ୍ରଙ୍କ ଶରୀର ସତେ କେତେ ସୁନ୍ଦର ନ'ଥିଲା । ନିଜର ସୁନ୍ଦରତା ପ୍ରତି ତା'ର ସତେ କେତେ ଅଭିମାନ ନ ଥିଲା । ଶରୀରରେ ତେଲ ମାଲିସ୍ କରି ତାକୁ କେତେ ସୁନ୍ଦର ଶୃଙ୍ଗାର କରୁନଥିଲା ! ନାନା ପ୍ରକାର ପୁଷ୍ଟିକର ଖାଦ୍ୟ ଖାଇ ତାକୁ ସତେ କେଡ଼େ ପୁଷ୍ଟ ରଖୁନଥିଲା ! ଶେଷରେ ଗୋଟିଏ ଏପରି ଘା' ହୋଇଗଲା ଯେ, ତହିଁରେ ପୋକ ଲାଗିଗଲେ, ଦୁର୍ଗନ୍ଧ ବାହାରିଲା । ଶରୀର ତ୍ୟାଗ କରିଦେଲା । ଆମେମାନେ ତା'ର ସେହି ଶରୀରକୁ ଅଗ୍ନିରେ ପୋଡ଼ି ଦେଲୁ । ତା' ଖପୁରୀ ଏବେ ବି ଗଙ୍ଗା ଘାଟର ବାଲିରେ ପଡ଼ିଛି । ପୂର୍ବେ ସେ କହୁଥିଲା, ମୋ ମସ୍ତକ ଏତେ ଚଉଡ଼ା, ଏଡ଼େ ବିଶାଳ, ଏବେ ସେହି ମସ୍ତକକୁ କୁକୁର ବିଲୁଆ ଏଣେ ତେଣେ ଟାଣିବାରେ ଲାଗିଛନ୍ତି । ଲୋକମାନେ ସେହି ଖପୁରୀକୁ ଲାତ ମାରୁଛନ୍ତି । ତା'ର ଏଡ଼େ ସୁନ୍ଦର ଶରୀର ଯେତେବେଳେ ତା' ସହିତ ଗଲାନାହିଁ, ତେବେ ମୁଁ ଏହି ନାଶବାନ ଶରୀରରେ ମମତ୍ୱ (ମୋ-ପଣିଆ) କାହିଁକି ରଖିବି ! ଅନ୍ୟର ଶରୀରକୁ ପର ବୋଲି କାହିଁକି ମନେକରିବି ! ପ୍ରତ୍ୟେକଙ୍କ ଶରୀର ଏକାଭଳି । ସବୁଥିରେ ରସ, ରକ୍ତ, ମାଂସ, ମଜ୍ଜା, ମେଦ, ଅସ୍ଥି ତଥା ଶୁକ୍ରାଦି ଧାତୁ ଅଛି । ସମସ୍ତଙ୍କର ଆତ୍ମା ହେଉଛି ଏକ । ଏହିଭଳି ଭାବଧାରା ସବୁବେଳେ ରହିଥିଲେ ଶରୀର ହେଉ ଅଥବା ଧନ ହେଉ, ଆପଣା ଓ ପର ଭାବ ଦୂର ହୋଇଯିବ । **ଯିଏ ସକଳ ପ୍ରାଣୀଙ୍କଠାରେ ପରମାତ୍ମାଙ୍କୁ ଦର୍ଶନ କରୁଥାଏ, ସେପରି ଶାନ୍ତ ଚିତ୍ତ ପୁରୁଷଙ୍କ ଦେହରେ ଅହଂଭାବ ନଥାଏ; ସେ ହିଁ ଯଥାର୍ଥରେ ସମସ୍ତ ଭଗବଦ୍ ଭକ୍ତଙ୍କ ଭିତରେ ଶ୍ରେଷ୍ଠ ହୋଇଥାଏ । ସେ ହିଁ ହୋଇଥାଏ ପରମ ଭାଗବତ ।''**

ମହାରାଜ ବିଦେହ କହିଲେ, ''ଭଗବନ୍ ! ଆପଣ ଆମକୁ ପରମ ଭଗବଦ୍‌ଭକ୍ତଙ୍କର

ଗୋଟିଏ ଲକ୍ଷଣ କୁହନ୍ତୁ ଯାହାକୁ ଦେଖି ଆମେ ଭକ୍ତାଗ୍ରଗଣ୍ୟ ବୋଲି ସଙ୍ଗେ ସଙ୍ଗେ ଚିହ୍ନି ପାରିବୁ ।''

ମହାମୁନି ହରି କହିଲେ, ''ରାଜନ୍ ! ଏପରି କସଟି ପଥରତ ମୋ ପାଖରେ ସେପରି କିଛି ନାହିଁ । ଉପରର ବେଶଭୂଷା ଦେଖି ଭଗବଦ୍‌ଭକ୍ତଙ୍କୁ ତ ଚିହ୍ନି ହୋଇପାରେ ନାହିଁ । ଏହା ତ ଅନ୍ତଃକରଣର ସ୍ଥିତି ଉପରେ ନିର୍ଭର କରେ । **ଭଗବଦ୍‌ଚିନ୍ତନରେ ଯାହାର ମନ ଯେତେ ଅଧିକ ତଲ୍ଲୀନ ଥାଏ ସେ ସେତେ ଶ୍ରେଷ୍ଠ ହୋଇଥାଏ ।** ଯିଏ ଯଥାର୍ଥରେ ଭଗବାନ୍‌ଙ୍କ ଭକ୍ତ, ତାକୁ ଯଦି କୁହାଯାଏ ଯେ ତ୍ରିଭୁବନରେ ଯେତେ ରାଜ୍ୟ ଅଛି, ଯେତେ ବୈଭବ ଅଛି, ସେ ସମସ୍ତଙ୍କୁ ଆମେ ଆପଣଙ୍କୁ ଦେଇ ଦେଉଛୁ, ଆପଣ କୃପାକରି ଭଗବାନଙ୍କୁ ଚିନ୍ତା କରିବା ତ୍ୟାଗ କରନ୍ତୁ, ପୂରାପୂରି ଛାଡ଼ି ନ ପାରିଲେ ବି, ଅଧା ସମୟ ଛାଡ଼ନ୍ତୁ । ସେ କଦାପି ତାହା ସ୍ୱୀକାର କରେନାହିଁ । **ପ୍ରଭୁଙ୍କ ପାଦପଦ୍ମକୁ ଯିଏ ମୁହୂର୍ତ୍ତକ ପାଇଁ ବି ଭୁଲିମାନରେ ନାହିଁ; ସ୍ୱପ୍ନରେ ବି ଯେଉଁମାନଙ୍କର ମନ ଧନ ବୈଭବ କଥା ଶୁଣି ସାମାନ୍ୟମାତ୍ର ବିଚଳିତ ହୁଏନାହିଁ; ସେ ହିଁ ହୋଇଥାଏ ଭକ୍ତାଗ୍ରଗଣ୍ୟ । ସେ ହିଁ ହୋଇଥାଏ ଶ୍ରେଷ୍ଠ ଭାଗବତ । ଏହାହିଁ ହେଉଛି ଭକ୍ତଙ୍କୁ ଚିହ୍ନିବାର କସଟି ପଥର ।''**

ଏପରି କଥା ଶୁଣି ରାଜା କିଛି ସମୟ ଚିନ୍ତା କରିବାରେ ଲାଗିଲେ । ଏହାପରେ କହିଲେ, ''ଭଗବନ୍ ! ଆପଣ ତ ଅତି ସୁନ୍ଦର କଥା କହୁଛନ୍ତି । ଆପଣଙ୍କ କଥା ଅନ୍ତଃକରଣକୁ ସ୍ପର୍ଶ ବି କରୁଛି, କିନ୍ତୁ ଏହି ସାଂସାରିକ ସନ୍ତାପ ଏଡ଼େ ପ୍ରବଳ ଯେ ମନ ବିଚଳିତ ହିଁ ହୋଇଯାଏ । ଅତି ଦୁଃଖ ଆସିଯିବା କ୍ଷଣି ଜ୍ଞାନ ଧ୍ୟାନ ଭୁଲି ହୋଇଯାଏ । ଏହି ସଂସାର ସତ୍ୟ ବୋଲି ହିଁ ପ୍ରତୀୟମାନ ହୁଏ ।''

ଏପରି କଥା ଶୁଣି ମହାଯୋଗେଶ୍ୱର ହରି ଅତି ଆବେଗର ସହିତ କହିଲେ, ''ରାଜନ୍ ! ଆପଣ ଏପରି କ'ଣ କହୁଛନ୍ତି, ଏହା ତ ଅଧାପନ୍ତରିଆଙ୍କ କଥା - ଯେଉଁମାନଙ୍କର ଶବ୍ଦଜ୍ଞାନ ଥାଏ ମାତ୍ର ଯଥାର୍ଥ ଜ୍ଞାନ ହୋଇନଥାଏ, ପ୍ରଭୁକୃପା ପୂର୍ଣ୍ଣମାତ୍ରାରେ ଅନୁଭବ ନ ହୋଇଥିବା ଲୋକଙ୍କ କଥା । **ସମସ୍ତଙ୍କ ପାଦ ହାତୀ ପାଦତଳେ ଲୁଚିଯାଏ । ଆମ ଶ୍ୟାମସୁନ୍ଦରଙ୍କର ପାଦ ତଳେ ତ ହାତୀ ପାଦ ବି ଲୁଚିଯାଏ । ସେ ତାଙ୍କର ମାତ୍ର ଦୁଇ ପାଦରେ ସମଗ୍ର ତ୍ରିଭୁବନଙ୍କୁ ମାପି ଦେଇଥିଲେ ବାମନ ଅବତାରରେ ।** ରାଜନ୍ ! ଏକ ବୃହତ୍ ଘରକୁ ଅନ୍ଧକାର ବ୍ୟାପୀ ଥାଏ । ମାତ୍ର ଗୋଟିଏ ଛୋଟିଆ ଦୀପ ସମସ୍ତ ଅନ୍ଧକାରକୁ ଦୂର କରିଦିଏ । ଯାହାଙ୍କ ଅନ୍ତଃକରଣରେ ବଳିକୁ ଚାପିଦେଇ ଥିବା ବାମନ ଭଗବାନଙ୍କର ଏଡ଼େ ବଡ଼ ବଡ଼ ପାଦ ସ୍ଥାପିତ ହୋଇଯାଇଥାଏ, ଆଉ ସେଠାରେ ଗୋଟିଏ ଦୁଇଟି ନୁହଁ, ପୂରା ଦଶ ନଖରୂପ ମଣିର ଦିବ୍ୟ ସୁନ୍ଦର ଶୀତଳ ପ୍ରକାଶ ବ୍ୟାପୀ ଯାଇଥିବ ତା'ର ଦିବ୍ୟ କାନ୍ତି ସମ୍ମୁଖରେ ଆପଣ ବି

ଭାବିକି କୁହନ୍ତୁ, ଅନ୍ଧକାର ରହିବା ସମ୍ଭବ କି ? କାମ-କ୍ରୋଧାଦିର ପ୍ରଭାବ ତା' ଉପରେ କିପରି ପଡ଼ି ପାରିବ ? କାମ କ୍ରୋଧରୂପୀ ପ୍ରଚଣ୍ଡ ସୂର୍ଯ୍ୟ ତ ସେ ପର୍ଯ୍ୟନ୍ତ ସନ୍ତାପିତ କରିଥାନ୍ତି, ଯେ ପର୍ଯ୍ୟନ୍ତ ଶୀତଳ ଜ୍ୟୋତ୍ସ୍ନା ବିଚ୍ଛୁରିତ୍ କରୁଥିବା ଚନ୍ଦ୍ରଦେବ ଉଦୟ ହୋଇନଥାନ୍ତି ସେଠାରେ କ'ଣ ସୂର୍ଯ୍ୟଙ୍କ ସନ୍ତାପ ରହିପାରେ ? ଅନ୍ତଃକରଣରେ ଭଗବାନ ପ୍ରବେଶ କରିବା ବିଳମ୍ବ ହୋଇଥାଏ । କିନ୍ତୁ ଯାହାଙ୍କ ହୃଦୟରେ ସେ ପ୍ରବେଶ କରିଯାଇଥା'ନ୍ତି, ଯେଉଁଠାରେ ସେ ତାଙ୍କର ଆସନ ଜମାଇ ଦେଇ ଥାଆନ୍ତି, ସେହିଠାରେ ସକଳ ପ୍ରକାର ଶୋକ ସନ୍ତାପ, ଅଜ୍ଞାନ ତଥା ମୋହ ଆଦି ପଳାୟନ କରେ । ଯେପରି ସିଂହର ହେଣ୍ଟାଳ ଶୁଣିବାକ୍ଷଣି ଶୃଗାଳ ପଳାୟନ କରେ, ସେହିପରି ଭଗବାନଙ୍କର ପଦର ଝଲକ ଯେଉଁଠାରେ ଦୃଶ୍ୟ ହୋଇଯାଏଁ, ସେଠାରୁ ସମସ୍ତ କାମାଦି ଚୋର ପଳାୟନ କରିଥା'ନ୍ତି ।''

ରାଜା କହିଲେ, ''ଭଗବନ୍ ! ଭଗବାନ୍ ହୃଦୟକୁ ଆସିଲେତ ? ସେ ତ ବଡ଼ ନଟଖଟିଆ । ସେ କାହିଁକି ଆମ ଭଳି ପାପୀଙ୍କୁ କୃପା କରନ୍ତେ ? ସେ କାହିଁକି ଆମଭଳି ମଳିନ ଅନ୍ତଃକରଣକୁ ଆସନ୍ତେ ?''

ମହାମୁନି ହରି କହିଲେ, ''ରାଜନ୍ ! କଥାଟା ସେୟା ନୁହେଁ । ଭଗବାନ ଅତି କୃପାଳୁ । ଦେଖନ୍ତୁ, ଅଜାମିଳ ବିବଶତାରେ-ଯମଦୂତଙ୍କୁ ଡରି ନାରାୟଣ ନାମରେ ନିଜ ପୁଅକୁ ଡାକ ପକାଇଲା । ନାରାୟଣ ନାମ ଶୁଣିବାକ୍ଷଣି ଭଗବାନ ତାଙ୍କ ଦୂତଙ୍କୁ ପଠାଇଦେଲେ । ଆଉ ତା'ର ପୂର୍ବର ସକଳ ପାପ ନାଶ କରିଦେଲେ । ଗଣିକାର ଶୁଆ ରାମ ନାମ ଜପ ତ କରୁଥିଲା, ହେଲେ ରାମନାମରେ ତା' ଭାବ ନଥିଲା । ତେବେ ସେ ରାମ ନାମ କୌଣସି ପ୍ରକାର ଉଚ୍ଚାରଣ କରୁଥିବାରୁ ଭଗବାନ୍ ତାକୁ ବି ସଦଗତି ଦେଇଥିଲେ । **ଯେଉଁ ଭଗବାନ୍ ଏଡ଼େ କୃପାଳୁ, ବିବଶତାରେ ଜପ କରିଥିଲେ ବି ଯିଏ ଜାପକର ସକଳ ପାପ ନାଶ କରନ୍ତି, ତାଙ୍କୁ ପ୍ରେମରେ ଡାକିଲେ ସେ କ'ଣ ଦୌଡ଼ି ଆସନ୍ତେ ନାହିଁ ?** ସେହି ପରମ କୃପାଳୁ ପ୍ରେମ ପାଶରେ ପଡ଼ି ଆମ ହୃଦୟରେ କାହିଁକି ବିରାଜମାନ ନ କରିବେ ? **ଭଗବାନ ପୂଜା ସାମଗ୍ରୀ ନିମନ୍ତେ ଭୋକିଲା ନୁହନ୍ତି । ସେ ସବୁବେଳେ ପ୍ରେମ ନିମନ୍ତେ ବ୍ୟାକୁଳ ଥାଆନ୍ତି । ପ୍ରେମ ଦେଖିବା କ୍ଷଣି ସେ ବନ୍ଧନରେ ପଡ଼ିଯାଆନ୍ତି ।** ଭକ୍ତଗଣ ନିଜର ପ୍ରେମ ରୂପକ ଦୃଢ଼ ରଜ୍ଜୁରେ ତାଙ୍କର ଚରଣାରବିନ୍ଦକୁ ଦୃଢ଼ତାର ସହିତ ବାନ୍ଧି ଦିଅନ୍ତି । ସେ ବି ଏଡ଼େ ସରଳ ଯେ ନିଜେ ପ୍ରସନ୍ନତାପୂର୍ବକ ବାନ୍ଧି ହୋଇଯାଆନ୍ତି, ଆଉ ସେପରି ଭଗବଦ୍‌ଭକ୍ତର ହୃଦୟକୁ କେତେବେଳେ ବି ଛାଡ଼ି ଯାଆନ୍ତି ନାହିଁ । ଏପରି ଦୟାଳୁ, କୃପାଳୁ ପ୍ରଭୁଙ୍କୁ ଯିଏ ପ୍ରେମରେ ବାନ୍ଧି ଦେଇଥାଏ, ସେ ହିଁ ପରମ ଭାଗବତ ହୋଇଥାଏ । ସେ ହିଁ ପ୍ରପନ୍ନ ହୋଇଥାଏ, ସେ ହିଁ ଶ୍ରେଷ୍ଠ ଭଗବଦ୍ ଭକ୍ତ ହୋଇଥାଏ, ସେ ହିଁ ଭକ୍ତାଗ୍ରଗଣ୍ୟ ହୋଇଥାଏ । ରାଜନ୍ ! ମୁଁ ଅତି ସଂକ୍ଷେପରେ ପରମ ଭଗବଦ୍ ଭକ୍ତଙ୍କର କିଛି ମହିମା କହିଲି । ଏବେ ଆପଣ ଆଉ କ'ଣ ପଚାରିବାକୁ ଚାହୁଁଛନ୍ତି ।''

ଯୋଗେଶ୍ୱର ହରିଙ୍କ କଥା ଶୁଣି ମହାରାଜ ଜନକ କହିଲେ, ''ଭଗବନ୍ ! ସଂସାରୀ ସନ୍ତାପରେ ସନ୍ତପ୍ତ ମୁଁ ଏକ ଅତ୍ୟନ୍ତ ଦୀନ-ହୀନ ମରଣଧର୍ମୀ ମନୁଷ୍ୟ । ମୁଁ ରୋଗୀ ଆଉ ଆପଣ ସର୍ବୋତ୍ତମ ଅନୁଭବୀ ବୈଦ୍ୟ । ମୁଁ ଭବରୋଗ ରୂପୀ ଜ୍ୱରରେ ଛଟପଟ ହେଉଛି, ଆଉ ଆପଣଙ୍କ ପାଖରେ ହରିକଥା ରୂପୀ ଅମୃତମୟୀ ଅବ୍ୟର୍ଥ ଅତି ଉତ୍ତମ ଔଷଧ ଅଛି । କୃପାକରି ସେହି ମଧୁର ମଧୁର ଔଷଧରୁ ମୋତେ ପେଟେ ହେବ ଦିଅନ୍ତୁ । ଆପଣ ଚଳୁ କରିବା ଭଳି ଟିକିଏ ଟିକିଏ ଦେଉଥିବାରୁ ମୁଁ ତୃପ୍ତ ହୋଇପାରୁ ନାହିଁ । ବରଂ ମୋର ତୃଷା ଅଧିକରୁ ଅଧିକ ବଢ଼ିବାରେ ଲାଗିଛି ।''

ଏପରି କଥା ଶୁଣି ଯୋଗେଶ୍ୱର ହରି କହିଲେ, ''ରାଜନ୍ ! ଆପଣ ଯାହା ପଚାରିବେ ମୁଁ ତା'ର ଉତ୍ତର ଦେବି । ଆପଣ କ'ଣ ଜାଣିବାକୁ ଚାହୁଁଛନ୍ତି ?''

ରାଜା କହିଲେ, ''ବ୍ରହ୍ମନ୍ ! ଆପଣ କେତେଥର 'ଭଗବାନଙ୍କ ମାୟା' 'ଭଗବାନଙ୍କ ମାୟା' ବୋଲି କହିଛନ୍ତି । ଭଗବାନଙ୍କର ମାୟା ପ୍ରସଙ୍ଗରେ ଆପଣ ବି ଅନେକ କଥା କହିଛନ୍ତି । ବାସ୍ତବରେ ଏହି ମାୟା ଅତି ପ୍ରବଳ । ଏହା ବଡ଼ ବଡ଼ ମାୟାବୀଙ୍କୁ ବି ବିମୋହିତ କରିଦିଏ । ଭଗବାନଙ୍କର ସେହି ମାୟା ବିଷୟରେ ମୁଁ ଜାଣିବାକୁ ଚାହୁଁଛି । କୃପାକରି ଆପଣ ସେହି ମାୟା ବିଷୟରେ କୁହନ୍ତୁ ।''

ଏହା ଶୁଣି ଭଗବାନ୍ ହରି ହସିବାରେ ଲାଗିଲେ । ସେ କହିଲେ, ''ରାଜନ୍ ! ମାୟା କଥା କ'ଣ କହିବି ! ତେବେ ବି ମୋର ଏହି ସାନ ଭାଇ ଅନ୍ତରୀକ୍ଷ ଆପଣଙ୍କୁ ଏହି ବିଷୟରେ ଉପଦେଶ ଦେବେ । ମାୟାର ବ୍ୟାଖ୍ୟା କରିବାରେ ଇଏ ବଡ଼ ନିପୁଣ ।''

ମହାପ୍ରାଜ୍ଞ ସୂତ କହିଲେ, ''ହେ ମୁନିଗଣ ! ଯୋଗେଶ୍ୱର ହରି ତାଙ୍କ ସାନଭାଇ ଅନ୍ତରୀକ୍ଷଙ୍କୁ ଇଙ୍ଗିତ କରି ନୀରବ ରହିଲେ । ରାଜା ଅତି ନମ୍ରତାର ସହିତ ଯୋଗେଶ୍ୱର ଅନ୍ତରୀକ୍ଷଙ୍କୁ ଚାହିଁବାରେ ଲାଗିଲେ । ମହାମୁନି ଅନ୍ତରୀକ୍ଷ ମାୟାର ସ୍ୱରୂପ ବିଷୟ ଯେଉଁଭଳି ବର୍ଣ୍ଣନା କଲେ ମୁଁ ତାହା ଆପଣମାନଙ୍କୁ ଶୁଣାଉଛି । ଆପଣମାନେ ଶୁଣନ୍ତୁ ।''

### ଛପ୍ପୟ

*ବୋଲେ ମୈଥିଳଭୂପ-ନାଥ ! ମମ ରୋଗ ମିଟାଓ ।*
*କୃଷ୍ଣ କଥାମୃତ ମଧୁର ସରସ କଛୁ ଅଧିକ ପିଆଓ ।।*
*ହୋହି ନ ମୋରୀ ତୃପ୍ତି ଚାରୁ ପ୍ରଭୁ ଚରିତ ସୁନାବେ ।*
*ମାୟା ଅତି ବଲବତୀ ବତାଇ ତିହି ସମୁଝାବେଁ ।*
*ଅନ୍ତରୀକ୍ଷ ବୋଲେ ତବହିଁ, ତ୍ରିଗୁନମୟୀ ମାୟା ପ୍ରବଲ ।*
*ସର୍ଗ ସ୍ଥିତି ଲୟକରିନୀ, ସୃଜତି ବାୟୁ, ଭୂ, ଜଲ ଅନଲ ।।*



# ଭଗବାନଙ୍କ ମାୟାର ବର୍ଣ୍ଣନା

**ଏଷା ମାୟା ଭଗବତଃ ସର୍ଗସ୍ଥିତ୍ୟନ୍ତକାରିଣୀ ।**
**ତ୍ରିବର୍ଣ୍ଣା ବର୍ଣ୍ଣିତାସ୍ମାଭିଃ କିଂ ଭୂୟଃ ଶ୍ରୋତୁମିଚ୍ଛସି ॥☆**

(ଶ୍ରୀ ଭା. ୧୧ସ୍କ. ୩ଅ. ୧୬ ଶ୍ଳୋକ)

**ଛପ୍ପୟ**

*ହରି ସ୍ୱରୂପ ନିଜ ଜୀବ ଭୋଗ ଅରୁ ମୋକ୍ଷ କରନ କୁଁ ।*
*ପଂଚଭୂତ ତେଂ ରଚେ ଦୀର୍ଘ ଅରୁ ଲଘୁ ପ୍ରାନନି କୁଁ ॥*
*ତିନି ସବ ମହଁ ପ୍ରଭୁ ପ୍ରବିଶି କରନ, ମନ ବନି ଭୋଗନି କୁଁ ।*
*ଭୋଗେଁ ହ୍ୱେଁ ଆସକ୍ତ ଆତମା ମାନୈ ଇନ କୁଁ ॥*
*କରମ ବାସନା ଯୁକ୍ତ ହ୍ୱେଁ, କେଂ ଭଟକୈ ସଂସାର୍‌ମହଁ ।*
*ପୁନି ପୁନି ଜନମୈ ପୁନି ମରୈ, ପରେୟା ପ୍ରବାହ ଅସାରମହଁ ॥*

ଭଗବାନ ହେଉଛନ୍ତି ନିତ୍ୟ, ଶୁଦ୍ଧ, ବୁଦ୍ଧ, ଅଜ, ଅବ୍ୟକ୍ତ, ବିକାର ରହିତ ତଥା ଶାଶ୍ୱତ । ସେଥିରେ ବୃଦ୍ଧି ନାହିଁ କି ହ୍ରାସ ନାହିଁ, ଅପଚୟ ନାହିଁ କି ଉପଚୟ ନାହିଁ । ତାହା ସବୁବେଳେ ଏକରସ ଥାଏ ତଥା ଆତ୍ମକାମ, ଆତ୍ମକ୍ରୀଡ଼ା କରୁଥାଏ । ସେ ଆନନ୍ଦ ସ୍ୱରୂପ, ଆନନ୍ଦାନୁଭବ କରିବା ପାଇଁ ତାଙ୍କର ଅନ୍ୟ ଉପକରଣର ଆବଶ୍ୟକତା ନଥାଏ । ତେବେ ବି ସେ ତାଙ୍କର ମାୟାକୁ ଆଶ୍ରୟ କରି ଏହି ସଂସାରକୁ ରଚନା କରିଥା'ନ୍ତି, ଆଉ ଗୋଟିଏ ରୂପରୁ ଅନେକ ରୂପ ହୋଇ ନାନା ପ୍ରକାର କ୍ରୀଡ଼ା କରନ୍ତି । ଯିଏ ଖେଳକୁ ଖେଳ ବୋଲି ଭାବନ୍ତି ସେମାନେ ହସିଦିଅନ୍ତି; ହେଲେ ଯିଏ ଖେଳକୁ ସତ୍ୟ ବୋଲି ଭାବେ ସେ ମାୟାର ଚକ୍ରରେ ପଡ଼ିଯାଆନ୍ତି । ବିନା ମାୟାର ସ୍ୱରୂପ ଜାଣ ଭଗବାନ ବି ଜାଣି ହୁଅନ୍ତି ନାହିଁ ।

---

☆ ଏ ବିଷ୍ଣୁ ମାୟାର ବିଧାନ । ଶୁଣ ହେ ବିଦେହ ରାଜନ ॥
ଯେ ନିରାକାର ଆଦିକନ୍ଦ । ନିର୍ଗୁଣ ନିତ୍ୟ ସୁଖାନନ୍ଦ ॥
ଅନାଦି ନିଧନ ସେ ହରି । ସୃଷ୍ଟି ପ୍ରଳୟ ଅଧିକାରୀ ॥
ଏ ବିଷ୍ଣୁ ମାୟାର କାରଣ । ସୃଷ୍ଟି ପାଳନ ସଂହାରଣ ॥
ଏମନ୍ତ ଅନ୍ତରୀକ୍ଷ ବାଣୀ । ଜନକ ବୋଲେ ତାହା ଶୁଣି ॥

(ଭାଗବତ : ଜଗନ୍ନାଥ ଦାସ: ୧୧ଶ ସ୍କ. ୪ର୍ଥ ଅ.)

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ଜନକ ଯେତେବେଳେ ଯୋଗେଶ୍ୱରଙ୍କୁ ମାୟା ସମ୍ବନ୍ଧରେ ପ୍ରଶ୍ନ କଲେ, ସେତେବେଳେ ନ' ଯୋଗେଶ୍ୱରଙ୍କ ଭିତରୁ ଅନ୍ତରୀକ୍ଷ କହିଲେ, ''ରାଜନ୍ ! ଆପଣ ମୋତେ ପ୍ରାଣୀଙ୍କୁ ମୋହିତ କରିଦେଉଥିବା ମାୟା ସମ୍ବନ୍ଧରେ ପ୍ରଶ୍ନ କରିଛନ୍ତି, ମୁଁ ସେହି ମାୟା ସମ୍ବନ୍ଧରେ କ'ଣ ବା କହିବି ! **ଯାହା ବାସ୍ତବରେ ନ ଥାଇ ସୁଦ୍ଧା ଥିବା ଭଳି ଆଭାସିତ ହେଉଥାଏ, ତାହା ମାୟା । ତୁମେ ଯେଉଁ ଦୃଶ୍ୟ ପ୍ରପଞ୍ଚକୁ ଦେଖୁଛ, ଶୁଣୁଛ ଆଉ ଅନୁଭବ କରୁଛ, ସେ ସମସ୍ତ ହେଉଛି ମାୟିକ ।''**

ରାଜା ପଚାରିଲେ, ''ଭଗବନ୍ ! ଭଗବାନ ଏହି ପ୍ରପଞ୍ଚର ରଚନା କଲେ କାହିଁକି ?''

ଅନ୍ତରୀକ୍ଷ କହିଲେ, ''ଜୀବଙ୍କର ଭୋଗ ନିମନ୍ତେ ତଥା ମୋକ୍ଷ ନିମନ୍ତେ ଭଗବାନ ଏହି ପ୍ରପଞ୍ଚକୁ ରଚନା କରିଛନ୍ତି ।''

ରାଜା କହିଲେ, ''ମହାରାଜ ! ଜୀବ କ'ଣ ?''

ଅନ୍ତରୀକ୍ଷ କହିଲେ, ''**କର୍ମ ଫଳକୁ ଭୂକ୍ଷଣ କରିବାକୁ ଇଚ୍ଛା କରିଥିବା ତିନି ଦେହର ଅଧିଷ୍ଠାତୃଦେବ ଭଗବାନଙ୍କ ଚୈତନ୍ୟାଂଶଙ୍କର ନାମ ହେଉଛି ଜୀବ ।** ତାହାକୁ ଅବିଦ୍ୟା ସମ୍ବନ୍ଧରେ ଅନାଦି ବନ୍ଧନ ପ୍ରାପ୍ତି ହୁଏ, ଆଉ ବିଦ୍ୟାରେ ମୋକ୍ଷ ମିଳେ । ଏହି ଜୀବକୁ ଖେଳ ଖେଳାଇବା ପାଇଁ ବନ୍ଧ-ମୋକ୍ଷର ନାଟକ କରିବା ନିମିତ୍ତ- ଏହି ଦୃଶ୍ୟ ପ୍ରପଞ୍ଚର ସ୍ରଜନ ଶ୍ୟାମସୁନ୍ଦର କରିଥା'ନ୍ତି ।''

ରାଜା କହିଲେ, ''ମହାରାଜ ! ସଂସାରରେ ତ ଅସଂଖ୍ୟ ଅଗଣିତ ପ୍ରାଣୀ ଅଛନ୍ତି । ଏ ସମସ୍ତଙ୍କୁ ଭଗବାନ କିପରି ତିଆରି କରନ୍ତି ? ଏହି ଚିତ୍ର-ବିଚିତ୍ର ଜଗତକୁ ଭଗବାନ ବସିରହି କିପରି ତିଆରି କରୁଥିବେ ?''

ମୁନି କହିଲେ, ''ରାଜନ୍ ! ଆପଣ ଯେତେ ଦେହଧାରୀ ଦେଖୁଛନ୍ତି- ଦେବତା, ଋଷି, ମୁନି, ପ୍ରଜାପତି, ତଥା ବ୍ରହ୍ମା ଆଦିଙ୍କ ସମ୍ବନ୍ଧରେ ଶୁଣୁଛନ୍ତି, ସମସ୍ତଙ୍କର ଶରୀର ପଞ୍ଚଭୂତରେ ହୋଇଥିବା ହେତୁ ଏହାର ନାମ ହୋଇଛି ପ୍ରପଞ୍ଚ । ସେହି ଆଦି ଦେବ ସର୍ବଭୂତାତ୍ମା ଶ୍ରୀମନ୍ନ-ନାରାୟଣ ହିଁ ନିଜେ ରଚନା କରିଥିବା ପଞ୍ଚଭୂତରେ କ୍ଷୁଦ୍ରାତିକ୍ଷୁଦ୍ର ନିକୃଷ୍ଟଠାରୁ ନିକୃଷ୍ଟ ଓ ବୃହତ୍‌ରୁ ଅତି ବୃହତ୍, ଉତ୍କୃଷ୍ଟ ଠାରୁ ଉତ୍କୃଷ୍ଟ ପ୍ରାଣୀଙ୍କୁ ସୃଷ୍ଟି କରିଛନ୍ତି । କୀଟାଣୁ ଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସମସ୍ତ ହେଉଛି ତାଙ୍କ ମାୟାର ବିଳାସ ।''

ରାଜା ପଚାରିଲେ, ''**ଏହି ପଞ୍ଚଭୂତରେ ନିର୍ମିତ ହୋଇଥିବା ଶରୀର ଜଡ଼ ନା ଚୈତନ୍ୟ ?''**

ମୁନି କହିଲେ, ''ପଞ୍ଚଭୂତରେ ଯେତେ ପସରା ଅଛି, ସମସ୍ତ ହେଉଛି ଜଡ଼ ।''

ରାଜା ପଚାରିଲେ, ''**ତେବେ ଜଡ଼କୁ ଚୈତନ୍ୟ କିପରି ଆସିଲା ?**''

ମୁନି କହିଲେ, ''ରାଜନ୍ ! ଏହି ପଞ୍ଚମହାଭୂତରେ ରଚିତ ସାନ-ବଡ଼ ସକଳ ପ୍ରାଣୀଙ୍କଠାରେ ହିଁ ଜୀବ ରୂପରେ ସେ ପ୍ରବେଶ କରି ଯାଆନ୍ତି ।''

ରାଜା କହିଲେ, ''ତେବେ ଉପଭୋଗ କିପରି କରୁଛନ୍ତି ? **ଶବ୍ଦ, ରୂପ, ରସ, ଗନ୍ଧ ଆଉ ସ୍ପର୍ଶ- ଏ ସବୁତ ଜଡ଼ । ଜଡ଼କୁ ଜଡ଼ ଉପଭୋଗ କିପରି କରେ ।**''

ମୁନି କହିଲେ, ''ଦେଖନ୍ତୁ ରାଜନ୍ ! ଚୈତନ୍ୟାଂଶ ଜୀବ ରୂପରେ ହିଁ ଭଗବାନ ଏଗାର ରୂପରେ- ଏକ ମନ ଆଉ ଦଶ ଇନ୍ଦ୍ରିୟରେ - ବିଭକ୍ତ ହୋଇ - ବିଷୟକୁ ଉପଭୋଗ କରନ୍ତି । ଇନ୍ଦ୍ରିୟମାନେ ପ୍ରକାଶହୀନ ଜଡ଼, ଏ କଥା ସତ୍ୟ ହେଲେ ଏମାନେ ଆତ୍ମାଠାରୁ ପ୍ରକାଶ ପାଆନ୍ତି । ଆତ୍ମାଠାରୁ ପ୍ରକାଶ ପାଇ ଇନ୍ଦ୍ରିୟମାନଙ୍କ ଦ୍ୱାରା ଜୀବାତ୍ମା ସେହି ସେହି ଇନ୍ଦ୍ରିୟଙ୍କ ବିଷୟ ସମୂହକୁ- ଉପଭୋଗ କରନ୍ତି । ଉପଭୋଗ କରିବା ଦ୍ୱାରା ଜୀବାତ୍ମା ଅନାଦି ଅବିଦ୍ୟା ହେତୁ ଏହି ପଞ୍ଚଭୂତରେ ନିର୍ମିତ ଏହି ଶରୀରାଦିକୁ ହିଁ ଆତ୍ମା ବୋଲି ଗ୍ରହଣ କରିଥାଏ । ଏଥିରେ ତା'ର ଆସକ୍ତି ହୋଇଯାଏ । ଯେପରି, ଜଣେ ଘୋଡ଼ାରେ ଚଢ଼ି କାଶୀକୁ ଗଲା, ବାଟରେ ସେ ସୁନ୍ଦର ସୁନ୍ଦର ଫଳ ପୁଷ୍ପ ଭରା ବନ ଉପବନ ଦେଖିଲା, ମିଠା ମିଠା ଫଳ ବି ଖାଇଲା । ଏପରି ସ୍ୱାଦିଷ୍ଟ ଫଳ ଖାଉ ଖାଉ ସେ କାଶୀ ଯାତ୍ରା ଭୁଲିଗଲା । ଆଉ ଫଳର ସ୍ୱାଦ ସେତେବେଳେ ତା'ର ମୁଖ୍ୟ ଧେୟ ହୋଇଗଲା । ଏବେ ଗୋଟିଏ ଗଛରୁ ଫଳ ଚାଖି ଆଉ ଏକ ଗଛର ଫଳ ଚାଖିଲା ଏବଂ ପରେ ଆଉ ଏକ ଗଛର ଫଳ ପାଇଁ ଇଚ୍ଛା କଲା । ଏହିଭଳି ଲକ୍ଷ୍ୟଭ୍ରଷ୍ଟ ହୋଇ ଏଣେ ତେଣେ ପଥଭ୍ରଷ୍ଟ ହେବାରେ ଲାଗିଲା ।''

ରାଜା କହିଲେ, ''ଇନ୍ଦ୍ରିୟଙ୍କ ବିଷୟରେ ଜୀବର ତ କୌଣସି ସମ୍ବନ୍ଧ ନାହିଁ; ସେପରି ସ୍ଥଳରେ ସେ ବାନ୍ଧି ହୋଇଯାଉଛି କିପରି ?''

ଅନ୍ତରୀକ୍ଷ ମୁନି ହସି ହସି କହିଲେ, ''ରାଜନ୍ ! ସମ୍ବନ୍ଧ କାହା ସହିତ କାହାର ଅଛି ? ମନ ମାନିଗଲେ ସମ୍ବନ୍ଧ ହୋଇଯାଏ । ଜଣେ ବ୍ୟକ୍ତି ଗୋଟିଏ ଦେଶରେ ଉତ୍ପନ୍ନ ହୋଇଥାଏ, ଆଉ ଜଣେ ଆଉ ଏକ ଦେଶରେ । ସେମାନଙ୍କର ଜାତି ଭିନ୍ନ, ଧର୍ମ ଭିନ୍ନ, ରୂପ ରଙ୍ଗ ଚାଲି ଚଳନ ଭିନ୍ନ, ତେବେ ବି ମିତ୍ରତା ହୋଇଯାଏ । ଜଣଙ୍କର ସୁଖ ଦୁଃଖକୁ ଅନ୍ୟ ଜଣେ ନିଜର ବୋଲି ଭାବେ । ପୁଅ କେଉଁଠି ତ ଝିଅ ଅନ୍ୟ କେଉଁଠି ଜନ୍ମ ହୋଇଥା'ନ୍ତି । ଦୁହେଁ ସମ୍ବନ୍ଧ ବାନ୍ଧି ପତି-ପତ୍ନୀ ହୋଇଯାଆନ୍ତି । ଜଣେ ଦୁଃଖୀ ହେଲେ ଅନ୍ୟ ଜଣକ ବି ଦୁଃଖୀ ହୋଇଯାଏ । ଜଣେ ସୁଖୀ ହେଲେ ଅନ୍ୟ ଜଣେ ସୁଖୀ ହୋଇଥା'ନ୍ତି । ଧର୍ମ କାର୍ଯ୍ୟ କଲାବେଳେ ବି ଦୁହେଁ ଛନ୍ଦା ଛନ୍ଦି ହୋଇ କରନ୍ତି । ଏହିଭଳି ଜୀବ ଶରୀରକୁ ଆତ୍ମା ବୋଲି ମନେକରିବାରେ ଲାଗିଛି । କର୍ମେନ୍ଦ୍ରିୟରେ ବାସନାଯୁକ୍ତ

ହୋଇ କର୍ମ କରେ । ସେଥିରେ ଯେଉଁ ସୁଖ-ଦୁଃଖ ହୁଏ ତାହାକୁ ନିଜେ କରିଥାଏ ବୋଲି ଭାବେ । କର୍ତ୍ତା ହେଲେ ତ ତାହାର ଫଳ ବି ଭୋଗ କରିବାକୁ ହୋଇଥାଏ । ଏଣୁ ନିଜେ କରିଥିବା କର୍ମର ଫଳ ଭୋଗ କରିବା ପାଇଁ ଗୋଟିଏ ଯୋନିରୁ ଦ୍ୱିତୀୟ ଯୋନିକୁ, ଦ୍ୱିତୀୟ ଯୋନିରୁ ତୃତୀୟ ଯୋନିକୁ- ଏପରି ଚୌରାଶୀ ଯୋନିକୁ ଯାଇ ଘୂରୁଥାଏ, ଆଉ ଯେ ପର୍ଯ୍ୟନ୍ତ ଏହି ସୃଷ୍ଟି ଥାଏ ସେ ପର୍ଯ୍ୟନ୍ତ ସେ ଏହିପରି ଘୂରୁଥାଏ ।''

ରାଜା ପଚାରିଲେ, ''ଭଗବନ୍ ! ଏହି **ସୃଷ୍ଟି ହୋଇଛି କିପରି ?''**

ମୁନି କହିଲେ, ''ରାଜନ୍ ! ଏହି ସଂପୂର୍ଣ୍ଣ ସୃଷ୍ଟି ଭଗବାନଙ୍କର ତ୍ରିଗୁଣମୟୀ ମାୟା ଦ୍ୱାରା ହିଁ ହୋଇଛି । ଜଗତର ଉତ୍ପତ୍ତି, ସ୍ଥିତି ଆଉ ପ୍ରଳୟ ଏହି ତିନୋଟିର ମାୟା ଦ୍ୱାରା ମାନବ ସମ୍ଭବ ହୋଇଥାଏ । କର୍ମ ଫଳର କ୍ଷୋଭରେ ପ୍ରକୃତିର ସାମ୍ୟାବସ୍ଥା ବିକୃତ ହେଲା । ତହିଁରୁ ମହାତତ୍ତ୍ୱର ଉତ୍ପତ୍ତି ହେଲା । ମହାତତ୍ତ୍ୱରୁ ଅହଂତତ୍ତ୍ୱ । ଅହଂତତ୍ତ୍ୱରୁ ସାତ୍ତ୍ୱିକ, ରାଜସ ଓ ତାମସ ଏପରି ତିନି ଭେଦ ହେଲା । ଏହି ତ୍ରିବିଧ ଅହଂକାରରୁ ହିଁ ପଞ୍ଚଭୂତ, ଦଶଇନ୍ଦ୍ରିୟ, ଦଶ ଇନ୍ଦ୍ରିୟଙ୍କର ଅଧିଷ୍ଠାତୃଦେବ, ମନ ତଥା ବୁଦ୍ଧି ଆଦିର ଉତ୍ପତ୍ତି ହେଲା । ଏହି ସମସ୍ତରୁ ସଂପୂର୍ଣ୍ଣ ସୃଷ୍ଟି ହୋଇଛି । ସୃଷ୍ଟିର କାଳ ଯେ ପର୍ଯ୍ୟନ୍ତ ରହିଥାଏ, ସେ ପର୍ଯ୍ୟନ୍ତ ଉତ୍ପନ୍ନ ହେଉଥିବା ସୃଷ୍ଟି ସ୍ଥିର ରହିଥାଏ ଅର୍ଥାତ୍ ସ୍ଥିତ ରହିଥାଏ । ତହିଁରେ ସୁଖ ଦୁଃଖ, ଜନ୍ମ-ମରଣ, ଯୁଦ୍ଧ, ବ୍ୟବସାୟ ଆଦି ଅନେକ କାର୍ଯ୍ୟ ହେଉଥାଏ । ସମୟ ହୋଇଗଲେ ସୃଷ୍ଟିର ପ୍ରଳୟ ହୋଇଯାଏ । ସୃଷ୍ଟି ଯେଉଁଠାରୁ ଉଦ୍‌ଭବ ଭାନୁମତୀର ପସରା । ଯେତେବେଳେ ଇଚ୍ଛାହୁଏ ପସରାରୁ ଭଳି ଭଳି ଜିନିଷ ବାହାର କରି ସଜାଇ ଦିଏ । ନିଜର ପ୍ରିୟତମଙ୍କୁ ସେହି ଜିନିଷ ସବୁ ଦେଖାଇ ଦେଖାଇ ଆକୃଷ୍ଟ କରିବାରେ ଲାଗିଥାଏ । ପତିଙ୍କର ବିମୁଖତା ଦେଖିବା କ୍ଷଣି ସମସ୍ତ ପସରାକୁ ବାନ୍ଧି ପୁଟୁଳା କରିଦିଏ ।

ରାଜା କହିଲେ, ''ଭଗବନ୍ ! ଆପଣ ଉତ୍ପତ୍ତି ଓ ସ୍ଥିତି ସଂପର୍କରେ ସଂକ୍ଷେପରେ କିଛି କହିଲେ, କିନ୍ତୁ ପ୍ରଳୟ କିପରି ହୁଏ ତା'ତ କହିଲେ ନାହିଁ । ପ୍ରଳୟ ସମ୍ବନ୍ଧରେ କୃପାକରି କିଛି କୁହନ୍ତୁ ।''

ମହାମୁନି ଅନ୍ତରୀକ୍ଷ କହିଲେ, ''ରାଜନ୍ ! ପ୍ରଳୟ ବିଷୟରେ ଆଉ କ'ଣ କହିବା; ଉତ୍ପତ୍ତି ଯେଉଁଭଳି ହୋଇଥାଏ ତାହାର ବିପରୀତରେ ପ୍ରଳୟ ହୋଇଥାଏ । କଇଁଛ ମୁହଁ ଯେମିତି ବାହାର କରିଥାଏ, ଠିକ୍ ସେମିତି ଭିତରକୁ ନେଇଯାଏ । ପ୍ରଭେଦ ମାତ୍ର ଏତିକି ଯେ, ବାହାରିବା ସମୟରେ ତା'ର ଅଗ୍ରଭାଗ ପ୍ରଥମେ ବାହାରି ଥାଏ, ସଂକୁଚିତ କରିବା ସମୟରେ ପ୍ରଥମେ ପଶ୍ଚାଦ୍‌ଭାଗ ଭିତରକୁ ପଶେ । ଯେଉଁ କ୍ରମରେ ସୃଷ୍ଟି ଉତ୍ପତ୍ତି ହୋଇଥାଏ, ତା'ର ବିପରୀତ କ୍ରମରେ ପ୍ରଳୟ ହୋଇଯାଏ ।''

ରାଜା କହିଲେ, ''ତେବେ ହେ ଭଗବନ୍ ! ପ୍ରଳୟର ନିୟମ କହିବା ହୁଅନ୍ତୁ ।''

ଯୋଗେଶ୍ୱର ଅନ୍ତରୀକ୍ଷ କହିଲେ, ''ଠିକ୍ ଅଛି ରାଜନ୍ ! ଶୁଣନ୍ତୁ । ଯାହା ଅଧିକ ସ୍ଥୂଳ, ତାହା ନିଜ କାରଣରୁ ସୂକ୍ଷ୍ମରେ ମିଶିଯାଏ । ଜଗତରେ ସବୁଠାରୁ ସ୍ଥୂଳ ହେଉଛି ପୃଥ୍ୱୀ । **ଯେପରି ପ୍ରାଣବାନ୍‌ଙ୍କୁ ପ୍ରାଣୀ କୁହାଯାଏ, ପ୍ରାଣୀଙ୍କ ଶରୀରରୁ ପ୍ରାଣ ବାହାରିଗଲେ ତାହା ମୃତ ହୋଇଯାଏ- ସେହିଭଳି ଗନ୍ଧବାନ୍‌ର ନାମ ହେଉଛି ପୃଥ୍ୱୀ । ପୃଥ୍ୱୀରୁ ଗନ୍ଧଗୁଣ ବାହାର କରିଦେଲେ ତାହା ମୃତ ହୋଇଯାଏ ।** ମୃତ ଶରୀର ଯେପରି ନିଜ କାରଣରେ ପଞ୍ଚଭୂତରେ ସାମିଲ ହୋଇଯାଏ, ସେହିଭଳି ପୃଥ୍ୱୀ ମଲାପରେ ନିଜ କାରଣରେ ମିଶିଯାଏ ।''

ରାଜା କହିଲେ, ''**ପୃଥ୍ୱୀର କାରଣ କ'ଣ ? ତା'ର ପିତା କିଏ ?**''

ମୁନି କହିଲେ, ''**ପୃଥ୍ୱୀର କାରଣ ହେଉଛି ଜଳ । ଜଳରୁ ହିଁ ପୃଥିବୀର ଉତ୍ପତ୍ତି ହୋଇଛି ।** ପୁତ୍ରଠାରେ ଯେପରି ପିତାର, ତଥା ଚାରି ପୁରୁଷର କିଛି ନା କିଛି ଗୁଣ ଆସିଥାଏ ସେହିଭଳି ପୃଥିବୀର ନିଜ ଗୁଣ ଗନ୍ଧ ତ ଥିଲା, ନିଜ ପିତାର ରସ, ପିତାମହର ରୂପ, ପ୍ରପିତାମହର ସ୍ପର୍ଶ ଆଉ ବୃଦ୍ଧ ପ୍ରପିତାମହର ଶବ୍ଦ ଗୁଣ ବି ଥିଲା । କାଳ ଆସିଯିବା ପରେ ସମସ୍ତଙ୍କର ମୃତ୍ୟୁ ହୋଇଯାଏ । ପୃଥିବୀର କାଳ ଆସିଗଲା, ସେ ତେଣୁ ମରିଗଲା ।''

ରାଜା କହିଲେ, ''ମହାରାଜ ! କାଳ ଆସିଯିବା ପରେ ଯେତେବେଳେ ସମସ୍ତଙ୍କର ମୃତ୍ୟୁ ଅବଶ୍ୟମ୍ଭାବୀ ହୋଇଥାଏ ସେତେବେଳେ କାଳର ମୃତ୍ୟୁ ବି ତ ହେଉଥିବ ?''

ମହାଯୋଗେଶ୍ୱର ଅନ୍ତରୀକ୍ଷ ହସି ହସି କହିଲେ, ''ରାଜନ୍ ! କାଳର ମୃତ୍ୟୁ କ'ଣ ହେବ, କାଳ ରୂପ ତ ସାକ୍ଷାତ ଶ୍ରୀହରି । ସେ ତ ଅନାଦି ଅନନ୍ତ । ଏହି ସଂପୂର୍ଣ୍ଣ ଭୂତ ପ୍ରଥମେ ଅବ୍ୟକ୍ତ ଥିଲେ । ଅବ୍ୟକ୍ତରୁ ସବୁ ବ୍ୟକ୍ତ ହୋଇଗଲେ । ବ୍ୟକ୍ତ ଏବେ ଅବ୍ୟକ୍ତ ଆଡ଼କୁ ସମସ୍ତଙ୍କୁ ଭିଡ଼ି ଆଣି ତହିଁରେ ପ୍ରବିଷ୍ଟ ହୋଇଯାଉଛି- ଆଉ ଏହାର ନା' ହିଁ ପ୍ରଳୟ । ଏ ସବୁ କାଳ ଦ୍ୱାରା ହେଉଥାଏ । **କାଳ ସମସ୍ତ ବଳବାନ୍‌ଙ୍କ ଠାରୁ ବି ବଳବାନ୍ ! ତାଙ୍କ ଭଳି ବଳବାନ୍ ଆଉ ଅନ୍ୟ ଦ୍ୱିତୀୟ କେହି ନାହିଁ ।**''

ରାଜା ପଚାରିଲେ, ''ମହାରାଜ୍ ! ମଣିଷର ଯେଉଁ ମୃତ୍ୟୁ ହୁଏ, ତାହା ମଣିଷ ଭିତରେ ଥିବା ପ୍ରାଣ କୌଣସି ରୋଗରେ ଆକ୍ରାନ୍ତ ହୋଇ ନିର୍ଜଳ ହୋଇଯାଏ । କାଳର ପ୍ରେରଣାରେ ବାୟୁ ଦେହ ଭିତରେ ସ୍ଥିତ ପ୍ରାଣକୁ ଟାଣି ବାହାର କରିଦିଏ । ସୂକ୍ଷ୍ମ ପ୍ରାଣ ବାହାରି ଯାଏ, ଆଉ ସ୍ଥୂଳ ଦେହ ପଡ଼ି ରହେ । ଦେହର ପାଞ୍ଚଭୂତ, ନିଜ ନିଜର କାରଣରେ ମିଶିଯାଏ । ପ୍ରଳୟ କାଳରେ ପୃଥ୍ୱୀର ମୃତ୍ୟୁ ହୁଏ କିପରି ?''

ମୁନି କହିଲେ, ''ରାଜନ୍ ! ପ୍ରଳୟ କାଳ ଯେତେବେଳେ ଆସେ ଶହେ ବର୍ଷ ପର୍ଯ୍ୟନ୍ତ

ବର୍ଷା ହୁଏ ନାହିଁ । ପ୍ରାଣୀଙ୍କର ଜୀବ ହେଉଛି ଜଳ । ଜଳ ବିନା ଅଣ୍ଡଜ, ପିଣ୍ଡଜ, ସ୍ୱେଦଜ ଆଉ ଉଦ୍ଭିଦଜ; ଅର୍ଥାତ୍ ମନୁଷ୍ୟ, ପଶୁପକ୍ଷୀ, କୀଟପତଙ୍ଗ, ବୃକ୍ଷ-ଲତା ଜଳିଯାଏ । ସେମାନଙ୍କ ଶରୀରରେ ଯେତେ ଜଳ ଥାଏ, ତାହାକୁ ସୂର୍ଯ୍ୟ ତ ଶୋଷି ନିଅନ୍ତି, କିନ୍ତୁ ବର୍ଷାକାଳରେ ବର୍ଷା କରନ୍ତି ନାହିଁ । ସ୍ଥିତ ସମୟରେ କ'ଣ ହୁଏ, ନା; ଆଠ ମାସ ଧରି ସୂର୍ଯ୍ୟ ତାଙ୍କର କିରଣ ମାଧ୍ୟମରେ ସମୁଦ୍ର, ନଦୀ, ପୁଷ୍କରିଣୀ, କୂପ ଆଦିର ଜଳ ଶୋଷି ନେଇ ବର୍ଷା ଚାରିମାସରେ ବୃଷ୍ଟି କରି ଦିଅନ୍ତି । ଏଥିରେ ପ୍ରାଣୀମାନେ ସୁଖୀ ରହିଥା'ନ୍ତି । ପ୍ରଳୟ କାଳ ନିକଟ ହୋଇଗଲେ, ବର୍ଷ ବର୍ଷ ଧରି ଜଳ ଶୋଷଣ ତ ହୁଏ ମାତ୍ର ବୁନ୍ଦେ ହେଲେ ବର୍ଷା ହୁଏ ନାହିଁ । ଏହିଭଳି ସମଗ୍ର ପୃଥ୍ୱୀ ଶୁଖି ନିରସ ହୋଇଯାଏ । ବର୍ଷା ନ ହେବାରୁ ଉଷ୍ଣତା ବଢ଼ିଯାଏ । ଶହେ ବର୍ଷ ଧରି ବର୍ଷା ନହେଲେ ସୂର୍ଯ୍ୟଙ୍କ ଉଷ୍ଣତା ଖୁବ୍ ବଢ଼ିଯାଏ । ତିନିଲୋକ ଫୁଟିବାରେ ଲାଗେ ।

''ଭଗବାନ ଗୋଟିଏ ଅଂଶରେ ଏହି ଜଗତ୍ ରୂପରେ ବିସ୍ତାରିତ ହୋଇଥା'ନ୍ତି, ଶେଷ ଅଂଶରେ ପାତାଳ ତଳେ ବସି ରହି ଏହି ଭୂମଣ୍ଡଳକୁ ଧରି ରଖିଥା'ନ୍ତି । ଭଗବାନଙ୍କର ଶେଷ ଅଂଶକୁ ମନୀଷୀ ନାଗ କୁହାଯାଏ । କାରଣ ତାହା କେଉଁଆଡ଼େ ଯା-ଆସ କରେ ନାହିଁ, ସ୍ଥିର ରହିଥାଏ । ଉଷ୍ଣତା ଅତ୍ୟଧିକ ବଢ଼ିଗଲେ, ଶେଷ ନାଗଙ୍କର ମୁଖରୁ ବି ଅଗ୍ନି କଣା ନିର୍ଗତ ହେବାରେ ଲାଗେ । ପୃଥ୍ୱୀ ନିର୍ଜୀବ ହୋଇଯାଏ । ପୃଥ୍ୱୀର ପ୍ରାଣ ହେଉଛି ଗନ୍ଧ । ପୃଥ୍ୱୀର ଗନ୍ଧ ବାହରି ଯାଏ । ଶେଷଙ୍କ ମୁଖ ନିର୍ଗତ ଜ୍ୱାଳାମୁଖୀର ଘେରରେ ପୃଥ୍ୱୀର ସମସ୍ତ ବସ୍ତୁ ଜଳି ଭସ୍ମ ହୋଇଯାଏ । ଅର୍ଥାତ୍ ପୃଥ୍ୱୀ-ଶରୀରର ଦାହ ସଂସ୍କାର ହୋଇଯାଏ । ଯେପରି ଶରୀରକୁ ଜାଳି ଭସ୍ମକୁ ପାଣିରେ ଭସାଇ ଦିଆହୁଏ, ଠିକ୍ ସେହିଭଳି ଭସ୍ମୀଭୂତ ପୃଥ୍ୱୀର ଭସ୍ମକୁ ପ୍ରବାହିତ କରିବା ପାଇଁ ସଂବର୍ତକ ନାମକ ମେଘ ଆସେ । ଏହି ସଂବର୍ତକ ନାମକ ମେଘର କାମ ହେଉଛି, ସୃଷ୍ଟିର ଅନ୍ତ ସମୟରେ ପୃଥ୍ୱୀର ଯେତେବେଳେ ମୃତ୍ୟୁ ହୁଏ, ସେତେବେଳେ ସେହି ଭସ୍ମକୁ ବହିନେବା । କାରଣ ଜଳ ହେଉଛି ପୃଥ୍ୱୀର ପିତା । ନିୟମାନୁସାରେ ପିତାର ଦାହ ସଂସ୍କାର ପୁତ୍ର କରିବା କଥା । କିନ୍ତୁ ପ୍ରଳୟ ସମୟରେ ସବୁ କାମ ଓଲଟା ହିଁ ହୋଇଥାଏ । ଏଣୁ ପିତା ଜଳ, ନିଜର ପୁତ୍ରୀ ପୃଥ୍ୱୀର ପ୍ରାଣକୁ ତା' ପିତା ଜଳକୁ ଦେଇଦିଏ । ହଁ, ସେହି ସଂବର୍ତକ ନାମକ ମେଘ ଶହେ ବର୍ଷ ପର୍ଯ୍ୟନ୍ତ ବର୍ଷା କରେ । ସେହି ବର୍ଷା ସାଧାରଣ ବର୍ଷା ହୋଇନଥାଏ । ହାତୀ ଶୁଣ୍ଢ ଭଳି ଧାରାରେ ପ୍ରଳୟକାଳୀନ ମେଘ ଅନବରତ ବରଷିବାରେ ଲାଗେ । ସେହି ବର୍ଷାରେ ସମସ୍ତ ସାମ୍ରାଜ୍ୟ ବିସ୍ତାର ଲାଭ କରିଥାଏ ।

ରାଜା ପଚାରିଲେ, ''ମହାରାଜ ! ଜଳର କ'ଣ ମୃତ୍ୟୁ ହୁଏ ନାହିଁ ?''

ମହାମୁନି ଅନ୍ତରୀକ୍ଷ ହସି ହସି କହିଲେ, ''କ'ଣ ? ଜଳର ମୃତ୍ୟୁ ହେବନାହିଁ

କିପରି ? ଯିଏ ଜନମ ହୋଇଥାଏ ସେ ଅବଶ୍ୟ ମରେ । ଯାହା ଉତ୍ପତ୍ତି ହୋଇଛି ତାହାର ବିନାଶ ଅବଶ୍ୟମ୍ଭାବୀ ।

''ଜଳର ଯେତେବେଳେ ମରଣ କାଳ ପହଞ୍ଚେ ସେତେବେଳେ ବାୟୁଦେବ ତା'ର ରସ ରୂପକ ପ୍ରାଣକୁ ଆକର୍ଷୀ ନିଅନ୍ତି । ଅଗ୍ନିଦେବ ଜଳକୁ ବି ଜାଳି ଭସ୍ମ କରି ଦିଅନ୍ତି । ବାପ ପୁଅକୁ ଜାଳି ଦେଲା । ଏବେ ଜଳର ଆଉ ଅସ୍ତିତ୍ୱ ରହିଲା ନାହିଁ । ସେତେବେଳେ ଜଳର ଭସ୍ମକୁ ଭସାଯିବ ବା କିପରି ? ଏଣୁ ଜଳ ଅଗ୍ନିରୂପ ହୋଇଯାଏ । ଚତୁର୍ଦ୍ଦିଗରେ କେବଳ ତେଜ ହିଁ ବ୍ୟାପ୍ତ ହୋଇଯାଏ । ଏହିଭଳି ପୃଥ୍ୱୀ ଆଉ ଜଳ ଦୁହିଁଙ୍କର ମୃତ୍ୟୁ ହୋଇଗଲା । ବାକୀ ରହିଲା ଅଗ୍ନି ଓ ଏହାର ପ୍ରାଣ ତେଜ । ବାୟୁଦେବ ଅନ୍ଧକାର ଦ୍ୱାରା ଅଗ୍ନିର ପ୍ରାଣ ତେଜକୁ ବି ନାଶ କରିଦିଅନ୍ତି । ତେଜ ବାୟୁରେ ମିଶିଯାଏ । ଏବେ ଜଳାଇବାର ବା ପ୍ରବାହିତ କରିବାର ଦରକାର ପଡ଼େ ନାହିଁ । ପୃଥ୍ୱୀ, ଜଳ ଆଉ ତେଜ, ତିନିଙ୍କର ନାଶ ହୋଇଗଲା । ଏଥର ଅନ୍ଧକାରମୟ ବାୟୁର ଆବରଣ ହିଁ ବଳକା ରହିଗଲା ।''

''ବାୟୁ ହେଉଛି ଆକାଶର ପୁତ୍ର । ଆକାଶ ଭାବିଲା- ଏହି ବାୟୁ ସମସ୍ତଙ୍କୁ ଆକର୍ଷୀ ଆକର୍ଷୀ ମାରୁଛି । ସମସ୍ତଙ୍କର ପ୍ରାଣ ହରଣ କରୁଛି । ଯା'ର ପ୍ରାଣକୁ ମୁଁ ହରଣ କରିବି । **ଯିଏ ଯେ ଭଳି କରେ ସେହି ଭଳି ପାଏ । ଅନ୍ୟପାଇଁ ଯିଏ ଖାତ ଖୋଳେ ତା' ପାଇଁ ଆଗରୁ କୂଅ ଖୋଳାହୋଇ ରହିଥାଏ ।** ଏପରି ଭାବି ଆକଶ ବାୟୁର ସ୍ପର୍ଶ ଗୁଣକୁ ହରଣ କରିନେଲା । ସ୍ପର୍ଶହୀନ ହୋଇଯିବା ଦ୍ୱାରା ବାୟୁ ଶାନ୍ତ ହୋଇଗଲା । ଏବେ ଆଉ ତୋଫାନ କି ଝଂଜାବାତ ରହିଲା ନାହିଁ । ସର୍ବତ୍ର ଶାନ୍ତି ବିରାଜମାନ କଲା । ଆକାଶ ହିଁ ପରିପୂର୍ଣ୍ଣ ରହିଲା । କିନ୍ତୁ ଆକାଶର ପ୍ରାଣ ହେଉଛି ଶବ୍ଦ । ଆମେ ଏକାନ୍ତ ସ୍ଥାନରେ ଶାନ୍ତ ଚିତ୍ତରେ କାନ ବନ୍ଦ କରି ବସିଲେ ବି ଆମକୁ ଶବ୍ଦ ଶୁଣାଯାଏ । ସଂସାରରେ କେବଳ ଶବ୍ଦ ହିଁ ପରିପୂର୍ଣ୍ଣ ହୋଇଥାଏ ।''

ରାଜା ପଚାରିଲେ, ''ମହାରାଜ ! ଆକାଶର କେହି ପିତା ନଥାନ୍ତି । ସେ ତାକୁ ଗିଳି ଦିଅନ୍ତା ।''

ମୁନି କହିଲେ, ''ରାଜନ୍ ! ଏକ ପରମପିତା ପରମାତ୍ମାଙ୍କର କେହି ପିତା ନଥା'ନ୍ତି । କାରଣ ସେ ହେଉଛନ୍ତି ଚରାଚର ଜଗତର ପିତା, କିଛି ନହେଲେ ବି ସମସ୍ତଙ୍କର ପିତା । ଏହି ପଞ୍ଚଭୂତ ତାମସ ଅହଙ୍କାରରୁ କ୍ରମଶଃ ଉତ୍ପନ୍ନ ହୋଇଥାଏ । ଏଣୁ ଆକାଶର ପିତା ହେଉଛି ତାମସ ଅହଂକାର । ଫଳରେ ଆକାଶ ତାମସ ଅହଂକାରରେ ବିଲୀନ ହୋଇଯାଏ । ଏହିଭଳି ସ୍ଥୂଳ ଜଗତର ବିନାଶ ହୋଇଯାଏ ।

ରାଜା ପଚାରିଲେ, ''ଭଗବନ୍ ! ସ୍ଥୂଳ ଜଗତ ତ ପଞ୍ଚଭୂତାତ୍ମକ ହୋଇଥାଏ । ଏହା ନାଶ ହୋଇଯିବା ପରେ ସୂକ୍ଷ୍ମ ଜଗତର ବସ୍ତୁ ତ ବଞ୍ଚି ଯାଉଥିବେ ?''

ମୁନି କହିଲେ, ''ରାଜନ୍ ! ମୁଁ ଆପଣଙ୍କୁ ବାରମ୍ବାର କହିଛି, **ସୂକ୍ଷ୍ମ ହେଉ ବା ସ୍ଥୂଳ, ଯାହା ଉତ୍ପତ୍ତି ହୋଇଥାଏ ତାହା ବିନାଶ ଅବଶ୍ୟ ହୋଇଥାଏ ।** ତାମସ ଅହଂକାରରୁ ଭୂତଙ୍କର ଉତ୍ପତ୍ତି ହୋଇଥିଲା । ଏଣୁ ଭୂତଙ୍କର ବୃଦ୍ଧ ପ୍ରପିତାମହ ଆକାଶ ନିଜର ସମ୍ପୂର୍ଣ୍ଣ ପରିବାରକୁ ଏକାଠି କରି ନିଜର ପିତା ତାମସ ଅହଂକାରରେ ବିଲୀନ ହୋଇଯାଏ । ଇନ୍ଦ୍ରିୟଙ୍କର ଉତ୍ପତ୍ତି ରାଜସ ଅହଂକାରରୁ ହୋଇଥାଏ । ଭୋଗ କରିବା ପାଇଁ ଯେତେବେଳେ ବିଷୟ ଆଉ ରହେ ନାହିଁ, କରିବା ପାଇଁ କର୍ମ ବି ନଥାଏ, ସେତେବେଳେ ଭୋଜନବିନା ଇନ୍ଦ୍ରିୟମାନେ ନିଜ ପିତା ରାଜସ ଅହଂକାରରେ ମିଶିଯାଆନ୍ତି । ଦଶ ଇନ୍ଦ୍ରିୟଙ୍କର ଯେଉଁ ଦଶ ଅଧିଷ୍ଠାତୃ ଦେବ ଥାଆନ୍ତି ଆଉ ଇନ୍ଦ୍ରିୟଙ୍କର ରାଜା ମନ ଥାଏ, ଏମାନେ ସମସ୍ତେ ସାତ୍ତ୍ୱିକ ଅହଂକାରରେ ବିଲୀନ ହୋଇ ଯାଆନ୍ତି । ଅହଂକାରର ସାତ୍ତ୍ୱିକ, ରାଜସ ଆଉ ତାମସ ଏହି ତିନି ଗୁଣ ହୋଇଯାଇଥିଲା । ଏହି ତିନିଗୁଣ ସହିତ ଅହଂକାର ମହତତ୍ତ୍ୱରେ ବିଲୀନ ହୋଇଗଲା । ମହତତ୍ତ୍ୱ ପ୍ରକୃତିରେ - ନିଜ ସ୍ୱଭାବରେ ମିଶିଗଲା । ଏହି ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡ ଥିଲା ବ୍ରହ୍ମଙ୍କ ଶରୀର । ତାଙ୍କୁ ହିଁ ବିରାଟ ପୁରୁଷ କୁହାଯାଏ । ଏବେ ତାଙ୍କର ଶରୀର ଆଉ ରହିଲା ନାହିଁ । ବ୍ୟକ୍ତ ଜଗତ ଯେତେବେଳେ ଆଉ ନ ରହିଲା, ସେତେବେଳେ ସେ ତାଙ୍କର କାରଣ ସୂକ୍ଷ୍ମ ସ୍ୱରୂପ ଅବ୍ୟକ୍ତରେ ମିଶି ଗଲେ । ଖେଳ ସମାପ୍ତ ହୋଇଗଲା ।''

ରାଜା ପଚାରିଲେ, ''ମହାରାଜ ! **ପ୍ରଳୟ ଯେତେବେଳେ ହୋଇଯାଉଥିବ ସେତେବେଳେ ଜୀବ ଜନ୍ମ-ମୃତ୍ୟୁର ଚକ୍ରରୁ ତ ମୁକ୍ତ ହୋଇଯାଉଥିବ ?''**

ମୁନି କହିଲେ, ''ନା ରାଜନ୍ ! କଥାଟା ସେୟା ନୁହେଁ । ପ୍ରଳୟର ଅବଧି ଯେ ପର୍ଯ୍ୟନ୍ତ ଥାଏ, ସେ ପର୍ଯ୍ୟନ୍ତ ସକଳ ଜୀବ ଅବ୍ୟକ୍ତର ଶରୀରରେ ଚୁପ୍‌ଚାପ ଶୋଇ ରହିଥା'ନ୍ତି । ପୁନର୍ବାର ସୃଷ୍ଟି ଯେତେବେଳେ ହୁଏ ସେତେବେଳେ ସମସ୍ତେ ପୁଣି ନିଜ ନିଜ କର୍ମର ଫଳ ଭୋଗ କରିବାରେ ଲାଗନ୍ତି, ପୁଣି ସେହି ସେହି ଯୋନି ପ୍ରାପ୍ତ ହୋଇ କର୍ମ କରିବାରେ ଲାଗନ୍ତି ।''

ରାଜା କହିଲେ, ''ମହାରାଜ ! ଏତେ ଦିନ ପର୍ଯ୍ୟନ୍ତ ଅବ୍ୟକ୍ତରେ ରହି ବି ତ ସେମାନଙ୍କର ସେ ସବୁ ମନେ ରହିଥାଏ କିପରି ?''

ମହାଯୋଗେଶ୍ୱର ଅନ୍ତରୀକ୍ଷ ହସି ହସି କହିଲେ, ''କାହିଁକି ରାଜନ୍ ! ଭୁଲିବାର କିଛି ନାହିଁ ତ ! ଆମେ ଭାଗବତୀ କଥାର ଗୋଟିଏ ଅଧ୍ୟାୟ ପଢ଼ି ଶୋଇ ଯାଉ । ପର ଦିନ ଉଠିବା କ୍ଷଣି ଅଧ୍ୟାୟ ପଢ଼ିବା ଆରମ୍ଭ କରୁ । ଆମେ ଯାହା ଆଜି ପଢ଼ି ଥାଉ ଶୋଇ ପଢ଼ିବା ଫଳରେ ତାହା ତ ଆମେ ଭୁଲି ଯାଉନା । ଆଉ କାଲି ପୁଣି ମୂଳରୁ ତ ପଢ଼ିବା ଆରମ୍ଭ କରୁନା । **ସର୍ବଜ୍ଞ ଭଗବାନ୍‌ଙ୍କୁ ତ ସମସ୍ତଙ୍କର କର୍ମ, କର୍ମଫଳ ମନେଥାଏ ।**

**ସମସ୍ତଙ୍କୁ କର୍ମାନୁସାରେ ଯୋନି ଦେଇଥା'ନ୍ତି । ସମସ୍ତ କର୍ମରେ ପୂର୍ବ ଭଳି ପ୍ରବୃତ୍ତ ହୋଇ ଯାଆନ୍ତି ।''**

ରାଜା କହିଲେ, ''ଭଗବନ୍ ! ଯୋନି ତ ଅସଂଖ୍ୟ । କେତେ ନା କେତେ ପ୍ରାଣୀ କେତେ ନା କେତେ କର୍ମ କରିଥା'ନ୍ତି । ସେମାନଙ୍କୁ କେଉଁ ଯୋନି ମିଳିବା କଥା, ଏ ସମସ୍ତ କଥା ଯିଏ ଲେଖି ରଖୁଥିବେ ତାଙ୍କର କେଜାଣି କେତେ ବହି ଥିବ । ଭଗବାନଙ୍କୁ ବିଚରା ବହୁତ ପରିଶ୍ରମ କରିବାକୁ ପଡୁଥିବ ।''

ମୁନି କହିଲେ, ''ନା ରାଜନ୍ ! ବହି ଖାତାର କି ଆବଶ୍ୟକତା । ଭଗବାନଙ୍କୁ କିଛି ପରିଶ୍ରମ କରିବାକୁ ପଡ଼େ ନାହିଁ । ସମସ୍ତ ପ୍ରାଣୀ ନିଜ ନିଜର କର୍ମାନୁସାରେ କର୍ମରେ ସ୍ୱତଃ ପ୍ରବୃତ୍ତ ହୋଇ ଯାଆନ୍ତି । ଯେପରି ଲକ୍ଷେ ଗାଈ ଥିଲେ ବି ବାଛୁରୀ ତା ମା'କୁ ଖୋଜି ତା'ର କ୍ଷୀର କେବଳ ପିଇଥାଏ; ଯେପରି ବ୍ୟବସାୟୀ ଦିନ ତମାମ ବେପାର କରେ, ରାତିରେ ଦୋକାନ ବନ୍ଦ କରିଦିଏ, ପର ଦିନ ଯାହା ବଳକା ଥାଏ ପୂର୍ବ ଭଳି ବିକ୍ରି କରିବାରେ ଲାଗେ । ଠିକ୍ ସେହିଭଳି ଏହି ସୃଷ୍ଟିର ପ୍ରବାହ ଅନାଦି ରୂପରେ ଚାଲିଛି । ନା ଏହାର ଆଦି ଅଛି ନା ଅନ୍ତ । ସମସ୍ତ ଜୀବ ଅଦୃଷ୍ଟର ପ୍ରେରଣାରେ ନିଜ ନିଜର କର୍ମର ଫଳ ଭୋଗ କରୁଥା'ନ୍ତି, ଆପଣଙ୍କ କର୍ମରେ ରାଜା ହେବା ଲେଖା ହୋଇଛି, ଆପଣ ରାଜା ହୋଇ ରାଜ୍ୟ ସୁଖ ଭୋଗ କରୁଛନ୍ତି, କାହାର ଭାଗ୍ୟରେ ଲେଖିବା ହିଁ ଲେଖା ହୋଇଥାଏ- ସେ ଦିନ ରାତି କେବଳ ଲେଖିବାରେ ଲାଗିଥାଏ; କାହାରି କାହାରି ଭାଗ୍ୟରେ ଭବ୍ୟ ଭୋଗ କରିବା ପାଇଁ ଲେଖା ହୋଇଥାଏ, ସେ ତାହା ଭୋଗ କରେ । **ଭଗବାନଙ୍କ ସୃଷ୍ଟି ଜୀବମାନଙ୍କର କର୍ମଫଳକୁ ଭୋଗ କରିବା ପାଇଁ ହିଁ ନିର୍ମିତ ହୋଇଛି** । ତେଣୁ ହେ ରାଜନ୍ ! ଆନନ୍ଦରେ ଭୋଗ ଉପଭୋଗ କରନ୍ତୁ । ପୁନଃ ପୁନଃ ମରନ୍ତୁ, ପୁନଃ ପୁନଃ ଜନ୍ମଗ୍ରହଣ କରନ୍ତୁ । ଏହାର ନାମ ହେଉଛି ଭଗବାନଙ୍କର ମାୟା ଆଉ ମାୟାର ଖେଳ । ମାୟାର ସ୍ୱରୂପ ଅତି ସଂକ୍ଷେପରେ ମୁଁ ଆପଣଙ୍କୁ କହିଲି । ଏବେ ଆଉ କ'ଣ ଶୁଣିବାକୁ ଚାହାନ୍ତି କୁହନ୍ତୁ ।''

ରାଜା କହିଲେ, ''ଭଗବନ୍ ! ମାୟାର ବଡ଼ ବିଚିତ୍ର ଚକ୍ର କଥା ଏପରି କହିଲେ । ଜୀବ ଏଥିରୁ କେବେ ବି ମୁକ୍ତ ହୋଇ ପାରିବ ନାହିଁ । କୃପାକରି ଆପଣ ମୋତେ ଏପରି ଉପଦେଶ ଦିଅନ୍ତୁ, ଯେଉଁଥିରେ ଆମେ ଏହି ମାୟାରୁ ବର୍ତ୍ତିଯାଇ ପାରିବା । ଆପଣ କହିଥିଲେ ଭଗବାନ ନିଜର ସ୍ୱରୂପଭୂତ ଜୀବଙ୍କ ଭୋଗ ଓ ମୋକ୍ଷ ନିମନ୍ତେ ଏହି ସଂସାର ରଚନା କରିଛନ୍ତି । ତେଣୁ, କର୍ମଭୋଗ କଥା ତ ବୁଝି ହୋଇଗଲା- **ମାୟାର ଚକ୍ରରେ ପଡ଼ିଥିବା ପ୍ରାଣୀ ଭଲ-ଖରାପ କର୍ମ କରେ ଆଉ ତାହାର ଫଳରୂପ ସୁଖ ଦୁଃଖ** ଭୋଗ କରନ୍ତି । ଏବେ ଏହି ମାୟା ଚକ୍ରରୁ ବର୍ତ୍ତିବାର, ମୋକ୍ଷ ପାଇବାର, ଉପାୟ କୁହନ୍ତୁ ।''

ମହାମୁନି ଅନ୍ତରୀକ୍ଷ କହିଲେ, ''ସଂସାରର ବନ୍ଧନ ଅଜ୍ଞାନ ହେତୁ ହୋଇଥାଏ । ଜ୍ଞାନ ମୁକ୍ତି ଦିଏ । ଯିଏ ନିଜ ମନକୁ ବଶୀଭୂତ ନ କରିଛି ସେପରି ପୁରୁଷ ଦ୍ୱାରା ଭଗବାନଙ୍କର ଏହି ଦୁସ୍ତର ମାୟା କେଭେଁ ବି ଜିତି ହୋଇପାରେ ନାହିଁ । ଏହାକୁ ସୂକ୍ଷ୍ମ ଦୃଷ୍ଟି ଥିବା ଜ୍ଞାନୀ ପୁରୁଷ ଜୟ କରିବାରେ ସମର୍ଥ ହୋଇ ପାରନ୍ତି ।

ରାଜା କହିଲେ, ''ମହାରାଜ ! ଯାହାଙ୍କର ସୂକ୍ଷ୍ମ ଦୃଷ୍ଟି ହୋଇଯାଇଥାଏ, ଯିଏ ଜ୍ଞାନନିଷ୍ଠ ମାୟା ସେପରି ଲୋକର କି କ୍ଷତି କରିପାରନ୍ତା । ସେ ତ ଜ୍ଞାନନିଷ୍ଠରେ ପାରି ହୋଇଯିବେ । ମୋ ପ୍ରଶ୍ନ ଆମ ଭଳି ସ୍ଥୂଳ ବୁଦ୍ଧିବାଲାଙ୍କ ପାଇଁ । ଆମ ଭଳି ସାଧାରଣ ଲୋକ ଯେଉଁ ଉପାୟରେ ଭଗବାନଙ୍କର ଏହି ଦୁସ୍ତର ମାୟାକୁ ସୁଗମତାର ସହିତ ପାରି ହୋଇ ପାରିବେ, ଏ ଭଳି ସରଳ ସୁଗମ ସର୍ବୋପଯୋଗୀ ମାର୍ଗ ଆପଣ କୁହନ୍ତୁ ।''

ଏହାଶୁଣି ମହାମୁନି ଅନ୍ତରୀକ୍ଷ କହିଲେ, ''ରାଜନ୍ ! ଏହାର ଉତ୍ତର ମୋର ଏହି କନିଷ୍ଠ ସହୋଦର ପ୍ରବୁଦ୍ଧ ଦେବେ । ଇଏ ସବୁବେଳେ ପ୍ରବୁଦ୍ଧ ରହିଥାନ୍ତି । ଏଣୁ ଏହି ବିଷୟରେ ଇଏ ଉତ୍ତମ ରୂପେ ବିବେଚନ କରିବେ ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଏପରି କଥା ଶୁଣି ମହାରାଜ ଜନକ ଅତି ଶ୍ରଦ୍ଧାର ସହିତ ଜିଜ୍ଞାସାପୂର୍ଣ୍ଣ ଦୃଷ୍ଟିରେ ମହର୍ଷି ପ୍ରବୁଦ୍ଧଙ୍କୁ ଚାହିଁବାରେ ଲାଗିଲେ । ଏବେ ଯୋଗେଶ୍ୱର ପ୍ରବୁଦ୍ଧ ଯେଉଁଭଳି ସାଧାରଣ ଲୋକମାନେ ମାୟାରୁ ପାରି ହେବାର ଉପାୟ କହିଲେ ତାହା କହୁଛି ଶୁଣନ୍ତୁ ।''

## ଛପ୍‌ପୟ

*ପ୍ରକୃତି ତାର ମହତତ୍ୱ, ଅହଂ, ତୈଜସ ରଜ ତମମୟ ।*
*ତାମସତେ ତବ ଭୂତ କରନ ରାଜସତେଂ ନିଶ୍ଚୟ ॥*
*କରନନିକେ ସବ ଦେବ ଔର ମନ ତୈଜସ ସଂଭବ ।*
*ତ୍ରିକେ ସବ ଉତପନ୍ନ ରହେଂ ଫିର ପ୍ରଲୟ ହୋହି ଜବ ॥*
*ତବ ଯେ ସବ ପ୍ରତିଲୋମ ତେଂ, ମିଲୈଂ ଜାୟ ଅବ୍ୟକ୍ତମହଁ ।*
*ଯହ ମାୟା ଭଗବାନ କୀ, ରହୈ ସଦା ପରତତ୍ୱମହଁ ॥*



# ମାୟା ମୁକ୍ତ ହେବାର ଉପାୟ

**ତସ୍ମାଦ୍ ଗୁରୁଂ ପ୍ରପଦ୍ୟେତ ଜିଜ୍ଞାସୁଃ ଶ୍ରେୟ ଉତ୍ତମମ୍ ।**
**ଶାବ୍ଦେ ପରେ ଚ ନିଷ୍ଣାତଂ ବ୍ରହ୍ମଣ୍ୟୁପଶମାଶ୍ରୟମ୍ ॥☆**

(ଶ୍ରୀ ଭା: ୧୧ଶ ସ୍କ. ୩ୟ ଅ. ୨୧ଶ୍ଲୋକ)

**ଛପ୍ପୟ**

*'କୈସେ ମାୟା ତରେଂ' ନୃପତିନେ ପୂଛୟୋ ଜବ ଈ ।*
*ସୁନି ମୁନି ପ୍ରବର ପ୍ରବୁଦ୍ଧ ଭୂପ ତୈଂ ବୋଲେ ତବ ଈ ॥*
*ସମୁଝେ ଘର, ଧନ, କରମ, ନାଶଯୁତ ଗୁରୁ ଚରନନି ଢିଁଗ ।*
*ଜାବୈ ସୀଖୈ ଧରମ - ଭାଗବତ ଭକ୍ତନି କେ ସୈଂଗ ॥*
*ସତ୍‌ସଂଗତି, ମୈତ୍ରୀ, ଦୟା, ବିନୟ, ଶୌଚ, ତପ, ତିତିକ୍ଷା ।*
*ବିନୟ ବଡ଼ନି ପ୍ରତି ନେହ ସମ, ଦୀନନି କେ ପ୍ରତି ସଦିଛା ॥*

ରାତ୍ର ସମୟ । ଜଣେ ମଣିଷ ଯାଉଥିବା ବେଳେ ଏକ ବିରାଟ ଖୁମ୍ୱର ଛାୟା ଦେଖିଲା । ଏହାକୁ ଏକ ଭୂତ ବୋଲି ସେ ଭାବିଲା । ଖୁମ୍ୱର ମଝିରେ ବାଡ଼ିଟିଏ ବନ୍ଧା ହୋଇଥିଲା । ତାହା ଛାଇରେ ହାତ ଭଳି ଦେଖାଯାଉଥିଲା । ବିଶାଳକାୟ ମଣିଷ ହାତ ହଲାଉଥିବା ଭଳି ଜଣା ପଡ଼ିଲା । ମନରେ ଯେଉଁଭଳି ଶଂକା ହୋଇଯାଏ ସେହି ଅନୁସାରେ ସମସ୍ତ ବସ୍ତୁ ଦେଖାଯାଏ । **କାରଣ ଏହି ସମ୍ପୂର୍ଣ୍ଣ ସଂସାର ହେଉଛି ଭାବମୟ । ଯାହାର ଭାବନା ଯେଉଁଭଳି ଦୃଢ଼ ହୋଇଥାଏ ତାକୁ ସର୍ବତ୍ର ସେୟା ହିଁ**

---

☆ ଏ କଥା ବୁଝି ଗୁରୁପାଦେ । ଆଶ୍ରେ କରିବ ଅପ୍ରମାଦେ ॥
ଉତ୍ତମ ଗୁରୁ ଆଶ୍ରେ କରି । ତାଙ୍କ ବଚନ ଶିରେ ଧରି ॥
ଯେ ଗୁରୁ ଜାଣେ ବେଦତତ୍ତ୍ୱ । ନିର୍ଗୁଣ ଆତ୍ମଜ୍ଞାନେ ରତ ॥
ସମଦରଶୀ ନିଷ୍ଠାପର । ତପ କଷଣ ସହେ ଧୀର ॥
ନିରତେ ଥାଇ ପରହିତେ । ଈଶ୍ୱର ମାୟା ଜାଣି ଚିତ୍ତେ ॥
ଏମନ୍ତ ଗୁରୁପାଦେ ଭଜି । ହିଂସା କପଟ ଦୂରେ ତେଜି ॥
ସେବା କରିବ ଦୃଢ଼ ଚିତ୍ତେ । ଯେ ଗୁରୁଶିଷ୍ୟ ଭାବମତେ ॥

(ଭାଗବତ : ଜଗନ୍ନାଥ ଦାସ: ୧୧ଶ ସ୍କ. ୪ର୍ଥ ଅ.)

ଦେଖାଯାଏ । ଭୂତ ସେହିଠାରେ ଠିଆ ହୋଇଛି ବୋଲି ଛାୟା ଦେଖିଥିବା ଲୋକର ଦୃଢ଼ ଧାରଣା ହୋଇଯାଏ । ଏଣିକି ସେହି ଛାୟାରେ ତାକୁ ହାତ, ଗୋଡ଼, ନାକ, କାନ, ଆଖି, ଫାଟି ଯାଇଥିବା ଭୟଙ୍କର ମୁହଁ, ବଡ଼ ବଡ଼ ଦାନ୍ତ ତାକୁ ପ୍ରତ୍ୟକ୍ଷ ଦେଖାଯିବାରେ ଲାଗେ । ତାକୁ ଏପରି ଜଣାଯିବାରେ ଲାଗିଲା ଯେ ସେ ମୁହଁ ମେଲାଇ ତା' ଆଡକୁ ଦୌଡ଼ି ଆସୁଛି । ଆଉ ଅତ୍ୟଧିକ ଭୟରେ ସେ ସେହିଠାରେ ମୂର୍ଚ୍ଛା ହୋଇଯାଏ । ଖବର ପାଇ ଘର ଲୋକମାନେ ତାକୁ ସେଠାରୁ ନେଇ ଯାଆନ୍ତି । ଭୂତ ଝାଡୁଥିବା ଗୁଣିଆକୁ ଡାକନ୍ତି । ଗୁଣିଆ ଆସେ । କହେ, ଅମୁକ ଅମୁକ ସ୍ଥାନରେ ଭୂତକୁ ମୁଁ ଦେଖିଛି । ଗୁଣିଆ ପୂର୍ବେ ଯେତେବେଳେ ସେହି ରାସ୍ତାରେ ଯାଉଥିଲା ସେହି ବିରାଟ ଖୁମ୍ବକୁ ଓ ସେଥିରେ ବନ୍ଧା ହୋଇଥିବା ବାଡ଼ିର ଛାଇ ଦେଖି ଭୂତ ବୋଲି ଭାବିଥିଲା । ମାତ୍ର ନିର୍ଭୟରେ ସେ ପାଖକୁ ଯାଇ ଖୁମ୍ବର ଛାୟା ବୋଲି ଜାଣିଲା । ସେ ସମସ୍ତ ରହସ୍ୟ ଜାଣିଗଲା । ଏହି ଲୋକକୁ ଯେ ଭୂତ ଲାଗିନାହିଁ ଏହା ସେ ସହଜରେ ଜାଣିଗଲା- କିନ୍ତୁ ଏତିକି କହିଦେଲେ ତ ଲୋକଟା ଭଲ ହେବନାହିଁ, ଏଣୁ କାମ ଚଳାଇବା ପାଇଁ ସେ କଥାଟାକୁ ସତ ବୋଲି ଧରିନେଇ ଭୂତ ଲାଗିଛି ବୋଲି କହେ । ଏବେ ସେ ସେହି ଲୋକର ଶଙ୍କା ଦୂର କରିବା ପାଇଁ ଭୂତ ଛଡ଼ାଇବାର ଉପଚାର ଆରମ୍ଭ କରିଦେଲା । ଆଉ ଭୂତ ଲାଗିଥିବା ଲୋକ ଭାବିବାରେ ଲାଗିଲା ଯେ ବିଦ୍ୱାନ ଗୁଣିଆର ପ୍ରଭାବରେ ମୋ ଦେହରୁ ଏଥର ଭୂତ ଧୀରେ ଧୀରେ ଛାଡ଼ି ଯାଉଛି । ଦିନେ ଗୁଣିଆ ଗୋଟିଏ ବାଉଁଶ ନଳୀକୁ ଜୋର୍‌ରେ ଧରି କହିଲା, ''ତୁମର ଭୂତ ଏଥର ଏହି ବାଉଁଶ ନଳୀ ଭିତରକୁ ଆସିଗଲା । ମୁଁ ଏହାକୁ ଗଙ୍ଗାକୂଳରେ ଛାଡ଼ି ଆସୁଛି ।'' ଏପରି କହି ସେ ଗଙ୍ଗାକୂଳକୁ ଚାଲିଗଲା । ତା'ଠାରୁ ଭୂତ ଛାଡ଼ିଗଲା ବୋଲି ଲୋକଟିର ବିଶ୍ୱାସ ହୋଇଗଲା ।

କିଛି ଦିନ ପରେ ଦିନେ ଗୁଣିଆ ସେହି ଲୋକକୁ ସାଙ୍ଗରେ ଧରି ରାସ୍ତାରେ ଥିବା ଖୁମ୍ବ ପାଖକୁ ନେଇଗଲା । ସେଠାରେ ସେ ସବୁକଥା ବୁଝାଇ ଦେଲା ଆଉ କହିଲା, 'ଏହା ଭୂତ ନୁହେଁ । ଖୁମ୍ବର ଛାୟା । ଭ୍ରମବଶତଃ ଭୂତଭଳି ଦେଖାଯାଉଥିଲା ।' ଏଥର ସେ ତା' ଭ୍ରମ ଜାଣିଗଲା । ଏଣିକି ସେ ଛାୟା ଦେଖି ଆଉ ଭୂତ ବୋଲି ଭୟ କଲା ନାହିଁ । ପ୍ରକୃତରେ ସେହି ଛାୟା କେଉଁଆଡ଼େ ଚାଲିଗଲା ନାହିଁ । ତାହା ଯେମିତି ସେମିତି ରହିଥାଏ । ଅନ୍ୟ ଯେଉଁମାନେ ଏହାର ରହସ୍ୟକୁ ଜାଣି ନ ଥା'ନ୍ତି ସେମାନଙ୍କୁ ତାହା ଏବେବି ଭୂତ ବୋଲି ଭୟ ପ୍ରଦାନ କରୁଛି । କିନ୍ତୁ ଏବେ ସେହି ଲୋକଟି ନିଜେ ଗୁଣିଆ ହୋଇଯାଇଛି । ସେ ଏବେ ଅନ୍ୟଙ୍କର ଭୂତ ଛଡ଼ାଉଛି । ମିଥ୍ୟା ଭୂତ ପାଇଁ ଯେଉଁ ଉପଚାର କରାଯାଏ, ତାହା ବି ବାସ୍ତବରେ ମିଥ୍ୟା, କିନ୍ତୁ ତା' ବିନା ଏହା ଜଣାପଡ଼େ ନାହିଁ ।

**ଠିକ୍ ଏହିଭଳି ବାସ୍ତବରେ ମାୟା ବୋଲି କିଛି ନାହିଁ । କିନ୍ତୁ ମାୟା ଥିବା ଭଳି ସମସ୍ତଙ୍କୁ ପ୍ରତୀୟମାନ ହେଉଛି । ତାକୁ ଦୂର କରିବା ପାଇଁ ସାଧନ ବି କରାଯାଉଛି ।**

ଆଉ ସାଧନ ଦ୍ୱାରା ଦୂର ବି ହୋଇଯାଉଛି । **ମାୟା ସଦ୍ ହେଉ ଅଥବା ଅସଦ୍- ଏଥିନିମନ୍ତେ ସାଧନା କରିବା ପରମ ଆବଶ୍ୟକ ।** ବିନା ତୀବ୍ର ସାଧନାରେ ତାହା ଦୂର ହୁଏ ନାହିଁ ।

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ବିଦେହ ଯେତେବେଳେ ଯୋଗେଶ୍ୱରଙ୍କୁ ଈଶ୍ୱରୀୟ ମାୟାମୁକ୍ତ ହେବାର ସରଳ ଉପାୟ ପଚାରିଲେ ସେତେବେଳେ ସେ କହିଲେ, 'ରାଜନ୍ ! ମାୟା ରହେ କେଉଁଠି ?''

ରାଜା ହସି ହସି କହିଲେ, ''ମହାରାଜ ! ମାୟା ସିନା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବସିଥିଲେ କହନ୍ତି । ସେ ସ୍ତ୍ରୀ, ପୁରୁଷ, ଘର, ଦ୍ୱାର, କୁଟୁମ୍ବ, ପରିବାର, ଧନ, ବୈଭବ ସବୁଥିରେ ବ୍ୟାପ୍ତ । ପୁରୁଷ ଯେତେବେଳେ ସ୍ତ୍ରୀକୁ ଦେଖେ, ବିମୋହିତ ହୋଇଯାଏ, ସ୍ତ୍ରୀର ମୋହିନୀ ମାୟାରେ ଫସିଯାଏ । ସ୍ତ୍ରୀ ପୁରୁଷକୁ ଦେଖି ମୋହିତ ହୋଇଯାଏ । ଚକ୍‌ଚକ୍ ମାରୁଥିବା ସୁନା ଯେଉଁଠାରେ ଦେଖା ଯାଏ, ଆମେ ମୋହିତ ହୋଇଯାଉ, ତାହା ପାଇବା ପାଇଁ ଯାହା ମାନେ ତାହା କରିବାକୁ କୁଣ୍ଠିତ ହେଉନା । ମହନଭୋଗ, ମଲାଇ ଲଡୁ, ରସଗୋଲା, କ୍ଷୀରସାଗର, ପେସ୍ତା ଖିସ୍‌ମିସ୍, ଉତ୍ତମ ଘୃତ ପ୍ରସ୍ତୁତ ମଗଜଲଡୁ- ଏ ସବୁ ସମ୍ମୁଖରେ ଦେଖିବା କ୍ଷଣି ଆମେ ସବୁକଥା ଭୁଲିଯାଉ, ପାଟି ଲାଳେଇ ଯାଏ । ମୁଁ ଜାଣିବାରେ ଏହି ସମସ୍ତରେ ମାୟା ପରିପୂର୍ଣ୍ଣ ହୋଇ ରହିଛି ।''

ଏପରି କଥା ଶୁଣି ମହାମୁନି ପ୍ରବୁଦ୍ଧ ହସି ହସି କହିଲେ, ''ହଉ ତା'ହେଲେ ରାଜନ୍ ! ଯେଉଁଠାରେ ଯେଉଁ ବସ୍ତୁର ସମ୍ଭାବନା ଥାଏ, ପ୍ରଥମେ ସେହି ବସ୍ତୁର ଅନୁସନ୍ଧାନ କରିବା ଉଚିତ । ଯେପରି କାହାର ଓଟ ହଜିଯାଇଛି, ସେ ଯଦି ତାକୁ ଘିଅ ରଖିବା ହାଣ୍ଡିରେ ଖୋଜେ ତାକୁ ମୂର୍ଖ ବୋଲି ଆମେ କହୁ । ପ୍ରଥମେ ଏହି ପତି-ପତ୍ନୀଙ୍କ ସମ୍ବନ୍ଧରେ ବିଚାର କରାଯାଉ- ଏମାନଙ୍କର ସୁଖ କିପରି ? କାହିଁକି ଏମାନେ ଏତେ ନିବିଡ଼ ? ଯେଉଁମାନଙ୍କୁ ପେଟପୂରା ଭୋଜନ ବି ମିଳୁନାହିଁ ସେ ବି ପତ୍ନୀପାଇଁ ବ୍ୟାକୁଳ ହେଉଥାଏ । ବିନା ସ୍ତ୍ରୀର ସଂସାର ତାକୁ ଦୁଃଖମୟ ଜଣାଯାଏ । ସ୍ତ୍ରୀ ପାଇଗଲେ ସୁଖ ପାଇଗଲା ବୋଲି ସେ ଭାବେ । ଦୁଃଖର ନାଶ ଓ ସୁଖ ପ୍ରାପ୍ତି ନିମନ୍ତେ ଲୋକମାନେ ବିବାହ କରନ୍ତି । ପରସ୍ପର ପତି-ପତ୍ନୀ ସମ୍ବନ୍ଧରୂପ ଦୃଢ଼ ରଜ୍ଜୁରେ ବାନ୍ଧି ହୋଇ କର୍ମାନୁଷ୍ଠାନ କରନ୍ତି । ଏବେ ଭାବିବାର କଥା, ଏମାନଙ୍କୁ ଏଥିରେ ସୁଖ ମିଳୁଛି ନା ଦୁଃଖ । ରାଜନ୍ ! ତୁମେ ହିଁ କୁହ, ତୁମେ ତ ବିବାହ କରିଛ, କେତେ ସୁଖ ମିଳିଛି ?''

ରାଜା ଲଜ୍ଜିତ ହୋଇଗଲେ ଆଉ କହିଲେ, ''ସୁଖ କାଇଁ ଆଜ୍ଞା ? ବିବାହ ପୂର୍ବରୁ ମିଥ୍ୟା ମନୋରଥ ଅନେକ ଥିଲା- ବିବାହ କଲେ ସୁଖ ମିଳିବ, ୟା କରିବି, ତା' କରିବି । କିନ୍ତୁ ବିବାହ କ'ଣ କଲା ? ଦୁଃଖର ଏକ ବିରାଟ ପାହାଡ଼ ଲଦି ଦେଲା । କେଜାଣି କ୍ଷଣକ

ପାଇଁ କେତେବେଳେ ସୁଖ ମିଳିଥିବ ପରା, କିନ୍ତୁ ତାହା ପ୍ରକୃତ ସୁଖ ନୁହେଁ, ସୁଖର ଏକ ଆଭାସ ମାତ୍ର, ଯାହାର ପରିଣାମ କିନ୍ତୁ ଦୁଃଖ । ଏତେ ହେଉଥିଲେ ବି ଘର ଛାଡ଼ି ଯିବା ପାଇଁ ମନ ହେଉନାହିଁ ।''

ମହାମୁନି ପ୍ରବୁଦ୍ଧ ହସି ହସି କହିଲେ, ''ରାଜନ୍ ! ବାସ୍ ! ଏହା ହିଁ ହେଉଛି ଭଗବାନଙ୍କର ମାୟା । ଏହିପରି ଆପଣ ସବୁକଥାରେ ଅନୁମାନ କରିପାରନ୍ତି । ଧନ ନ ଥିବା ବେଳେ ଖୁବ୍ ଖରାପ ଲାଗେ । ସେତେବେଳେ ଧନ ପାଇଲେ ସୁଖୀ ହୋଇ ପାରିବା ବୋଲି ଭାବନା ଆସେ । ଦୈବଯୋଗରୁ ଧନ ମିଳିଯାଏ । କିନ୍ତୁ ଧନ ମିଳିଲାନାହିଁ ଯେ ଦୁଃଶ୍ଚିନ୍ତା ପର୍ବତ ଭଳି ମାଡି ଆସିଲା । ଧନ ନ ଥିବା ମଣିଷ ଟିକିଏ ଅଚିନ୍ତାରେ ଶୋଉଥିଲା । ଏବେ ନିଦ ବି ହୁଏ ନାହିଁ । ଦିନ-ରାତି ସେହି ଧନ ଚିନ୍ତା ଘୋଟି ରହିଥାଏ । କାଳେ କମି ଯବିକି, କେହି ମାଗିବା ପାଇଁ ଆଉ ଆସିଗଲାକି, ସମ୍ବନ୍ଧୀ ସମ୍ପର୍କୀୟ ଆଉ ନେଇଗଲେକି, ଏପରି ଦୁଃଶ୍ଚିନ୍ତା ଲାଗି ରହିଥାଏ । ଧନର ବୃଦ୍ଧି କିପରି ହେବ, କ'ଣ କଲେ ଅଧିକ ଲାଭ ହେବ- ଏହିଭଳି ଅନେକ ଚିନ୍ତା ଧନ ସହିତ ଯୋଖି ହୋଇ ଚାଲି ଆସେ । କଦଳୀ ଗଣ୍ଡିରେ ପଳଖ ଛଡ଼ା ଯେପରି କିଛି ସାର ବସ୍ତୁ ନଥାଏ, ଠିକ୍ ସେହିଭଳି ଧନ ଭିତରେ ତତ୍ତ୍ୱ ପଦାର୍ଥ ଏତେ ଟିକିଏ ବି ନଥାଏ । ପିଆଜ ଚୋପା ଯେତେ ଛଡ଼ାଉଥିବା ପଛକୁପଛ ସେହି ଚୋପା ହିଁ ପାଉଥିବା ।

''ରାଜନ୍ ! ଧନ ଆସିଗଲେ ହୃଦୟ କଠୋର ହୋଇଯାଏ । ଦୟା ରହେ ନାହିଁ । ସମସ୍ତଙ୍କୁ ଅବିଶ୍ୱାସ ହେବାରେ ଲାଗେ । ଅହଂକାର ବଢ଼ିଯାଏ, ସବୁବେଳେ ଭୟର ଛାୟା ଲାଗିରହେ । ରାଜନ୍ ! କେତେ କହିବା ! **ଧନକୁ ଏମିତି ତ ଅର୍ଥ ବୋଲି କୁହାଯାଏ, ବାସ୍ତବରେ କିନ୍ତୁ ଏହା ସମସ୍ତ ଅନର୍ଥର କାରଣ ହିଁ ହୋଇଥାଏ । ଚିନ୍ତା ବ୍ୟାଧି ବଢ଼ିଯାଏ । ଏ ସବୁ କଥା ଜାଣି ସୁଦ୍ଧା ଲୋକମାନେ ଧନର ମମତା ତ୍ୟାଗ କରିପାରନ୍ତି ନାହିଁ । ଏହା ହିଁ ହେଉଛି ଭଗବାନଙ୍କର ମାୟା ।**

''ଘରର ବି ଏହି ଦଶା ହୋଇଥାଏ । ପାଖରେ ଘର ନ ଥିଲେ ଘରଟିଏ ନାହିଁ ବୋଲି ଖୁବ୍ ମନ ବ୍ୟସ୍ତ ହୁଏ । ସାଙ୍ଗ ବନ୍ଧୁଙ୍କ ଠାରୁ ଉଧାର କୌଣସି ପ୍ରକାର ଘରଟିଏ କରିବା ଆରମ୍ଭ ହୋଇଗଲେ ଇଟା ଆଣ, ଚୂନ ଆଣ, ସିମେଣ୍ଟ ଆଣ, କବାଟ ଆଣ, କାଠ ଆଣ, ୟାକୁ ଆଣ, ତାକୁ ଆଣ, ମୂଲିଆ ଡାକ, ମିସ୍ତ୍ରୀ ଡାକ- ଏପରି ଅନେକ ଚିନ୍ତା । ଏହାପରେ ପୁଣି କବାଟ ଭଲ ହେଲାନାହିଁ, ଅମୁକଟା ଠିକ୍ ହେଲାନି— ନାନା ଦୁଃଶ୍ଚିନ୍ତା ମନକୁ ଆସେ । ମଣିଷ ବିରକ୍ତ ହୋଇ ଭାବେ, 'ଯାଃ ! ବଣକୁ ପଳେଇଲେ ଶାନ୍ତି ମିଳନ୍ତା ।' କିନ୍ତୁ ତା' ବି ହୁଏ ନାହିଁ । ଘର କରିବା ପରେ ଆଲୁଅ ବ୍ୟବସ୍ଥା, ଖଟ ପଲଙ୍କ ବ୍ୟବସ୍ଥା, ଗାଈ ଘୋଡ଼ା ଯୋଗାଡ଼, ଗାଡ଼ି ଯାନର ଆବଶ୍ୟକତା ସବୁ କରିବା ପାଇଁ ଚିନ୍ତା ହୁଏ, ସବୁ

ହୋଇଯିବା ପରେ ବି ତୃପ୍ତି ଆସେ ନାହିଁ । ଘର ଅଛି ଘରଣୀ ନାହିଁ । ଘରଣୀ ଆଣିବାକୁ ହୁଏ । ଘରଣୀ ଅଛି ସନ୍ତାନ ନାହିଁ । ସନ୍ତାନ ନ ହେଲା ମାନେ ସବୁ ଗୁଡ଼ ଗୋବର ହୋଇଗଲା । ସନ୍ତାନ ହୋଇଗଲା ମାନେ ଚିନ୍ତାର ସ୍ରୋତ ପ୍ରବାହିତ ହୋଇଗଲା । ସେମାନଙ୍କୁ ଲାଳନ ପାଳନ କର, ପଢ଼ାଲେଖା କରାଅ, ବିବାହ କରାଅ, ସେମାନଙ୍କଠାରୁ ମଝିରେ ମଝିରେ ଗାଳି ଶୁଣ- ଏତେ ସବୁ ହେଉଥିଲେ ବି ମଣିଷ ଘର ଛାଡ଼ି ଚାଲି ଯିବାକୁ ଚାହେଁ ନାହିଁ । ଆଉ ଏହା ହିଁ ହେଉଛି ଭଗବାନଙ୍କର ମାୟା ।

''ଯାହା ପାଖରେ ଦି'ପଇସା ଅଛି ସେ ଟଙ୍କାଏ ପାଖରେ ଥିବା ଲୋକକୁ ସୁଖୀ ଭାବେ । ଟଙ୍କାଏ ବାଲା ସହସ୍ରପତିକୁ, ସହସ୍ରପତି କୋଟିପତିକୁ, କୋଟିପତି ପଦ୍ମପତିକୁ ଦେଖାଏ, ହେଲେ ସୁଖୀ କେହି ନଥା'ନ୍ତି । ସ୍ୱର୍ଗକୁ ଯାଆନ୍ତୁ, ସେଠାରେ ବି ସେହି ରୋଗ । ପ୍ରତିସ୍ପର୍ଦ୍ଧା ସର୍ବତ୍ର ଚାଲିଥାଏ । କେହି ବି ସୁଖୀ ନଥା'ନ୍ତି । ଜଣେ ଆଉ ଜଣକୁ ଦେଖି ଜଳୁଥାଏ । ମୋ ଘର ସାନ, ପଡ଼ୋଶୀର ଘର କେଡ଼େ ବଡ଼ ! ସ୍ୱର୍ଗରେ ବି ଏହି ଦଶା- ଜଣକର ବିମାନ ବିଶାଳ, ଆଉ ଜଣକର କ୍ଷୁଦ୍ର । ଜଣକୁ ସେବା କରିବା ପାଇଁ ସହସ୍ର ଅପସରା ଥିବାବେଳେ ଆଉ ଜଣଙ୍କ ପାଖରେ ଜଣେ ମାତ୍ର ଥାଏ- ଏହା ଦେଖି ସେ ଜଳେ । ଏହିଭଳି ସାତିଶୟ ଦୋଷ ବ୍ରହ୍ମଲୋକ ପର୍ଯ୍ୟନ୍ତ ଦେଖାଯାଏ । ତେବେ ବି ଲୋକମାନେ ଏହାର ମୋହ ଛାଡ଼ନ୍ତିନାହିଁ । ଏହା ହିଁ ହେଉଛି ଭଗବାନଙ୍କର ମାୟା ।

ରାଜା କହିଲେ, ''ଭଗବନ୍ ! ମାୟାକୁ ତ ଆମେ ଦିନରାତି ବୁଝୁଛୁ । ଆପଣଙ୍କର ଜ୍ୟେଷ୍ଠ ଭାଇ ଭଗବାନ ଅନ୍ତରୀକ୍ଷ ତାହାର ସ୍ୱରୂପ ମଧ୍ୟ କହିଛନ୍ତି । ଏହି ମାୟାରୁ ମୁକ୍ତ ହେବାର ଉପାୟ ଆପଣଙ୍କୁ ପଚାରୁଛି ।''

ଯୋଗେଶ୍ୱର ପ୍ରବୁଦ୍ଧ କହିଲେ, ''ରାଜନ୍ ! ମୁଁ ସେଇ କଥା ତ ଆପଣଙ୍କୁ କହୁଛି ଯେ, ସର୍ବ ପ୍ରଥମ ଜିଜ୍ଞାସୁକୁ ଏହି ସଂସାରୀ ବିଷୟରେ ବିଚାର ଆଉ ବିବେକ ଦ୍ୱାରା ଦୋଷ ଦୃଷ୍ଟି କରିବା ଉଚିତ । ଏହି ସଂସାରୀ ବିଷୟରେ କୌଣସି ସୁଖ ନାହିଁ ବୋଲି ଦୃଢ଼ରୂପେ ଧାରଣ ହେବା ଆବଶ୍ୟକ । **ଲୋକ ଓ ପରଲୋକ ଉଭୟ କର୍ମଜନ୍ୟ ତଥା କ୍ଷୟିଷ୍ଣୁ ଓ ନାଶବାନ ବୋଲି ଦୃଢ଼ ଧାରଣା ହେବା ଉଚିତ । ଏପରି ଜିଜ୍ଞାସୁ ଏହାପରେ ଗୁରୁଦେବଙ୍କର ଶରଣ ଗ୍ରହଣ କରିବା ଆବଶ୍ୟକ ।**

ରାଜା ପଚାରିଲେ, ''ମହାରାଜ ! **ଗୁରୁ କିପରି ହୋଇଥା'ନ୍ତି ?''**

ମୁନି କହିଲେ, ''ରାଜନ୍ ! ଅନେକ ଲୋକଙ୍କର ଶାସ୍ତ୍ର ବିନା ବି ପରଂବ୍ରହ୍ମ ଜ୍ଞାନ ହୋଇଯାଏ । ସେମାନେ ବ୍ରହ୍ମାନୁଭବ ତ କରିପାରନ୍ତି, କିନ୍ତୁ ଶାସ୍ତ୍ରୀୟ ପ୍ରକ୍ରିୟା ଜାଣି ନ ଥିବାରୁ ଅନ୍ୟଙ୍କୁ ଉତ୍ତମ ଭାବରେ ବୁଝାଇ ପାରନ୍ତି ନାହିଁ । ସେମାନଙ୍କର କେତେକ ବାଚାଳ ଶିଷ୍ୟ ନିଜର ତୀକ୍ଷ୍ଣ ବୁଦ୍ଧି ଦ୍ୱାରା ତାଙ୍କ କଥାର କିଛି ନା କିଛି ଅର୍ଥ ବାହାର କରି ଲୋକଙ୍କୁ

ବୁଝାନ୍ତି । ଏହା ଫଳରେ ଲୋକରେ ଏକ ଅନ୍ଧ ପରମ୍ପରା ପ୍ରଚଳନ ହୋଇଯାଏ । ଏକ ପ୍ରକାର ଦୁରାଗ୍ରହୀ ପନ୍ଥ ଠିଆ ହୋଇଯାଏ । ଏହା ପ୍ରତିବଦଳରେ ଏପରି ବି ଅନେକ ଲୋକ ହୋଇଥା'ନ୍ତି ଯେଉଁମାନେ ଶାସ୍ତ୍ରର ଅନେକ ଶବ୍ଦ କଣ୍ଠସ୍ଥ କରିଥା'ନ୍ତି, କଥା କଥାରେ ଶାସ୍ତ୍ର ପ୍ରସଙ୍ଗର ଉଦାହରଣ ଦେଉଥା'ନ୍ତି, ହେଲେ ସେମାନଙ୍କର ପରଂବ୍ରହ୍ମ ଜ୍ଞାନ ନଥାଏ, ଅନୁଭବ ଜ୍ଞାନ ଶୂନ୍ୟ ଥାଆନ୍ତି । ଏମାନେ ସେମାନଙ୍କର ଆଜୀବିକା ନିମନ୍ତେ ଲୋକଙ୍କୁ ଲଣ୍ଡା କରିବାରେ ଲାଗିଥା'ନ୍ତି । କର୍ଣ୍ଣମନ୍ତ୍ର ଦିଅନ୍ତି- ଏଥିରେ ଆଜୀବିକା ତ ଠିକ୍ ଚଳିଯାଏ, ହେଲେ ମୁକ୍ତି ବା ଭକ୍ତି ପ୍ରାପ୍ତି ସେମାନଙ୍କର ହୋଇପାରେ ନାହିଁ । ଯେତେବେଳେ ସେମାନେ ଅନୁଭବ ଶୂନ୍ୟ, ସେମାନଙ୍କଠାରୁ ଯେଉଁମାନେ ଉପଦେଶ ଗ୍ରହଣ କରିଥା'ନ୍ତି ସେମାନେ ଅବା କିପରି କ'ଣ ପାଆନ୍ତେ ! ଏଣୁ **ଗୁରୁ ଏପରି ହେବା ଆବଶ୍ୟକ, ଯିଏ ଶାନ୍ତ ଚିତ୍ତ ହୋଇଥିବେ, ଆଉ ଶବ୍ଦବ୍ରହ୍ମରେ ଓ ପରବ୍ରହ୍ମରେ ନିଷ୍ଣାତ ହୋଇଥିବେ । ଶାସ୍ତ୍ର ବିଷୟରେ ଯାହାର ବିଧିବଦ୍ ଜ୍ଞାନ ଥିବ, ଯିଏ ପଢ଼ାପଢ଼ି କରିଥିବ, ଅତଃ ଅନ୍ୟଙ୍କୁ ବୁଝାଇ ପାରିବେ ଓ ଯାହାଙ୍କର ଅନୁଭବ ଜ୍ଞାନ ବି ଥିବ, କ୍ରିୟାବାନ ହୋଇଥିବେ । ଶ୍ରେୟ ସାଧନର ଜିଜ୍ଞାସୁ ଏପରି ଗୁରୁଙ୍କ ଶରଣ ନେବା ଉଚିତ ।''**

ରାଜା ପଚାରିଲେ, ''ହଁ ଭଗବନ୍ ! ଗୁରୁଙ୍କ ଶରଣ ଗ୍ରହଣ କଲେ ତାଙ୍କଠାରୁ କେଉଁ ଶିକ୍ଷା ନେବାକୁ ହୋଇଥାଏ ?''

ମୁନି କହିଲେ, ''ରାଜନ୍ ! କେତେକ ସ୍ୱାର୍ଥପର ଲୋକ ଯିବା କ୍ଷଣି ଗୁରୁ ଜିଜ୍ଞାସୁ ସାଧକକୁ କୁହନ୍ତି, 'ମୁଁ ବି ବ୍ରହ୍ମ, ତୁ ବି ବ୍ରହ୍ମ । ଏହାପରେ ଆଉ ପାପ କ'ଣ ପୁଣ୍ୟ କ'ଣ !' ଏପରି କହି ସେମାନଙ୍କଠାରୁ ସମସ୍ତ କର୍ମ ଛଡ଼ାଇ ନିଅନ୍ତି । ଏହା ଫଳରେ ମାୟାର ଫାନ୍ଦ କଟିବା ବଦଳରେ ଅଧିକ ସୁଦୃଢ଼ ହୋଇଯାଏ । ପ୍ରକୃତ ଗୁରୁ ଅଧିକାରୀଙ୍କୁ ହିଁ ଉପଦେଶ ଦେଇଥା'ନ୍ତି । ଆମକୁ ମାୟା ଉପରେ ବିଜୟ ହାସଲ କରିବାକୁ ହେବ । ମାୟା, ମାୟାର ସେବନରେ ଜିତି ହୋଇ ପାରେ ନାହିଁ । ଯେଉଁ ସ୍ତ୍ରୀ ଅଧିକତର ବାଚାଳ ତାକୁ ମୁହଁ ଦେବା ଉଚିତ ନୁହେଁ । ତା'ର ଅନିଷ୍ଟ କଲେ ସେ ଅଧିକ ବକର ବକର ହେବ । ତେଣୁ ତା' ଆଡୁ ମୁହଁ ମୋଡ଼ି ତା' ସ୍ୱାମୀଙ୍କର ସେବା କରିବା ଉଚିତ, ସ୍ୱାମୀଙ୍କ ସହିତ ସମ୍ବନ୍ଧ ଯୋଡ଼ିବା ଉଚିତ । ସ୍ୱାମୀ ସହିତ ସମ୍ବନ୍ଧ ସ୍ଥାପନ କଲେ ସ୍ତ୍ରୀ ସ୍ୱତଃ ସଙ୍କୋଚ କରିଥାଏ । ଏଣୁ ଗୁରୁଦେବ ରୂପେ ଗ୍ରହଣକରି ତାଙ୍କଠାରୁ ଭାଗବତ-ଧର୍ମ ଶିକ୍ଷା କରିବା ଉଚିତ । ଭଗବାନଙ୍କର ସେବା ପୂଜା କିପରି କରିବା ଉଚିତ, ବୈଷ୍ଣବଙ୍କ ସହିତ କିପରି ବ୍ୟବହାର କରିବା ଉଚିତ, ଉପାସନା କିପରି କରିବା ଉଚିତ- ଏ ସମସ୍ତ କଥା ଶିକ୍ଷାକରି ସେପରି ଆଚରଣ ଅଭ୍ୟାସ କରିବା ଆବଶ୍ୟକ । **ଭାଗବତ-ଧର୍ମ ଶିକ୍ଷାକରି ଯିଏ ଏହାକୁ**

ନିଷ୍କପଟ ଭାବରେ ଆଚରଣ କରେ ସେମାନଙ୍କ ଉପରେ ଅଖିଳେଶ୍ୱର ଅଚ୍ୟୁତ ଶ୍ରୀହରି ଅତି ପ୍ରସନ୍ନ ହୋଇ ଯାଆନ୍ତି । ରାଜନ୍ ! ଜୀବକୁ ସେ ପର୍ଯ୍ୟନ୍ତ କ୍ଳେଶ ହୁଏ ଯେ ପର୍ଯ୍ୟନ୍ତ ପ୍ରଭୁଙ୍କ ପ୍ରସନ୍ନତାର ଅନୁଭବ ଜୀବନରେ ହୋଇ ନଥାଏ । ଶ୍ରୀହରି ପ୍ରସନ୍ନ ହୋଇଗଲେ ସଂସାରରେ ଏପରି କୌଣସି ବସ୍ତୁ ରହେ ନାହିଁ ଯାହା ପାଇ ହୁଏ ନାହିଁ । ସକଳ ବସ୍ତୁ ମିଳିଯାଏ । ଭକ୍ତ ଯାହା ଯାହା କାମନା କରେ ଭଗବାନ ସେହି ସେହି ବସ୍ତୁ ଦେଇଦିଅନ୍ତି । ଏପରିକି ଭଗବାନ ଭକ୍ତ ପାଇଁ ନିଜେ ନିଜକୁ ବି ଦେଇଦିଅନ୍ତି । ସେତେବେଳେ କିନ୍ତୁ ଭକ୍ତ ଭଗବାନଙ୍କୁ ପ୍ରେମ କରିବା ବ୍ୟତୀତ ଅନ୍ୟ କୌଣସି ସାଂସାରିକ ବସ୍ତୁର ଯାଚନା କରେିପାରେ ନାହିଁ ।''

ରାଜା ପଚାରିଲେ, ''ଭଗବନ୍ ! ଯେଉଁ ଭାଗବତ-ଧର୍ମ କାମଧେନୁ ଭଳି କଳ୍ପବୃକ୍ଷ ସଦୃଶ ସକଳ ଇଚ୍ଛା ପରିପୂର୍ଣ୍ଣ କରିଥାଏ, ଯାହାର ଆଚରଣ କଲେ ପରବ୍ରହ୍ମ ପ୍ରଭୁ ବି ପ୍ରସନ୍ନ ହୋଇଯାଆନ୍ତି, କୃପାକରି ସେହି ଭାଗବତ-ଧର୍ମ ମୋତେ ଶୁଣାନ୍ତୁ । ସେହି ଭାଗବତ-ଧର୍ମ କ'ଣ, ତାହାର ଆଚରଣ କିପରି କରାଯିବା ଉଚିତ ?''

ଏହା ଶୁଣି ମହାମୁନି ପ୍ରବୁଦ୍ଧ କହିଲେ, ''ରାଜନ୍ ! ନିଖିଳ-ଗୁଣ-ଗୁଣାର୍ଣ୍ଣବ ସଦ୍ଗୁଣୈକ ନିଳୟ ଭଗବାନ ବାସୁଦେବଙ୍କର ଅନବରତ ସେବାରେ ଲାଗିରହିବା ଆଉ ତାଙ୍କର ଦିବ୍ୟ ଗୁଣକୁ ଧାରଣ କରିବା ହେଉଛି ଭାଗବତ-ଧର୍ମ । ଯିଏ ଭାଗବତ-ଧର୍ମରେ ଦୀକ୍ଷିତ ହୋଇଯାଏ ତାହାର ନିଷିଦ୍ଧ କର୍ମ କଦାପି ହୁଏ ନାହିଁ । ସେ ସବୁବେଳେ ସଦ୍‌କର୍ମରେ ଲାଗି ରହିଥାଏ । ତା'ର ଆଚରଣ ବିଶୁଦ୍ଧ ଓ ଆଦର୍ଶ ହୋଇଥାଏ ।''

ରାଜା ପଚାରିଲେ, ''ଭଗବନ୍ ! ଆପଣ ଆମକୁ ଯେଉଁ ଗୁଣ ଧାରଣ କରିବା ଉଚିତ ତାହା କୁହନ୍ତୁ ।''

ମହାମୁନି ପ୍ରବୁଦ୍ଧ କହିଲେ, ''ଠିକ୍ ଅଛି ରାଜନ୍ ! ଏବେ ମୁଁ ଆପଣଙ୍କୁ ସେହି ସଦ୍‌ଗୁଣ ସମ୍ବନ୍ଧରେ କହୁଛି ଯାହା ଧାରଣ କରି ଭକ୍ତ ଭଗବାନଙ୍କର ପରମପ୍ରିୟ ହୋଇଯାଏ ।''

ମହାପ୍ରାଜ୍ଞ ସୂତ ଶୌନକାଦି ଋଷିଙ୍କୁ କହୁଛନ୍ତି- ''ହେ ମୁନିଗଣ ! ଯୋଗେଶ୍ୱର ପ୍ରବୁଦ୍ଧ ଯେଉଁ ପ୍ରକାରେ ଜନକଙ୍କୁ ଭାଗବତ-ଧର୍ମର ଉପଦେଶ ଦେଲେ ତାହା ବର୍ଣ୍ଣନା କରୁଛି ।''

**ଛପ୍‌ପୟ**

*ରହୈ ମୌନ ସ୍ୱାଧ୍ୟାୟ ସରଲତା ଚିତମହଁ ଧାରୈ ।*
*ବ୍ରହ୍ମଚର୍ଯ୍ୟ ବ୍ରତ ଧାରି ନ କାହୂ ଜୀବହିଁ ମାରୈ ।।*

*ସୁଖ ଦୁଖମହଁ ସମ ରହୈ ନିହାରୈ ସବ ଥଳ ହରିକୂଁ ।*
*ରହୈ ସଦା ଏକାନ୍ତ ନ ସମୁଝେ ଅପନୋ ଘରକୂଁ ॥*
*ପଟ ପବିତ୍ର ପହିନୈ ପରମ, ଯଥାଲାଭ ସଂତୋଷ ଚିତ ।*
*ସତତ ଭାଗବତ ଧରମ କେ, ଗ୍ରଂଥନି ମେ ହୀ ଦେହି ଚିତ ॥*



# ଭାଗବତ-ଧର୍ମ

**ଇତି ଭାଗବତାନ୍ ଧର୍ମାନ୍‌ଶିକ୍ଷାନ୍ ଭକ୍ତ୍ୟା ତଦୁତ୍ଥୟା ।**
**ନାରାୟଣପରୋ ମାୟାମଞ୍ଜସ୍ତରତି ଦୁସ୍ତରାମ୍ ॥☆**
(ଶ୍ରୀ ଭା. ୧୧ମ ସ୍କ. ୩ୟ ଅ. ୩୩ଶ୍ଳୋକ)

**ଛପ୍‌ପୟ**

*କରୈ ନ ନିନ୍ଦା ଭୂଲି ଅନ୍ୟ ଶାସ୍ତ୍ରନିକୀ କବହୂଁ ।*
*ଚାହେଂ ସରବସୁ ମିଲୈ ଅନୃତ ବୋଲୈ ନହିଂ ତବହୂଁ ॥*
*ସଂଯମ ମନ ଅରୁ ବଚନ କରମତେଂ ନିତଈ ରାଖୈଂ ।*
*ଶମ ଦମକୋ ଆଚରନ କରୈ ହରି ଚରିତନି ଭାଖୈ ॥*
*ଜନମ କରମ ଗୁନଗନ ଶ୍ରବନ, ଶ୍ରୀହରି କେ ନିତ ନିତ କରୈ ।*
*କଥା କୀରତନ ଧନାମହଁ, ରହୈ ମଗନ ମାୟା ତରୈ ॥*

ଭଗବାନ ହେଉଛନ୍ତି ଦିବ୍ୟ ଗୁଣର ଖଣି । ସକଳ ସଦ୍‌ଗୁଣର ଏକମାତ୍ର ଅଧୀଶ୍ୱର ଶ୍ରୀମନ୍ନାରାୟଣଙ୍କ ଗୁଣାବଳୀର ପ୍ରକାଶରେ ଅନ୍ୟ ଗୁଣର ପ୍ରକାଶ ହୋଇଥାଏ । ଯଦିଓ ସେ ସମସ୍ତଙ୍କର ସ୍ୱାମୀ, ସେ ହିଁ ହୋଇଥା'ନ୍ତି ଏ ସମସ୍ତର ଆଦି ସ୍ରୋତ । ନିର୍ମଳ ଦିବ୍ୟ ମାନସରୋବରରେ କର୍ଦ୍ଦମ ହୁଏତ ଥାଇପାରେ, ମାତ୍ର ତାହା ସର୍ବାତଳେ ହିଁ ଥିବ, ତାହାର ଅସ୍ତିତ୍ୱ କିନ୍ତୁ ଆମେ ଜାଣୁନା । ଆମକୁ ତ ପରମ ସୁଖକାରୀ ମୁନି ମନହାରୀ ସୁନ୍ଦର, ସ୍ୱଚ୍ଛ, ସୁଲଳିତ, ସ୍ୱାଦିଷ୍ଟ, ଶୀତଳ ତଥା ସୁଖକର ସଲିଳ ହିଁ ସର୍ବତ୍ର ଦୃଶ୍ୟ ହେଉଥାଏ । ଏହିଭଳି

---

☆ ଏ ଭାଗବତ-ଧର୍ମ ଦୀକ୍ଷା । ଗୁରୁବଚନେ ପାଇ ଶିକ୍ଷା ॥
ନିଶ୍ଚଳ ଚିତ୍ତେ କୃଷ୍ଣପାଦେ । ଭକତି ଲଭେ ଅପ୍ରମାଦେ ॥
ସେ ନାରାୟଣ ପରାୟଣ । ଏମନ୍ତେ ଅବିଦ୍ୟା ହରଣ ॥
(ଭାଗବତ : ଜଗନ୍ନାଥ ଦାସ: ୧୧ମ ସ୍କ. ୪ର୍ଥ ଅ.)

ଭଗବାନଙ୍କ ପାଖରେ ସକଳ ଦିବ୍ୟଗୁଣ ପୂର୍ଣ୍ଣ ଶକ୍ତିଯୁକ୍ତ ହୋଇ ନିବାସ କରୁଥା'ନ୍ତି । ଯିଏ ଯାହାକୁ ନିରନ୍ତର ଚିନ୍ତା କରୁଥାଏ ସେ ଠିକ୍ ତାହା ଭଳି ହୋଇଯାଏ । **ଭଗବାନଙ୍କର ଦିବ୍ୟଗୁଣାବଳୀର, ତାଙ୍କର ଦିବ୍ୟ ଲୀଳାସମୂହର ଅହର୍ନିଶ ଚିନ୍ତା କରି କରି ଭଗବଦ୍‌ଭକ୍ତଙ୍କ ପାଖକୁ ଭଗବାନଙ୍କର ଗୁଣ ଆସିଯାଏ । ସାଧୁଙ୍କୁ ନିଷ୍କପଟ ଭାବରେ ନିର୍ବ୍ୟଲୀକ ହୋଇ ସେବା କରିବା ଦ୍ୱାରା ସାଧୁତା ସ୍ୱତଃ ଆସିଯାଏ ।** ସାଧୁଙ୍କର ଆଚରଣ ବିଶୁଦ୍ଧ ରହିଥାଏ । ଏଣୁ ଭକ୍ତି ମାର୍ଗର ସାଧକ ସର୍ବପ୍ରଥମେ ସାଧୁ ସେବା କରିବା ବିଧେୟ । ଭାଗବତ ଧର୍ମର ଶିକ୍ଷା ସେହି ଭଗବଦ୍‌ଭକ୍ତ ଦେଇଥା'ନ୍ତି ଯିଏ ଏହି ଦୁସ୍ତର ମାୟାକୁ ପାରି ହୋଇ ପାରିଥା'ନ୍ତି, ଅତିକ୍ରମ କରିଯାଇ ଥାଆନ୍ତି ।

ମହାପ୍ରାଜ୍ଞ ସୂତ କହୁଛନ୍ତି- ''ହେ ମୁନିଗଣ ! ଭାଗବତ ଧର୍ମର ପ୍ରଶ୍ନ ପଚାରିବା କ୍ଷଣି ଯୋଗେଶ୍ୱର ପ୍ରବୁଦ୍ଧ ଯେଉଁଭଳି ମହାରାଜ ଜନକଙ୍କୁ ଉତ୍ତର ଦେଲେ ତାହା ମୁଁ ଆପଣମାନଙ୍କୁ କହୁଛି, ଶୁଣନ୍ତୁ ।''

ମହାମୁନି ପ୍ରବୁଦ୍ଧ କହିଲେ, ''ରାଜନ୍ ! **ଭାଗବତ-ଧର୍ମ ଅସଂଖ୍ୟ । ଯେଉଁ କର୍ମରେ ପରସ୍ପର ପ୍ରତି ପ୍ରେମ ଭାବ ବଢ଼େ, ସନ୍ତୋଷ ମିଳେ, ଶାନ୍ତି ବିରାଜମାନ କରେ, ସେ ସମସ୍ତ ଭାଗବତ-ଧର୍ମ ।** ଏହାର ସଂଖ୍ୟା ନାହିଁ, ଗଣନା ନାହିଁ, ସମୟ ସୀମା ନାହିଁ, ମର୍ଯ୍ୟାଦା ସୀମା ନାହିଁ- ତାହା ତ ଅପାର । ତେବେ ବି ସେ ସମସ୍ତ ମଧ୍ୟରୁ ଗୋଟିକର ମୁଁ ଅତି ସଂକ୍ଷେପରେ ବର୍ଣ୍ଣନା କରୁଛି । ଏଥି ମଧ୍ୟରୁ ଯେ କୌଣସି ଗୋଟିଏ ଧର୍ମକୁ, ଗୋଟିକର କିୟଦଂଶ ଧର୍ମ ଆଚରଣ କଲେ ପ୍ରାଣୀ ଭୟାନକ ଭୟରୁ ଚିରକାଳ ପାଇଁ ତ୍ରାହି ପାଇଯାଏ ।

(୧) **ଭକ୍ତି ପଥର ପଥିକକୁ ସର୍ବ ପ୍ରଥମେ ସମସ୍ତ ପ୍ରକାର ସଙ୍ଗ ପରିତ୍ୟାଗ କରିବାକୁ ହୋଇଥାଏ । ମୁକ୍ତିର ପଥକୁ ପୂର୍ଣ୍ଣତଃ ପରିଷ୍କୃତ କରୁଥାଏ ନିଃସଙ୍ଗତା ।** ଦେହଗେହରେ ତଥା ବିଷୟରେ ଯେଉଁ ଆସକ୍ତି ଥାଏ, ତାହାକୁ ଧୀରେ ଧୀରେ ହ୍ରାସ କରିବା ଉଚିତ, କାରଣ ଯେ ପର୍ଯ୍ୟନ୍ତ ବିଷୟରେ ଆସକ୍ତି କମେ ନାହିଁ ସେ ପର୍ଯ୍ୟନ୍ତ ଅଚ୍ୟୁତଙ୍କ ଠାରେ ଆସକ୍ତି ହୋଇପାରେ ନାହିଁ । ଚିତ୍ତକୁ ସ୍ୱାର୍ଥରୁ ଦୂର କରି ପରମାର୍ଥରେ ଲଗାଇବା ଉଚିତ । ବିଷୟରୁ ଘୁଞ୍ଚାଇ ବିହାରୀଙ୍କଠାରେ ଲଗାଇବା ଉଚିତ, ଅର୍ଥାତ୍ କର୍ମରୁ ଦୂରକରି ସତ୍‌କର୍ମରେ ନିୟୋଜିତ କରିବା ଉଚିତ ।

(୨) ଭକ୍ତର ମନୋଭାବ ସଂସାରରୁ ଯେତେବେଳେ ଦୂରେଇ ଯାଏ ସେତେବେଳେ ସାଧୁସଂଗ କରିବା ଉଚିତ । ଯାହାଙ୍କ ମନ କାମିନୀ, କାଞ୍ଚନ ତଥା କୀର୍ତ୍ତି ପ୍ରତିଷ୍ଠା ନିମନ୍ତେ ଆଗ୍ରହୀ ଥାଏ, ସେପରି ଲୋକଙ୍କୁ ସାଧୁସଂଗ ସୁହାଏ ନାହିଁ । ସେଠାରେ ବି ସେମାନେ ନିଜର ସ୍ୱାର୍ଥ ସିଦ୍ଧି ଖୋଜିଥା'ନ୍ତି । ପ୍ରାୟ ଦେଖାଯାଏ ଯେ ବିଷୟାସକ୍ତ ପୁରୁଷ କୌଣସି ସାଧୁଙ୍କ ପାଖକୁ ଯାଆନ୍ତି ନାହିଁ । ସେମାନଙ୍କଠାରେ କେତେ ଜ୍ଞାନ ବୈରାଗ୍ୟ ଥାଏ,

ଭଗବାନଙ୍କଠାରେ କେତେ ଭକ୍ତି ଥାଏ ତାହାକୁ ଦେଖନ୍ତି ନାହିଁ । ସେମାନଙ୍କର ଦୃଷ୍ଟି ସାଧୁସନ୍ଥଙ୍କ ବାହ୍ୟ ବସ୍ତୁ ଆଡ଼କୁ ଯାଇଥାଏ । କୌଣସି ପ୍ରକାର ତାଙ୍କ ପାଖରେ ଭକ୍ତିର ଅଭିନୟ କରି ତାଙ୍କର ଅମୁକ ବସ୍ତୁ ଠକି ଆଣିବା ଏପରି ଥାଏ ସେମାନଙ୍କର ଭାବନା । ଯିଏ ସମସ୍ତ ବିଷୟରୁ ମୁହଁ ମୋଡ଼ି ଦେଇଥାଏ, ତାଙ୍କୁ ପୁଣି କିଏ କ'ଣ ଠକି ପାରିବ ! ନିଜେ ଠକି ଯାଆନ୍ତି । ଏଣୁ **ସାଧୁଙ୍କ ପାଖକୁ ତୁଛ ବିଷୟ ସୁଖର ପୁଟୁଳି ଧରି ଯିବା ଅନୁଚିତ । ଭାଗବତ ଧର୍ମକୁ ଶିଖିବା ପାଇଁ ସାଧୁଙ୍କ ଶରଣ ଗ୍ରହଣ କରିବା ଉଚିତ ।**

**(୩) ପ୍ରଥମେ ବିଷୟ ପ୍ରତି ନିଃସଙ୍ଗତା, ଦ୍ୱିତୀୟ ସାଧୁସଙ୍ଗ, ଆଉ ତୃତୀୟ ଗୁଣ ହେଉଛି ଲୋକମାନଙ୍କ ସହିତ ଯଥୋଚିତ ବ୍ୟବହାର କରିବା ।** ହଠାତ୍ ଏପରି ଯୋଗ୍ୟତା ହୋଇନଥାଏ ଯେ ସମସ୍ତଙ୍କ ସହିତ ବ୍ରହ୍ମଭାବ ଦେଖାଇହେବ । କିନ୍ତୁ ଯେତେବେଳେ ଏପରି ସ୍ଥିତି ହୋଇଯିବ, ବଡ଼ ସାନ, ଭଲ ଖରାପର ଭେଦଭାବ ଆଉ ରହିବ ନାହିଁ, ଏହାପରେ ଆଉ ସାଧନର କି ଆବଶ୍ୟକତା ରହିବ ! ସାଧକ ସେତେବେଳେ ସମସ୍ତଙ୍କ ସହିତ ଯଥୋଚିତ ବ୍ୟବହାର କରୁଥିବା ଉଚିତ । ସଂସାରରେ ଏପରି ନିଜ ସ୍ଥିତିଠାରୁ ନିମ୍ନରେ ଥିବା ଲୋକ ଥାଆନ୍ତି, କେତେକ ସମାସ୍କନ୍ଧ ବି ଥାଆନ୍ତି ଆଉ କେତେକ ନିଜଠାରୁ ଉତ୍ତମ ସ୍ଥିତିର ଥାଆନ୍ତି- ଏହି ତିନିଙ୍କ ସହିତ ଏକ ପ୍ରକାର ବ୍ୟବହାର କରୁଥିବା ଉଚିତ । ନିଜ ଠାରୁ ନିମ୍ନ ସ୍ଥିତିର ଦୀନ ହୀନ ଲୋକଙ୍କ ପ୍ରତି ଦୟା ଭାବ ପ୍ରଦର୍ଶନ କରିବା ଉଚିତ । ନିଜର ସମାସ୍କନ୍ଧଙ୍କ ସହିତ ମୈତ୍ରୀଭାବ ରଖିଥିବା ଉଚିତ । ଅନେକ କ୍ଷେତ୍ରରେ ଏପରି ବି ହୋଇଥାଏ, ନିଜର ସମାସ୍କନ୍ଧ ଥିବା ଜଣଙ୍କର ଯଦି ଧନ, ବୈଭବ, ପଦ ପ୍ରତିଷ୍ଠ ତଥା ଅନ୍ୟ କିଛି ବୃଦ୍ଧି ପାଏ ତେବେ ତାହା ଦେଖି ଈର୍ଷା ଜାତ ହୁଏ । ସେମାନଙ୍କର ଉତ୍ଥାନ ଦେଖି ସେ କିପରି ଏତେ ପାଇଲା ବୋଲି ଭାବନା ଆସେ ।

ନିଜର ସମାସ୍କନ୍ଧ ଭିତରୁ ଯଦି କାହାର ପତନ ହୋଇଯାଏ, ଧନ, ବୈଭବ, ପ୍ରତିଷ୍ଠା ଆଦି ହ୍ରାସ ହୋଇଯାଏ ତେବେ ତାକୁ ଦେଖି ଅପମାନିତ କରିବାକୁ ମନ ହୁଏ, ତାଛଲ୍ୟ କରାଯାଏ, ଘୃଣା ଆସେ । ସାଧକ କିନ୍ତୁ ଏପରି କରିବା ଅନୁଚିତ । **ନିଜର ସମାସ୍କନ୍ଧ ଲୋକ ଯେଉଁଭଳି ପରିସ୍ଥିତିରେ ଥାଉ ପଛେ, ତାଙ୍କ ପ୍ରତି ମୈତ୍ରୀ ଭାବ ରଖିଥିବା ଉଚିତ ।**

ଯିଏ ଆମଠାରୁ ବଡ଼, ମହାପୁରୁଷ, ତାଙ୍କ ସହିତ ନମ୍ରତାପୂର୍ଣ୍ଣ ବ୍ୟବହାର କରିବା ଉଚିତ । ତାଙ୍କୁ ଦେଖିବା କ୍ଷଣି ଉଠି ଠିଆ ହୋଇଯିବା, ଯଥୋଚିତ ଦଣ୍ଡ ପ୍ରଣାମ କରିବା, କୁଶଳ ସମ୍ଭାଷଣ କରିବା, ଯଥାଶକ୍ତି ସେବା କରିବା, ତାଙ୍କ ପ୍ରଶ୍ନର ନମ୍ରତାପୂର୍ଣ୍ଣ ଉତ୍ତର ଦେବା ଉଚିତ । ତାଙ୍କ ସମ୍ମୁଖରେ ନିଜର ପ୍ରଶଂସା ନ କରୁଥିବା ଉଚିତ । ନିଜର ପ୍ରଭାବ, ବୈଭବ ପ୍ରଦର୍ଶିତ ନ କରୁଥିବା ଉଚିତ ।

(୪) ପବିତ୍ରତା ରଖିଥିବା ଉଚିତ । ପବିତ୍ରତା ଦୁଇ ପ୍ରକାରର । ଗୋଟିଏ ଭିତରର, ଅନ୍ୟଟି ବାହ୍ୟ । କାମ କ୍ରୋଧାଦି ତ୍ୟାଗ କଲେ ଅନ୍ତର ପବିତ୍ର ହୁଏ । ବାହ୍ୟ ପବିତ୍ରତା ମୃତ୍ତିକା ତଥା ଜଳ ଆଦିରେ ହୋଇଥାଏ । ଦୁଇ ପ୍ରକାରର ପବିତ୍ରତା ପ୍ରତି ବିଶେଷ ଧ୍ୟାନ ଦେଉଥିବା ଉଚିତ ।

(୫) ତପ କରିବା ଉଚିତ । ପ୍ରାଣାୟାମକୁ ପରମ ତପ କୁହାଯାଏ । ଶରୀରକୁ ତପନ କରିବା ହେଉଛି ତପ । ଉପବାସ ଏକ ବିଶେଷ ତପ । ଏକାଦଶୀ, ଜନ୍ମାଷ୍ଟମୀ, ଶିବରାତ୍ରି (ଜାଗର), ଶ୍ରୀରାମ ନବମୀ ଆଦି ବ୍ରତ କରିବା ଉଚିତ । ଯେତେଦୂର ସମ୍ଭବ ହୋଇପାରେ ଜୀବନକୁ ତପମୟ କରିବାକୁ ଚେଷ୍ଟା କରିବା ଉଚିତ ।

(୬) **ତିତିକ୍ଷା** : ପ୍ରାରବ୍ଧ ଅନୁସାରେ ମିଳୁଥିବା ସୁଖ ଦୁଃଖକୁ ବିନା ପ୍ରତିକାରରେ ସ୍ୱେଚ୍ଛାରେ ଭୋଗ କରିବାକୁ ତିତିକ୍ଷା କୁହାଯାଏ । ଦୁଃଖ ଯେପରି ହୋଇଥାଉ ପଛେ ତାକୁ ଲାଘବ କରିଦେବା ଉଚିତ । ଯେତେଦିନ ପାଇଁ ଦୁଃଖ ହୋଇଥାଏ, ତାହା ସହିଯିବା । ସେହିଭଳି ଭାଗ୍ୟବଶତଃ ଯେଉଁ ସୁଖ ମିଳେ ତାକୁ ଅଧିକ ବଢ଼ାଇବାକୁ ଚେଷ୍ଟା ନ କରି, ସେତିକିରେ ସନ୍ତୋଷର ସହିତ ଭୋଗ କରିବା । **ସାରାଂଶ ହେଉଛି ଦ୍ୱନ୍ଦ୍ୱକୁ ନିର୍ବିକାର ଭାବରେ ସହିଯିବା ।**

(୭) ମୌନ : ବାଣୀର ସଂଯମକୁ ମୌନ କୁହାଯାଏ । ଭଗବାନଙ୍କ ମାୟା ଏପରି ଯେ ବାଣୀ ଦ୍ୱାରା ଅନ୍ୟର ନିନ୍ଦା, ସ୍ତୁତି ନ କରି ରହି ହୁଏ ନାହିଁ । ସ୍ୱାର୍ଥବଶତଃ, ଅଭିମାନ ବଶତଃ, ବ୍ୟସନ ବଶତଃ ଆମେ ଯେଉଁ କଥା ଦେଖୁ, ଶୁଣୁ ଅଥବା ଅନୁଭବ ବି କରି ନଥାଉ, ତାହା ଆମେ କହିଦେଉ । ମିଥ୍ୟା ଭାଷଣ କରିଦେଉ । ତେଣୁ ବାଣୀ ବ୍ୟବହାର ନ କଲେ ଭଲ । ଯଦି ବା କେତେବେଳେ କରିବା **କେବଳ ଭଗବାନଙ୍କର ନାମ, ଚରିତ କହୁଥିବା । କିଛି ନ କହିଲେ ଯଦି କାମ ନ ଚଳୁଛି ତେବେ ସତ୍ୟ ବଚନ କହିବା । ଅନୃତ ଭାଷଣ କରିବା ନାହିଁ । ଏହି ସଂସାରରେ ଭଗବାନଙ୍କ ବ୍ୟତୀତ ଅନ୍ୟ ସବୁ ଅସତ୍ୟ । ଏଣୁ କେବଳ ଭଗବାନଙ୍କ ସମ୍ବନ୍ଧରେ କହୁଥିବା । ତାଙ୍କର ନାମକୁ ଉଚ୍ଚ ସ୍ୱରରେ ଉଚ୍ଚାରଣ କରୁଥିବା । ତାଙ୍କର ଜଗଦ୍‌ମଙ୍ଗଳକାରିଣୀ ଯଶ ଗାନ କରୁଥିବା ଓ ଲୋକାଚାର କଥାବାର୍ତ୍ତା କରୁନଥିବା ଉଚିତ ।**

(୮) **ସ୍ୱାଧ୍ୟାୟ** : ଆମେ ସବୁବେଳେ ସ୍ୱାଧ୍ୟାୟ କରୁଥିବା ଉଚିତ । ନିଜର ଇଷ୍ଟମନ୍ତ୍ରକୁ ଜପ ଅଥବା ଧାର୍ମିକ ଗ୍ରନ୍ଥର ଅଧ୍ୟୟନକୁ ସ୍ୱାଧ୍ୟାୟ କୁହାଯାଏ । ଭାଗ୍ୱତ କଥାକୁ ଶୁଣୁଥିବା ଓ ପଢୁଥିବା ଉଚିତ । ସାରାଂଶ ହେଉଛି, **ସବୁବେଳେ ନିଜର ଇଷ୍ଟ ଯେପରି ସ୍ମରଣ ହେଉଥିବ ଏପରି ସତତ ଉଦ୍ୟମ କରୁଥିବା ଉଚିତ ।**

(୯) **ସରଳତା** : ଋଜୁତା ଅର୍ଥାତ୍ ସରଳତା । ଏପରି କେତେକ ଲୋକ ଅଛନ୍ତି

ଯେଉଁମାନେ ଭାବନ୍ତି ଗୋଟିଏ ପ୍ରକାର ଆଉ କୁହନ୍ତି ଅନ୍ୟ ପ୍ରକାର । ସେମାନଙ୍କ ସମ୍ପୂର୍ଣ୍ଣ ବ୍ୟବହାର କପଟତା ପୂର୍ଣ୍ଣ ହୋଇଥାଏ । ଦେଖିବା ବେଳକୁ କଥା (ଶବ୍ଦ) ତ ସତ ଜଣାଯାଏ, କିନ୍ତୁ ସେଥିରେ ସରଳତା ଆଦୌ ନଥାଏ । ଏପରି ଲୋକମାନେ ସବୁବେଳେ ଅନ୍ୟମାନଙ୍କୁ ନିଜ ବଶରେ (ଅଧୀନରେ) ରଖିବାକୁ ଚେଷ୍ଟା କରନ୍ତି ।

(୧୦) **ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ।** ବୀର୍ଯ୍ୟ ରକ୍ଷାକୁ ବ୍ରହ୍ମଚର୍ଯ୍ୟ କୁହାଯାଏ । ବୀର୍ଯ୍ୟ ହେଉଛି ଧାତୁର ସାର । ଆଉ ତାହା ମନର ଅଧୀନରେ ଥାଏ । ମନ ଚଞ୍ଚଳ ହେଲେ ବୀର୍ଯ୍ୟରେ ଚଞ୍ଚଳତା ଆସିଯାଏ । ବୀର୍ଯ୍ୟ ଚଞ୍ଚଳ ହେଲେ ମନ ବି ଚଞ୍ଚଳ ହୋଇଯାଏ । ମନ ଓ ବୀର୍ଯ୍ୟ ଚଞ୍ଚଳ ହୁଏ କାମବାସନାରେ । କାମବାସନା ଅସତ୍ ସଂକଳ୍ପରେ ସୃଷ୍ଟି ହୁଏ । ଏଣୁ **ଭୋଗବୁଦ୍ଧିରେ, ମନରେ, ବାଣୀରେ ଅଥବା ଶରୀରରେ ଦୁଇଟି ଭିନ୍ନ ଲିଙ୍ଗର ସଂସର୍ଗ ହେବାକୁ ନ ଦେବାର ନାମ ବ୍ରହ୍ମଚର୍ଯ୍ୟ ।** ଗୃହସ୍ଥ କାମଭାବରେ ନୁହେଁ କେବଳ ସନ୍ତାନ ଉତ୍ପତ୍ତି ନିମନ୍ତେ ସଂସର୍ଗ କରୁଥିବା ଉଚିତ । ସେପରି କରିବା ଅର୍ଥ ବ୍ରହ୍ମଚର୍ଯ୍ୟ ପାଳନ କରିବା । ଯଦି ସେ କାମଭାବରେ ତାହା କରୁଥାଏ ତେବେ ସେ ନିଜର ବ୍ରତରୁ ଚ୍ୟୁତ ହୋଇଯାଏ । **ବ୍ରହ୍ମଚର୍ଯ୍ୟ ବ୍ରତ ବିନା କୌଣସି ସାଧନ, ଭଜନ ପୂଜନ ବା ଆରାଧନା ସମ୍ଭବ ହୁଏନାହିଁ ।** ଏଣୁ ଏହା ଅତି ଆବଶ୍ୟକ ।

(୧୧) **ଅହିଂସା ଆଚରଣ କରିବା ।** ମନ, ବାଣୀ ଅଥବା କର୍ମ କୌଣସିଥିରେ ଅନ୍ୟ ପ୍ରାଣୀଙ୍କୁ କଷ୍ଟ ଦେବାଭଳି ବ୍ୟବହାର ନ କରିବା ହେଉଛି ଅହିଂସା । ଏମିତି ଦେଖିବାକୁ ଗଲେ ଶରୀର ଧାରଣ କରିବା ହିଁ ହିଂସା । ନାକରୁ ଯେଉଁ ଶ୍ୱାସ ବାହାରେ ତାହା ଉଷ୍ମ । ଏପରି କେତେକ ଅତି କ୍ଷୁଦ୍ର ଜୀବାଣୁ ଅଛି ଯାହା ଏହି ଶ୍ୱାସ ବାୟୁର ଉଷ୍ମତାରେ ବି ମରିଯାଆନ୍ତି । ରାସ୍ତାରେ ଚାଲିବା ବେଳେ ଅନେକ କ୍ଷୁଦ୍ର ଜୀବ ପାଦରେ ଦଳି ମରିଯାଆନ୍ତି । ଅନ୍ନର ପ୍ରତ୍ୟେକ ଅଣୁରେ ଜୀବ ଅଛନ୍ତି । ଜାଳେଣି କାଠରେ ଅନେକ କ୍ଷୁଦ୍ରକାୟ କୀଟ ଥାଆନ୍ତି । କୃଷି କଲାବେଳେ ଅନେକ କୀଟ ମରିଥାନ୍ତି । ଔଷଧ ପ୍ରସ୍ତୁତ କଲାବେଳେ ଅସଂଖ୍ୟ ଜୀବ ମରନ୍ତି । କେତେ ନା କେତେ ଜୀବ ମରିବା ପରେ ରେଶମ ହୁଏ । ସାରକଥା ହେଉଛି, ଏପରି କୌଣସି କ୍ରିୟା ନାହିଁ ଯେଉଁଥିରେ ହିଂସା ହୁଏନାହିଁ । କିନ୍ତୁ ଆମେ ଏପରି ଉଦ୍ୟମ କରୁଥିବା ଉଚିତ ଯେପରି ଆମ ଶରୀର ମାଧ୍ୟମରେ କୌଣସି ଜୀବର ହିଂସା ହେବ ନାହିଁ । ମନରେ କାହାର ଅନିଷ୍ଟ ଭାବିବା ଅନୁଚିତ । ବାଣୀରେ କାହା ପ୍ରତି କଟୁ ଭାଷଣ ନ କରିବା ଉଚିତ । ତଥା ଶରୀରରେ ପରପୀଡ଼ନ ନ କରିବା ଉଚିତ । ଅନ୍ୟର ମାଂସ ଆହାର କରିବା ଅନୁଚିତ । କୌଣସି ପ୍ରାଣୀ ପ୍ରତି କେତେବେଳେ ହେଲେ ହିଂସା ନ କରୁଥିବା ଉଚିତ । ଏହାହିଁ ହେଉଛି ଅହିଂସା ବ୍ରତ । **ଅହିଂସା ଆଚରଣ ଯେ କରେ ସଂସାରର ସମସ୍ତେ ତା'ର ମିତ୍ର ହୋଇଥା'ନ୍ତି । ସେ ଅଜାତଶତ୍ରୁ ହୋଇଯାଏ ।**

(୧୨) **ଦ୍ୱନ୍ଦ୍ୱରେ ସମଭାବ ରଖିବା ।** ଦୁଃଖକୁ ସୁଖ ବୋଲି ମନେକରି ସହିନେବା, ସୁଖ ଆସିଲେ ବିଶେଷ ଉତ୍‌ଫୁଲ୍ଲିତ ନ ହୋଇ ସମ ଭାବରେ ରହିବାକୁ ତିତିକ୍ଷା କୁହାଯାଏ । ସମତା କ'ଣ ? ସୁଖ ଦୁଃଖରେ କୌଣସି ଭେଦଭାବ ନ ରଖିବାକୁ ସମତା କୁହାଯାଏ । ସୁଖ ଯେପରି ଦୁଃଖ ବି ସେହିପରି । ଜ୍ଞାନ ଯେପରି ଅଜ୍ଞାନ ବି ସେହିପରି । ପଣ୍ଡିତ ଯେପରି ମୂର୍ଖ ବି ସେହିପରି । **ବାହ୍ୟ ବେଶଭୂଷା ନ ଦେଖି ସର୍ବଦା ତତ୍ତ୍ୱରେ ଦୃଷ୍ଟି ରଖିବା ହେଉଛି ସମତା ।**

**ସର୍ବତ୍ର ଆତ୍ମ-ଦର୍ଶନ** - ତତ୍ତ୍ୱ ଏକ, ଏହା ସତ୍ୟ । ଆତ୍ମା ଏକ, ଏଥିରେ ଦ୍ୱନ୍ଦ୍ୱ କରିବାର କିଛି ନାହିଁ । ତେବେ ଦ୍ୱୈତ ତ ରହିଥାଏ । ଏହାକୁ ନାଶ କରିବାକୁ ହେବ । ଯେଉଁ ଆତ୍ମ-ରୂପ ହରି ମୋ'ଠାରେ ବିରାଜମାନ କରୁଛନ୍ତି, ସେ ହିଁ ସର୍ବତ୍ର ବିରାଜମାନ କରୁଛନ୍ତି । ସକଳ ଭୂତ ମୋ'ଠାରେ ଅଛି । ଆତ୍ମରୂପରେ ମୁଁ ସବୁଥିରେ ବ୍ୟାପ୍ତ । ଏପରି ଭାବନା ସବୁବେଳେ ଧାରଣ କରିଥିବା ଉଚିତ ।

(୧୩) **କୈବଲ୍ୟ ଅନୁଭବ କରିବା ।** ଅର୍ଥାତ୍, ଏକାନ୍ତ ରହିବା । ଭିଡ଼ ବା ଗହଳିରେ ଆତ୍ମଚିନ୍ତନ ହୋଇପାରେ ନାହିଁ । ନାନା ପ୍ରକାର ଅନୁକୂଳ-ପ୍ରତିକୂଳ କଥା ଶୁଣି ଶୁଣି ଚିତ୍ତରେ ବିକ୍ଷେପ ଆସିଯାଏ । ଏଣୁ ଏକାନ୍ତରେ ରହିବା ଉଚିତ । ସଙ୍ଗ କରିବାକୁ ମନ ଥିଲେ କଥା-କୀର୍ତ୍ତନ ସମୟରେ ଭକ୍ତଙ୍କ ସଙ୍ଗ କରୁଥିବା ଉଚିତ । ଏକାନ୍ତ ସେବନରେ ନିଜ ଭିତରେ ସମସ୍ତ ସଂସାର ଦେଖିବାର ସୁଯୋଗ ମିଳେ । ଏକାନ୍ତତା କରୁ କରୁ ଏପରି ଅଭ୍ୟାସ ହୋଇଯାଏ ଯେ, ଆମେ ଏହାପରେ ଯେଉଁଠି ବି ବସିଲେ ସେ ସ୍ଥାନ ଆମ ପାଇଁ ଏକାନ୍ତ ଲାଗେ । ତାହା ବାସନାହୀନ ହୋଇଯାଏ । **ଯିଏ ବାସନାର ପୁଟୁଳି ବାନ୍ଧି ରଖିଥାଏ, ସେ ଘୋର ବଣକୁ ଗଲେ ବି ସେଠାରେ ସେ ଏକାନ୍ତତା ପାଏ ନାହିଁ ।** କିନ୍ତୁ ଯିଏ ବାସନାହୀନ ହୋଇଯାଇଛି ସେ ଯେଉଁଠାରେ ଥିଲେ ବି ସେ ସ୍ଥାନ ତାକୁ ଏକାନ୍ତ ଲାଗେ । ଏଣୁ ନିର୍ଜନ ସ୍ଥାନରେ ବସି ନିଜର ବାସନାଗଡ଼ିକୁ କ୍ଷୟ କରିବା ଉଚିତ ।

(୧୪) **ଅନିକେତତା ରଖିବା ।** ଅର୍ଥାତ୍, ଯେଉଁ ବୃକ୍ଷ ତଳେ ରହିଥିବା, ଯେଉଁ ପତ୍ର କୁଡ଼ିଆରେ ରହିଥିବା, ଅଥବା ମହଲରେ ରହିଥିବା ତାକୁ ନିଜର ବୋଲି ନ ଭାବିବା । ଏପରି ହୋଇଥାଏ ଯେ, ଯେପରି ଶରୀରରେ ମିଥ୍ୟାଭିନିବେଶ ହୋଇ ଯାଇଥାଏ, ଏହି ଶରୀରକୁ ଆତ୍ମା ବୋଲି ବୁଝିବାରେ ଲାଗିଥାଏ । ଠିକ୍ ସେହିଭଳି ପ୍ରାଣୀ ଯେଉଁ ଘରେ ଅଧିକ କାଳ ରହିଯାଇଥାଏ, ତା' ପ୍ରତି ମମତ୍ୱ ଆସିଯାଏ । ମମତ୍ୱ ଭାବ ଆସିଗଲା କ୍ଷଣି ପ୍ରାଣୀ ମଣିଷ ହୋଇଯାଏ । ସ୍ତ୍ରୀ ଏପରି ମମତ୍ୱ ରଖିଲେ, ମୁଁ ପତ୍ନୀ ବୋଲି ଦୃଢ଼ ଧାରଣା କରୁଥିଲେ ତାକୁ ଜନ୍ମ ଜନ୍ମାନ୍ତର ପର୍ଯ୍ୟନ୍ତ ପତ୍ନୀ ହିଁ ହେବାକୁ ପଡ଼ିଥାଏ । ପୁରୁଷର ଏପରି ମମତ୍ୱ ହୋଇଗଲେ ସେ ଯୋକ ଯୋକ ଯେ କୌଣସି ଯୋନିକୁ ଗଲେ ବି ସେଠାରେ ତାକୁ ପତ୍ନୀ ହିଁ ମିଳେ । ଠିକ୍

ଏହିଭଳି ଘର ପ୍ରତି ମମତ୍ୱ ହୋଇଗଲେ ମୂଷା, ବିରାଡ଼ି, ଝିଟିପିଟି, ମଶା ଅଥବା ସର୍ପ ହୋଇ ସେହି ଗୃହରେ ରହିବାକୁ ହୋଇଥାଏ । ଏଣୁ ସାଧୁଙ୍କ ପାଇଁ କୁହାହୋଇଛି ଯେ, ସେ ମଠ ମନ୍ଦିର କିଛି ନ କରିବା ଉଚିତ । କାରଣ, କରିବା ଦ୍ୱାରା, ସବୁବେଳେ ସେହି କଥା ଭାବିବା ଦ୍ୱାରା, ତହିଁରେ ମମତ୍ୱ ହୋଇଯାଏ । ଏଣୁ ଅନିକେତ ହୋଇ ବୁଲୁଥିବା ଉଚିତ । ପୂର୍ବରୁ ରହିଥିବା, ଭଙ୍ଗାରୁଜା, ଯେମିତି ମାନେ ସେମିତି ସ୍ଥାନ ହୋଇଥିଲେ ବି ସେଠାରେ ରହିଯିବା ଉଚିତ । ଯଦି ଘରେ ରହିବାକୁ ପଡ଼େ, ତେବେ ସେହି ଘରେ ଓ ଘରର ଉପକରଣରେ ମମତ୍ୱ ନ ରଖିବା ଉଚିତ । ଧର୍ମଶାଳାରେ ରହିଥିବା ଭଳି ସେଥିରେ ରହିଥିବା ଉଚିତ ।

(୧୫) **ଶୁଚିତା ରଖିବା** । ଅର୍ଥାତ୍, ଯାହାି ପିନ୍ଧିଲେ ବି ତାକୁ ପବିତ୍ର ରଖିବା ଉଚିତ । ପବିତ୍ରତା ଧର୍ମପୂର୍ବକ ମିଳିଥିବା ବସ୍ତ୍ରାଭୂଷଣ । ଦ୍ୱିତୀୟ, ମଳିନ ହୋଇ ନଥିବାକୁ ପବିତ୍ର କୁହାଯାଏ । ବସ୍ତ୍ର ଧୂଆ ହୋଇ ସ୍ୱଚ୍ଛ ହୋଇଥିବା ଉଚିତ । ସେହିଭଳି ଭୋଜନ ଓ ନିବାସ ସ୍ଥାନରେ ସ୍ୱଚ୍ଛତା ଥିବା ଦରକାର । ଯେଉଁଠାରେ ରହିଥିବା ସେ ସ୍ଥାନ ଲିପା ପୋଛା ପରିଷ୍କାର ରହିଥିବା ଉଚିତ । ଭୋଜନ ସ୍ୱଚ୍ଛତାର ସହିତ ପ୍ରସ୍ତୁତ କରି, ତାକୁ ଭଗବାନଙ୍କୁ ଅର୍ପଣ କରି, ପ୍ରସାଦ ଭାବନାରେ ପରିଷ୍କାର ସ୍ଥାନରେ ହାତ ଗୋଡ଼ ମୁହଁ ଧୋଇ, ସ୍ୱଚ୍ଛ ହୋଇ, ସ୍ୱଚ୍ଛ ବସ୍ତ୍ର ପରିଧାନ କରି ପାଉଥିବା ଉଚିତ । **ସାରକଥା ହେଉଛି, ପ୍ରତ୍ୟେକ କର୍ମରେ, ପ୍ରତ୍ୟେକ ବ୍ୟବହାରରେ ପବିତ୍ରତା ପ୍ରତି ଅଧିକ ଧ୍ୟାନ ଦେବା** ।

(୧୬) **ଯଥାଲାଭ ସନ୍ତୋଷ ରହିବା** । ଅର୍ଥାତ୍, ଭାଗ୍ୟ ବଶତଃ ଯାହା ଯେତେବେଳେ ମିଳୁଛି ସେଥିରେ ସନ୍ତୋଷ ରହିବା । ଅସନ୍ତୋଷ ଯୋଗୁଁ ଅଶାନ୍ତି ବଢ଼େ । ଭୋଗ ପଦାର୍ଥରେ ସୁଖ ଶାନ୍ତି ନଥାଏ । ଏହା ବସ୍ତୁତଃ ମନ ଉପରେ ନିର୍ଭର କରେ । ଯାହା ପାଖରେ ବିପୁଳ ଟଙ୍କା ଥାଏ ଚିନ୍ତାରେ ତାକୁ ନିଦ ହୁଏ ନାହିଁ । ବିପରୀତରେ ଯାହା ପାଖରେ ସେପରି ପଇସା ନଥାଏ; ପ୍ରତିଦିନ ଯାହା ରୋଜଗାର କରେ ସେଥିରେ ତା'ର ଗୁଜୁରାଣ ମେଣ୍ଟିଯାଏ ସେ ରାତିରେ ସୁଖନିଦ୍ରା ଶୁଏ । ଆମେ ତୃଷ୍ଣା ଯେତେ ବଢ଼ାଇବା ତାହା ସେତେ ବଢ଼ିବ । ଯେତେ କମାଇବା ସେତେ କମି ପାରିବ । ଏଣୁ ଭାଗ୍ୟବଶତଃ ଯେପରି ସ୍ଥିତି ପ୍ରାପ୍ତ ହୋଇଥାଏ, ସେଥିରେ ସନ୍ତୋଷ ରହିବା ଉଚିତ ।

(୧୭) **ଭଗବଦ୍ ସମ୍ବନ୍ଧୀ ଶାସ୍ତ୍ର ପ୍ରତି ଶ୍ରଦ୍ଧା ରଖିବା** । ପ୍ରାୟ ଦେଖାଯାଏ, ଯାହା ଆମର ବୁଦ୍ଧି ବିପରୀତ ବୋଧ ହୁଏ, ଭଲ ଲାଗେନାହିଁ ସେଥିପ୍ରତି ଆମର ଅଶ୍ରଦ୍ଧା ହୋଇଯାଏ । **ଭଗବାନ ହେଉଛନ୍ତି ଅଚିନ୍ତ୍ୟ । ଅଚିନ୍ତ୍ୟ ଭାବ ତର୍କ ଦ୍ୱାରା ସିଦ୍ଧ ହୋଇପାରେ ନାହିଁ । ସେଥିପ୍ରତି ଆମେ ଶ୍ରଦ୍ଧା କରିବା ଦରକାର** । ଏଣୁ ଭାଗବତ ସମ୍ବନ୍ଧୀୟ ଶାସ୍ତ୍ରକୁ ଆମେ ଶ୍ରଦ୍ଧା ପୂର୍ବକ ପଢ଼ିବା ଉଚିତ । ଏବଂ ତାହାକୁ ଭକ୍ତି ଭାବରେ ହୃଦୟଙ୍ଗମ କରିବା ଉଚିତ । ତର୍କର ବିପରୀତ ହେଉଛି ଶ୍ରଦ୍ଧା ।

(୧୮) ଭଗବତ୍ ସମ୍ବନ୍ଧୀୟ ହୋଇନଥିବା ଶାସ୍ତ୍ରକୁ ନିନ୍ଦା ନ କରିବା । ଲୌକିକ ଶାସ୍ତ୍ର, ଶିଳ୍ପ ସମ୍ବନ୍ଧୀୟ ଶାସ୍ତ୍ର, ଭୌତିକ ବିଜ୍ଞାନ ଆଦି ଶାସ୍ତ୍ରକୁ ନିନ୍ଦା କରିବା ଅନୁଚିତ । କଥା ହେଉଛି, **ସଂସାରରେ ନିନ୍ଦନୀୟ କିଛି ନାହିଁ । ନିନ୍ଦା ହିଁ ହେଉଛି ଏକମାତ୍ର ନିନ୍ଦନୀୟ ବସ୍ତୁ** । ସମସ୍ତ ବସ୍ତୁ ଭଗବାନ ନିର୍ମାଣ କରିଛନ୍ତି । ସର୍ବଜ୍ଞ ଭଗବାନ ନିନ୍ଦନୀୟ ବସ୍ତୁ କାହିଁକି ତିଆରି କରନ୍ତେ ! ଏଣୁ **ହିଁ ନିନ୍ଦା ସର୍ବଥା ନିନ୍ଦନୀୟ** । ଏହା ଶାସ୍ତ୍ର ନିଷେଧ କଥା । **ଯାହା ଆମର କର୍ତ୍ତବ୍ୟ ତାହା ଆମେ କରିଯିବା । ଯାହା ଆମର କର୍ତ୍ତବ୍ୟ ନୁହେଁ ତାହା ଉପେକ୍ଷା କରିଦେବା, କିନ୍ତୁ ନିନ୍ଦା କରିବା ନାହିଁ** ।

(୧୯) **ମନ, ବାଣୀ ତଥା କର୍ମରେ ସଂଯମତା ରଖିବା** । କଥା ହେଉଛି, ସ୍ୱଚ୍ଛନ୍ଦ ବିଚରଣ କରିବାକୁ ଆମର ମନ ହୁଏ । ଆମେ ଯାହା ସମ୍ମୁଖରେ ଦେଖୁ ସେ ବିଷୟରେ ଭାବୁ । ବ୍ୟର୍ଥ ବିଗତ କଥାକୁ ଭାବୁ । ମନୋରଥରେ ଚଢ଼ି ନାନା ପ୍ରକାର ବ୍ୟର୍ଥ ଚିନ୍ତନ କରୁ । ସେହିଭଳି ବାଣୀ ଚାହେଁ, ମନକୁ ଯାହା ଆସୁଛି ତାହା କହିବା ପାଇଁ । ଯାହାକୁ ଇଚ୍ଛା ତାକୁ ଗାଳି ଦେବାକୁ, ଯାହାକୁ ଇଚ୍ଛା ତାକୁ ପରିହାସ କରିବାକୁ । ଏହିଭଳି କର୍ମେନ୍ଦ୍ରିୟ କିଛି ନା କିଛି ସବୁବେଳେ କରିବା ପାଇଁ ଇଚ୍ଛା କରେ । ବିଶେଷ କରି ଅନାବଶ୍ୟକ, ବାହାର କଥାବାର୍ତ୍ତା କରିବାକୁ ଇନ୍ଦ୍ରିୟମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ହେଉଥାଏ । ଅନେକେ ଜଙ୍ଘ ହଲାନ୍ତି । ଅନେକ ନାନାପ୍ରକାର କୁଚେଷ୍ଟା କରନ୍ତି । ଏହା ସଂଯମ ଅଭାବରୁ, ଅସଂଯମୀ ପୁରୁଷମାନେ କରିଥା'ନ୍ତି । ଏଣୁ ମନର ଉଦ୍ୟମ, ବାଣୀ ତଥା ଶରୀର ଦ୍ୱାରା କରାଯାଉଥିବା କର୍ମ ଉପରେ ସଂଯମ ରଖିଥିବା ଆବଶ୍ୟକ ।

(୨୦) **ସତ୍ୟ କଥନ** । ଆମେ ଆମର ଦୋଷକୁ ଲୁଚାଇବା ପାଇଁ, ସ୍ୱାର୍ଥ ହାସଲ କରିବା ପାଇଁ ଅସତ୍ୟ ଭାଷଣ କରୁ । ଯାହା ଆମେ କରି ନ ଥାଉ ତାହା ଆମେ କରିଛୁ ବୋଲି ବି କହୁ । ଅଥବା ଯାହା କରିଥାଉ ତାକୁ ସର୍ବସାଧାରଣରେ ଲୁଚାଇ ଦେଉ । ଦେଖି ନ ଥିବା କଥାକୁ ଦେଖିଛୁ ବୋଲି କହୁ, ଦେଖିଥିବା ଦୃଶ୍ୟ ଦେଖିନାହୁଁ ବା ଜାଣିନାହୁଁ ବୋଲି କହୁ । ଆଉ ଆମେ ଆମ ନିଜ ଗୁଣର ବିସ୍ତାର କରୁ । ଏପରି ନ କରି ବିଚିତ୍ର ଲୀଳାବିହାରୀ ଭଗବାନଙ୍କ ଅବତାର ଚରିତ୍ରକୁ, ଭାଗବତୀ କଥା ସମୂହକୁ ନିରନ୍ତର ଶ୍ରବଣ କରୁଥିବା ଉଚିତ ।

(୨୧) **ଶମଦମାଦି ପାଳନ କରିବା** । ମନର ସଂଯମକୁ ଶମ କୁହାଯାଏ । ଦମ କହନ୍ତି ଇନ୍ଦ୍ରିୟ ଦମନ କରିବାକୁ, ଅର୍ଥାତ୍ ସବୁ ଆଡୁ ମନକୁ ଆଣି ଭଗବାନଙ୍କ ଠାରେ ଲଗାଇ ରଖିବା । ଇନ୍ଦ୍ରିୟଙ୍କୁ, ମନକୁ କୌଣସି ଅବସ୍ଥାରେ ବହିର୍ମୁଖ ହେବାକୁ ନ ଦେବା ।

(୨୨) **ଶ୍ରୀହରିଙ୍କ ଜନ୍ମ, କର୍ମ ଆଉ ଗୁଣ ଶ୍ରବଣ କରିବା** । ମଣିଷର ସାଧାରଣ ସ୍ୱଭାବ ହେଉଛି ଅନ୍ୟ ବିଷୟରେ କିଛି ଶୁଣିବା । ତାକୁ ଜୀବନ ଚରିତ ଶୁଣିବାରେ, କହିବାରେ, କଥା ଶୁଣିବାରେ, ପଢ଼ିବାରେ ସ୍ୱାଭାବିକ ଆନନ୍ଦ ମିଳେ । **ମରଣଧର୍ମା**

**ପୁରୁଷଙ୍କର କାହାଣୀ ଶୁଣିଲେ ମରଣ ପ୍ରାପ୍ତି ହିଁ ହୋଇଥାଏ । ଅମର ପୁରୁଷଙ୍କ କାହାଣୀ ଶୁଣିଲେ ଅମର ହୋଇ ଯାଇ ହୁଏ । ଅଜନ୍ମାଙ୍କ ଜନ୍ମ ଶୁଣିଲେ ଜନ୍ମ-ମୃତ୍ୟୁର ଚକ୍ରରୁ ମୁକ୍ତି ମିଳେ ।** କର୍ମାସକ୍ତ ପୁରୁଷଙ୍କର କୁକର୍ମ ଗାଥା ଶୁଣିଲେ ସେଥିରେ ଆମର ପ୍ରବୃତ୍ତି ହୋଇଥାଏ । କର୍ମ ବନ୍ଧନ ରହିତ ଭଗବାନଙ୍କ କର୍ମକୁ ଶୁଣିବା ଦ୍ୱାରା କର୍ମ-ପାଶରୁ ମୁକ୍ତି ମିଳେ । ସଂସାରୀ ଲୋକଙ୍କ ଗୁଣ ଶୁଣିଲେ ତାହା ହୃଦୟରେ ରହିଯାଏ । ଅସଂସାରୀ ଶ୍ରୀହରିଙ୍କ ଗୁଣାବଳୀ ଶ୍ରବଣ କରିବା ଦ୍ୱାରା ସେ ହୃଦୟକୁ ଆସନ୍ତି । ଯଦିଓ ଭଗବାନ ହେଉଛନ୍ତି ଜନ୍ମ, କର୍ମ ଆଉ ଗୁଣରହିତ ତଥାପି ଭକ୍ତଙ୍କ ଉପରେ ଅନୁଗ୍ରହ କରିବା ପାଇଁ ସେ ଅବତାର ଧାରଣ କରନ୍ତି, କର୍ମ କରନ୍ତି ଓ ନିଜ ଗୁଣର ବିସ୍ତାର କରନ୍ତି । **ଏଣୁ ବିଚିତ୍ର ଲୀଳାବିହାରୀ ଭଗବାନଙ୍କ ଅବତାର ଚରିତକୁ, ଭାଗବତୀ କଥାକୁ ନିରନ୍ତର ଶ୍ରବଣ କରୁଥିବା ଉଚିତ ।**

(୨୩) **ଶ୍ରବଣ ସହିତ କୀର୍ତ୍ତନ କରିବା ଉଚିତ । ସାନ ପିଲାମାନେ ଯାହା ଶୁଣନ୍ତି ସେହି କଥା ସାଧାରଣତଃ କହିଥା'ନ୍ତି । ସେହିଭଳି ଭକ୍ତମାନେ ଭଗବାନଙ୍କ ନାମର ମହିମା ଶ୍ରବଣ କରିବା, ସେହି ନାମକୁ ଏକାକୀ ଅଥବା ଅନ୍ୟଙ୍କ ସହିତ କୀର୍ତ୍ତନ କରିବା ଉଚିତ୍ ।** ତାଙ୍କ ଜନ୍ମ ଚରିତ ଗଦ୍ୟରେ ଅଥବା ପଦ୍ୟରେ ହେଉ ସ୍ୱର ସହିତ ଗାନ କରିବା ଉଚିତ । ତାଙ୍କର ଭକ୍ତବତ୍ସଳତା ଆଦି ଗୁଣ-ଗାଥା ଗାନ କରିବା ଉଚିତ । ସେ ଭକ୍ତମାନଙ୍କୁ କେଉଁ କେଉଁ ଠାରେ କୃପା କରିଛନ୍ତି ତାହା ବି ଗାନ କରିବା ଉଚିତ । ତାଙ୍କର ଗୋବର୍ଦ୍ଧନଧାରଣ ଆଦି ଅଦ୍ଭୁତ କର୍ମସମୂହର ଗାନ କରିବା ଉଚିତ । ନାଚି କୁଦି ହାତ ହାବଭାବ ଦ୍ୱାରା ବିହ୍ୱଳତା ପ୍ରକାଶ କରିବା ଉଚିତ । ଏହିଭଳି କୀର୍ତ୍ତନ କରି ତାଙ୍କ ବାଣୀକୁ ସଫଳ କରିବା ଉଚିତ ।

(୨୪) **ଭଗବାନଙ୍କୁ ଧ୍ୟାନ କରିବା ଉଚିତ ।** ମନରେ ସାଂସାରିକ ବସ୍ତୁ ଭରପୂର ରହିଥାଏ । ମନ ତେଣୁଁ ସେହି କଥାକୁ ସବୁବେଳେ ଧ୍ୟାନ କରୁଥାଏ । ବସ୍ତୁ ଏପରି ସୁନ୍ଦର, ତହିଁରୁ ଏପରି ସୁଖ ମିଳେ ଇତ୍ୟାଦି । ମନରୁ ସାଂସାରିକ ବସ୍ତୁକୁ ଦୂର କରି ଭଗବାନଙ୍କର ରୂପକୁ ଧ୍ୟାନ କରିବା ଉଚିତ । ସାରକଥା ହେଉଛି, **ଯେଉଁ କର୍ମ କରୁଥିବା ସବୁ ଭଗବାନଙ୍କ ପୂଜା ସମ୍ବନ୍ଧରେ ହିଁ କରୁଥିବା ।**

(୨୫) ସମସ୍ତ ପ୍ରକାର ଉଦ୍ୟମ ଭଗବାନଙ୍କ ପାଇଁ ହିଁ କରୁଥିବା ଉଚିତ । ଘରକୁ ମନ୍ଦିର ଭଳି କରିଦେବା ଉଚିତ । ଘରେ ଝାଡୁ ଦେଉ, ତାହା ଭଗବାନଙ୍କ ନିମନ୍ତେ କରୁଥିବା ଉଚିତ । ଫଳ ଫୁଲ ଗଛ ଭଗବାନଙ୍କ ଉଦ୍ଦେଶ୍ୟରେ ଲଗାଇବା ଉଚିତ । ଧନ ଉପାର୍ଜନ କରୁଥିଲେ, ଭଗବାନଙ୍କ ପୂଜା-ସେବା ପାଇଁ କରୁଥିବା ଉଚିତ । ସାରକଥା ହେଉଛି, ଯାହା ବି କର୍ମ କରୁଥିବା ସବୁ ଭଗବାନଙ୍କର ପୂଜା ନିମନ୍ତେ ସମ୍ବନ୍ଧ ରଖି କରୁଥିବା ଉଚିତ ।

(୨୬) ଯଜ୍ଞାନୁଷ୍ଠାନ କରିବା ଉଚିତ । ଯଥାଶକ୍ତି ହବନୀୟ ଦ୍ରବ୍ୟରେ ହୋମ କରିବା ଉଚିତ । ପ୍ରାଣାୟମ କରୁଥିବା ଉଚିତ । ପରୋପକାର ଯଜ୍ଞ କରିବା ଉଚିତ । ଜ୍ଞାନଯଜ୍ଞ କରିବା ଉଚିତ । ସଂକୀର୍ତ୍ତନ ଯଜ୍ଞ, ଯାହା ସମ୍ଭବ ହୋଇପାରେ ସେପରି ଯଜ୍ଞ କରୁଥିବା ଉଚିତ ।

(୨୭) ଜପ-ତପରେ ଚିତ୍ତକୁ ଲଗେଇ ରଖିଥିବା ଆବଶ୍ୟକ । **ଭଗବାନଙ୍କ ନାମ ଓ ଗୁରୁମନ୍ତ୍ର ଜପ କରୁଥିବା ଆବଶ୍ୟକ ।** ସେହି ଜପକୁ ତପ ପୂର୍ବକ କରୁଥିବା ଉଚିତ । ଏପରି ନୁହେଁ ଯେ ଆଳସ୍ୟବଶଃ ମନ ନ ହେଉଥିଲେ ବି ଯୋର ଜବରଦସ୍ତ ଜପ କରିବା । ନାଁ, ଦୃଢ଼ ଆସନରେ ମନକୁ ଧୀରେ ଧୀରେ ସ୍ଥିର କରି ଜପ କରିବା ଉଚିତ ।

(୨୮) **ଆଚାର ପାଳନ କରିବା ଉଚିତ ।** କୁଳାଚାର, ଦେଶାଚାର, ସଦାଚାର ଯେପରି ବି ହୋଇଥାଉ ତାହା ପାଳନ କରୁଥିବା ଉଚିତ । ଯେଉଁଭଳି ଆଚାର ବିଚାରରେ ରହିବା ପାଇଁ ଶାସ୍ତ୍ରରେ କୁହା ହୋଇଛି ଯଥା ଶକ୍ତି ତାହା ଅବଶ୍ୟ ପାଳନ କରୁଥିବା ଉଚିତ । ଆଚାରହୀନଙ୍କୁ ବେଦ ବି ପବିତ୍ର କରିପାରେ ନାହିଁ । ଏଣୁ ଆଚାରକୁ ଧର୍ମର ଉଦ୍‌ଗମ ସ୍ଥାନ କୁହାଯାଏ ।

(୨୯) **ଭଗବାନଙ୍କ ପାଇଁ ସର୍ବାର୍ପଣ କରିଦେବା ଉଚିତ ।** ଯେଉଁ ବସ୍ତୁ ନିଜର ଅତି ପ୍ରିୟ ତାହାକୁ ହିଁ ଭଗବାନଙ୍କୁ ଅର୍ପଣ କରିବା ଉଚିତ । ଯାହା ମିଳେ ତାକୁ ପ୍ରଥମେ ଭଗବାନଙ୍କୁ ଅର୍ପଣ କରି ପ୍ରସାଦ ବୋଲି ମନେକରି ପାଇବା ଉଚିତ । ସବୁଠାରୁ ପ୍ରିୟ ଯିଏ ନିଜର କାନ୍ତା ତାକୁ ଭଗବାନଙ୍କୁ ଅର୍ପଣ କରିଦେବା ଉଚିତ । ନିଜ ପୁଅକୁ ଭଗବାନ୍‌ଙ୍କର ପୁଅ ବୋଲି ମନେକରିବା ଉଚିତ । ପୁତ୍ର ଥିଲେ କହିବା ଉଚିତ୍, 'ହେ ପ୍ରଭୁ ମୋର କିଛି ନାହିଁ । ସବୁ ଆପଣଙ୍କର ।' ସୁନ୍ଦର ଘର ତିଆରି ହୋଇଯିବା ପରେ, ଲିପା ପୋଛା କରି ନିର୍ମଳ ହୋଇଗଲେ ତାକୁ ଭଗବାନ୍‌ଙ୍କୁ ଅର୍ପଣ କରିଦେବା ଉଚିତ । ସେତେବେଳେ ତାହା ଭଗବାନଙ୍କର ମନ୍ଦିର ହୋଇଯାଏ । ସେ ସେ ବିଷୟରେ ଏଣିକି ଚିନ୍ତା କରିବେ । ଆମେ କେବଳ ଭଗବାନଙ୍କର ଚିନ୍ତାରେ ନିମଗ୍ନ ରହିଥିବା ଉଚିତ । ନିଜ ପ୍ରାଣକୁ ବି ଭଗବାନଙ୍କୁ ଅର୍ପଣ କରିଦେବା ଉଚିତ । ଭଗବାନ ଯେତେବେଳ ପର୍ଯ୍ୟନ୍ତ ଚାହିଁବେ ଶରୀରରେ ପ୍ରାଣକୁ ରଖନ୍ତୁ, ଯେତେବେଳେ ଚାହିଁବେ ନେଇଯାଆନ୍ତୁ । ଏପରି ଧାରଣା ବଦ୍ଧ ହେବା ଉଚିତ । **ପ୍ରାଣକୁ ନିଜର ବୋଲି ମନେକରି ସେଥିପ୍ରତି ମୋହ ନ ରଖିବା ଉଚିତ । ସାରକଥା ହେଉଛି ଯାହା ଆମେ ଆମର ବୋଲି ଭାବୁଛେ ତାହାକୁ ଭଗବାନଙ୍କୁ ଅର୍ପଣ କରିଦେବା ଉଚିତ ।**

(୩୦) **ଭାଗବତଙ୍କୁ ପ୍ରେମ କରିବା ଉଚିତ ।** ଭଗବାନଙ୍କର ଯେଉଁମାନେ ଅନନ୍ୟ ଭକ୍ତ, ଯେଉଁମାନେ କୃଷ୍ଣଙ୍କୁ ନିଜର ଆତ୍ମା, ସ୍ୱାମୀ ଆଉ ସର୍ବସ୍ୱ ମନେକରନ୍ତି- ଏପରି ପ୍ରସନ୍ନ

ଭକ୍ତଙ୍କୁ ସବୁବେଳେ ପ୍ରେମ କରୁଥିବା ଉଚିତ । ସେମାନଙ୍କୁ ନିଜର ଆତ୍ମୀୟ ସମ୍ବନ୍ଧୀ ବୋଲି ମନେ କରୁଥିବା ଉଚିତ ।

(୩୧) **ଶ୍ରଦ୍ଧା ସହିତ ସମସ୍ତଙ୍କର ସେବା କରୁଥିବା ଉଚିତ ।** ସାଧୁ ସ୍ୱଭାବର ଯେଉଁମାନେ ସନ୍ଥ, ପରମାତ୍ମାଙ୍କର ଯେଉଁମାନେ ଭକ୍ତ, ମହାତ୍ମା ସେମାନଙ୍କ ସେବା କରୁଥିବା ଉଚିତ । ଦୀନ ଦୁଃଖୀଙ୍କର ଦୁଃଖ ଦୂର କରିବା ପାଇଁ ଚେଷ୍ଟା କରୁଥିବା ଉଚିତ । ସ୍ଥାବର ହୁଅନ୍ତୁ ଅଥବା ଜଂଘମ- ସମସ୍ତଙ୍କର ସେବା କରିବା ନିଜର କର୍ତ୍ତବ୍ୟ ବୋଲି ଭାବିବା ଦରକାର । ନିଜକୁ ସମସ୍ତଙ୍କର ସେବକ ବୋଲି ମନେକରିବା ଉଚିତ ।

(୩୨) **ଭଗବଦ୍ ଗୁଣର କଥୋପକଥନ କରିବା ଉଚିତ ।** ଭକ୍ତମାନଙ୍କ ସହିତ ବସି ଭଗବାନ୍‌ଙ୍କ ସମ୍ବନ୍ଧରେ ନିଜେ କିଛି କହିବା, ଅନ୍ୟ ଭକ୍ତମାନେ ଯାହା କୁହନ୍ତି ତାହା ଶୁଣିବା ଓ ଭଗବଦ୍ ସମ୍ବନ୍ଧୀ ପ୍ରଶ୍ନ କରୁଥିବା ଉଚିତ ।

ଭଗବାନ ପ୍ରବୁଦ୍ଧ କହୁଛନ୍ତି, ''ରାଜନ୍ । କେତେ କହିବା, କେତେ ଗଣିବା ! **ଭାଗବଦ୍ ଧର୍ମର ମୋଟାମୋଟି ସାରାଂଶ ହେଉଛି, ଯେଉଁଭଳି କର୍ମ କଲେ ସଂସାରର ମୋହ ହେବନାହିଁ, ପ୍ରଭୁଙ୍କ ପ୍ରତି ପ୍ରେମ ବର୍ଦ୍ଧନ ହେବ, ଯେଉଁ କର୍ମ କରିବା ଦ୍ୱାରା ଚିତ୍ତରେ ଅଶାନ୍ତି ଅନୁଭବ ହେବନାହିଁ, ଅଥଚ ଚିତ୍ତ ଏକ ପ୍ରକାର ଅପୂର୍ବ ଶାନ୍ତି ଅନୁଭବ କରିପାରିବ, ସେପରି ସମସ୍ତ କର୍ମ କରିବା ହେଉଛି ଭଗବଦ୍ ଧର୍ମ ।** ଯେଉଁ ସବୁ କର୍ମର ସମ୍ବନ୍ଧ ଭଗବାନଙ୍କ ସହିତ ସମ୍ବନ୍ଧିତ ତାହା ହେଉଛି ଭଗବଦ୍ ଧର୍ମ । ଏପରି କର୍ମ ନିରନ୍ତର କରୁଥିବା ଉଚିତ । ଆଳସ୍ୟ ନ କରିବା ଉଚିତ । କର୍ମ କରିବାବେଳେ ପ୍ରମାଦ ନକରିବା ଉଚିତ । କର୍ମ କରିଯିବା ଉଚିତ ।''

ରାଜା ପଚାରିଲେ, ''ଭଗବନ୍ ! କର୍ମ କରିବା ତ ଅଜ୍ଞାନର କାର୍ଯ୍ୟ । ଯେ କୌଣସି କର୍ମ ଆରମ୍ଭ ଦୋଷାବହ । ଆପଣ ପୁଣି କର୍ମ କରିବା ଉପରେ ଏତେ ଜୋର ଦେଉଛନ୍ତି କିପରି ?''

ମହାମୁନି ପ୍ରବୁଦ୍ଧ କହିଲେ, ''ରାଜନ୍ ! ସଂସାରୀ କର୍ମ ଦୋଷଯୁକ୍ତ । **ପ୍ରଭୁ ପ୍ରୀତ୍ୟାର୍ଥେ କରାଯାଇଥିବା କର୍ମ ତ ପ୍ରଭୁଙ୍କଠାରେ ପ୍ରେମ ଉତ୍ପନ୍ନ ହେବା ନିମନ୍ତେ କରାଯାଏ ।** ଦେଖନ୍ତୁ । ଭକ୍ତି ଦୁଇ ପ୍ରକାରର ହୋଇଥାଏ । ବୈଧୀ ଓ ପ୍ରେମା । ବୈଧୀ ଭକ୍ତିରେ ବିଧି ପାଳନ କରାହୁଏ ଯେପରି ପୂଜା କରିବା, ପାଠ କରିବା, ଅର୍ଚ୍ଚନ କରିବା, ବନ୍ଦନ କରିବା । ଏପରି କର୍ମ କରୁ କରୁ ଯେତେବେଳେ ଅନ୍ତଃକରଣ ଶୁଦ୍ଧ ହୋଇଯାଏ ପ୍ରେମା ଭକ୍ତିର ଉଦୟ ହୁଏ । ଯେ ପର୍ଯ୍ୟନ୍ତ ପ୍ରେମାଭକ୍ତିର ଉଦୟ ହୋଇନଥାଏ, ସେ ପର୍ଯ୍ୟନ୍ତ ଭକ୍ତ ସ୍ୱୟଂ ଭଗବଦ୍ ସମ୍ବନ୍ଧୀ କର୍ମ କରିବାରେ ଲାଗିଥାଏ ଓ ଅନ୍ୟଙ୍କ ଦ୍ୱାରା ବି କରାଉଥାଏ ।''

ରାଜା କହିଲେ, ''ଭଗବନ୍ ! ବୈଧୀ ଭକ୍ତି ସମ୍ବନ୍ଧରେ ଆପଣ ତ କହିଲେ । କୃପାକରି ପ୍ରେମାଭକ୍ତି ସମ୍ବନ୍ଧରେ ଅଧିକ କିଛି କୁହନ୍ତୁ । ପ୍ରେମାଭକ୍ତି ଉଦୟ ହେବା ପରେ

ଭକ୍ତର ଦଶା କିପରି ହୋଇଥାଏ ? କେଉଁ ଲକ୍ଷଣ ଦେଖିଲେ ଆମେ ଜାଣିବା ଯେ ପ୍ରେମାଭକ୍ତି ଉତ୍ପନ୍ନ ହୋଇଛି ।''

ଯୋଗେଶ୍ୱର ପ୍ରବୁଦ୍ଧ ହସି ହସି କହିଲେ, ''ରାଜନ୍ ! ଏ ବିଷୟରେ ନିର୍ଦ୍ଦିଷ୍ଟ ରୂପେ କ'ଣ ବା କହିବା ! ଏତିକି ଜାଣ ଯେ ପ୍ରେମାଭକ୍ତି ଉଦୟ ହେବାକ୍ଷଣି ଭକ୍ତର ଦଶା ଅଲୌକିକ ହୋଇଯାଏ । ଏହାଦ୍ୱାରା ତା'ର ସମ୍ପୂର୍ଣ୍ଣ ଶରୀର ପୁଲକିତ ହୋଇଯାଏ । ଭଗବାନଙ୍କ କଥା କାନରେ ପଡ଼ିଯିବା କ୍ଷଣି ତା'ର ରୋମାଞ୍ଚିତ ହୋଇଯାଏ । ତା'ର ସଂଗେ ସଂଗେ ଭଗବାନଙ୍କର ଧ୍ୟାନ ଆସିଯାଏ । ତା' ଚକ୍ଷୁରୁ ଲୋତକଧାର ପ୍ରବାହିତ ହେବାରେ ଲାଗେ । ବେଳେ ବେଳେ ପ୍ରେମରେ ତନ୍ମୟ ହୋଇ ସେ ଖିଲ୍ ଖିଲ୍ ହସିବାରେ ଲାଗେ । ତା'ର ଅଟ୍ଟହାସ୍ୟ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ କରେ । ବେଳେ ବେଳେ ଆନନ୍ଦମନଗ୍ନ ଅବସ୍ଥାରେ ନାନା ପ୍ରକାର ଅଲୌକିକ କର୍ମ କରିବସେ । ବେଳେ ବେଳେ ଏକାନ୍ତରେ ବସି ବିଲ୍‌ବିଲାଉ ଥାଏ । ପ୍ରଭୁଙ୍କ ସହିତ କଥୋପକଥୋନ କରିବାରେ ଲାଗେ । ବେଳେ ବେଳେ କୀର୍ତ୍ତନ କରୁ କରୁ ନାଚିବାରେ ଲାଗେ । ବେଳେ ବେଳେ ଭକ୍ତଙ୍କ ଗହଣରେ ବସି ତାଙ୍କ ସମ୍ବନ୍ଧରେ ଚର୍ଚ୍ଚା କରିବାରେ ଲାଗେ । ବେଳେ ବେଳେ ଧ୍ୟାନ କରୁଥିବା ସମୟରେ ତନ୍ମୟ ହୋଇଯାଏ । ସଂସାରକୁ ସର୍ବଥା ଭୁଲିଯାଇଥାଏ । ବେଳେ ବେଳେ ସଂସାରର ସମସ୍ତ କର୍ମକୁ ମାୟା ବିଳାସ ବୋଲି ଜାଣି ସେଥିରୁ ବିରତ ହୋଇଯାଏ, ମୌନୀବାବା ହୋଇଯାଏ । ସବୁଆଡୁ ଚିତ୍ତକୁ ନିବୃତ୍ତ କରି କେବଳ ଭଗବାନଙ୍କ ପାରେ ଲଗାଇ ଦେଇଥାଏ । ଏହିଭଳି ହେ ରାଜନ୍ ! ନିରନ୍ତର ଭାଗବତ ଧର୍ମକୁ ଆଚରଣ କରି କରି ସେ ବିଲକ୍ଷଣ ସ୍ଥିତି ପ୍ରାପ୍ତ ହୋଇଯାଏ । **ଯେଉଁ ଭକ୍ତଙ୍କ ହୃଦୟରେ ପ୍ରେମାଭକ୍ତି ଉତ୍ପନ୍ନ ହୋଇଯାଇଥାଏ, ତା'ର ଆଉ କିଛି କର୍ତ୍ତବ୍ୟ ବାକି ରହିନଥାଏ ।** ସେ କୃତାର୍ଥ ହୋଇଯାଏ । ପାରି ହେବା ଅସମ୍ଭବ ମନେ ହେଉଥିବା ଭଗବାନଙ୍କର ଏହି ମାୟାକୁ ସେ ଅନାୟାସରେ ପାରି ହୋଇଯାଏ । ଏପରି ନାରାୟଣ ପରାୟଣ ଭକ୍ତ ତ୍ରିଭୁବନକୁ ପବିତ୍ର କରିବା ପାଇଁ ସମର୍ଥ ହୋଇଥା'ନ୍ତି ।''

ରାଜା ପଚାରିଲେ, ''ଭଗବନ୍ ! ଆପଣ ବାରମ୍ବାର ଶ୍ରୀମନ୍ନାରାୟଣ ଶ୍ରୀମନ୍ନାରାୟଣ ଆଦି ଶବ୍ଦ ଉଚ୍ଚାରଣ କରୁଛନ୍ତି । ଏହି ନାରାୟଣ ନାମ କାହାର ? ଏହି ନାରାୟଣଙ୍କ ସ୍ୱରୂପ କିପରି ? ଏହି ନାରାୟଣଙ୍କ ସମ୍ବନ୍ଧରେ ମୋତେ କୁହନ୍ତୁ ।

ଏପରି କଥା ଶୁଣି ମହାମୁନି ପ୍ରବୁଦ୍ଧ ହସିବାରେ ଲାଗିଲେ । ସେ କହିଲେ, ''ରାଜନ୍ ! ଯିଏ ରୂପ ରହିତ, ତାଙ୍କର ସ୍ୱରୂପ କିପରି ବର୍ଣ୍ଣନ କରାଯାଇ ପାରିବ ? ତେବେ ବି ମୋର ଏହି ସାନ ଭାଇ ପିପ୍‌ପଲାୟନ ଏହି ବିଷୟର ଉପଦେଶ ଆପଣଙ୍କୁ ଦେବ ।

ମହାପ୍ରାଜ୍ଞ ସୂତ କହୁଛନ୍ତି- "ହେ ମୁନିଗଣ ! ଏତିକି କହି ଯୋଗେଶ୍ୱର ପ୍ରବୁଦ୍ଧ ମୌନ ହୋଇଗଲେ । ଏଥର ରାଜା ଶ୍ରଦ୍ଧା ଭକ୍ତି ସହିତ ନମ୍ରତାପୂର୍ବକ ଆଗ୍ରହ ପରିପୂର୍ଣ୍ଣ ଦୃଷ୍ଟିରେ ଯୋଗେଶ୍ୱର ପିପ୍‌ପଳାୟନଙ୍କୁ ଚାହିଁବାରେ ଲାଗିଲେ । ଏବେ ଯୋଗେଶ୍ୱର ପିପ୍‌ପଳାୟନ ଯେଉଁଭଳି ଭଗବାନଙ୍କର ସ୍ୱରୂପ ବର୍ଣ୍ଣନା କଲେ ତାହା କହୁଛି ଆପଣମାନେ ଶାନ୍ତ ଚିତ୍ତରେ ତାହା ଶ୍ରବଣ କରନ୍ତୁ ।"

**ଛପ୍‌ପୟ**

*କରୈ ଯଜ୍ଞ, ମଖ, ଦାନ, ମନ୍ତ୍ର, ଜପ, ତପ ସବ ନିୟମିତ ।*
*ସୁତ, ଦାରା, ଗୃହ, ପ୍ରାନ କରୈ ସବ ହରିକୁଁ ଅରପିତ ।।*
*ହରି ଭକ୍ତିନି ସରବସ୍ୱ ସମୁଝି ସେବୈଂ ସୁଖ ପାବୈ ।*
*ହରି ଚରଚା କୁଁ, ତ୍ୟାଗି ଅନତ ନହିଁ ଚିତ୍ତ ଚଲାବୈ ।।*
*ଇନ୍ ଧରମାନ ଆଚରନ ତେଂ, ପ୍ରେମଭାବ ହୋବୈଂ ଉଦିତ ।*
*ଭକ୍ତିଭାବ ଭାବିତ ଭଗତ, ନିତ ନାଚତ ରୋବତ ହଁସତ ।।*



# ନାରାୟଣଙ୍କ ସ୍ୱରୂପ ବର୍ଣ୍ଣନ

**ସ୍ଥିତ୍ୟୁଦ୍‌ଭବପ୍ରଳୟହେତୁରହେତୁରସ୍ୟ**
**ଯତ୍‌ସ୍ୱପ୍ନଜାଗରସୁଷୁପ୍ତିଷୁସଦ୍ ବହିଶ୍ଚ ।**
**ଦେହେନ୍ଦ୍ରିୟା ସୁହୃଦାନି ଚରନ୍ତି ଯେନ ।**
**ସଞ୍ଜୀବିତାନି ତଦବେହି ପରଂ ନରେନ୍ଦ୍ର ।।☆**

(ଶ୍ରୀ. ଭା. ୧୧ମ ସ୍କ. ୩ୟ ଅ. ୩୫ ଶ୍ଳୋକ)

---

☆ ଯା ମାୟା ସଂସାର କାରଣ । ସୃଷ୍ଟି ପାଳନ ସଂହାରଣ ।।
ସ୍ୱୟଂ ଅହେତୁ ଯେ ବୋଲାଇ । ସେ ନାରାୟଣ ଜାଣ ତୁହି ।।
ସ୍ୱପ୍ନ ଜାଗ୍ରତ ସୁଷୁପ୍ତିରେ । କି ଅବା ସମାଧି କାଳରେ ।।
ବାହ୍ୟ ଅନ୍ତର ଯେ ଅଛଇ । ତାହାକୁ ବ୍ରହ୍ମ ବୋଲି କହି ।।
ଦେହ ଇନ୍ଦ୍ରିୟ ପଞ୍ଚପ୍ରାଣ । ଯେ ଅବା ଅନନ୍ତ କାରଣ ।।
ଯାହାର ଆଶ୍ରେୟ ଜୀଅଁନ୍ତି । ଯେଣେ ବିଷୟେ ସଞ୍ଚରନ୍ତି ।।
ତାଙ୍କୁ ପରମ ଆତ୍ମା ଜାଣି । ଅପରେ ଶୁଣ ନୃପମଣି ।।

(ଭାଗବତ : ଜଗନ୍ନାଥ ଦାସ: ୧୧ମ ସ୍କନ୍ଧ. ୪ର୍ଥ ଅ.)

## ଛପ୍‌ପୟ

''ନାରାୟନ ହରି କୌନ'' ନୃପତି ନେ ପ୍ରଶ୍ନ କର୍‌ୟୋ ଜବ ।
ସୁନିକେଁ ବୋଲେ ବିହଁସି ପିପ୍‌ପଲାୟନ ମୁନିବର ତବ ॥
ଜଗ କୀ ଉତପତି ପ୍ରଲୟ ଅକାରନ ହ୍ୱୈକେ କାରନ ।
ବାହାର ଭୀତର ରହୈ ସବନିମହଁ ହରି ନାରାୟଣ ॥
ସ୍ୱୟଂ ପ୍ରକାଶିତ ପରାବର, ନେତି ନିଗମ ଆଗମ କହୈ ।
ପ୍ରାନ, କରନ, ଅନ୍ତଃକରନ, ନିତ ଜିନତୈ ଜୀବନ ଲହୈ ॥

ଯାହା ବାଣୀର ବିଷୟ ନୁହେଁ, ଯାହା ଶବ୍ଦର ବିଷୟ ନୁହେଁ ତାହା କହିବାକୁ ଯଦି ଚାହୁଁ ତେବେ କିପରି କୁହାଯାଇ ପାରେ ? ମୌନ ହିଁ ତାହାର କଥନ । ଚୁପ୍ ହୋଇଯିବା ତାହାର ପରିଚୟ । ଏପରି ଅନେକ ବିଷୟ ଅଛି ଯାହାକୁ କଥାରେ ପ୍ରକାଶ କରିହୁଏ ନାହିଁ । କେହି ତା' ବିଷୟରେ ପଚାରିଲେ ଆମେ ଚୁପ୍ ହୋଇଯାଉ । ଅଥବା ଅନ୍ୟ କିଛି ସଙ୍କେତ ଦ୍ୱାରା ସୂଚିତ କରିଦେଉ । ଯଥା, ଆମେ କାହାକୁ ଜହ୍ନକୁ ଦେଖାଇବାକୁ ଇଚ୍ଛା କଲେ ଆଙ୍ଗୁଠି ବଢାଇ ଦେଇ କହୁ, ''ସେଇଟା ଜହ୍ନ ।'' ବାସ୍ତବରେ ଦେଖିଲେ ଆଙ୍ଗୁଠି ସିଧା କ'ଣ ଜହ୍ନ ଥାଆନ୍ତି ! ଆଙ୍ଗୁଠି କେଉଁଠି ଜହ୍ନ କେଉଁଠି ! କିନ୍ତୁ ଆଙ୍ଗୁଠି ସିଧା ଯାହା ଦେଖାଯାଏ ସେଇଟା ଜହ୍ନ ବୋଲି ବୁଝିବାକୁ ହୋଇଥାଏ । ତାତ୍ପର୍ଯ୍ୟ ଥାଏ ଜହ୍ନକୁ ଦେଖାଇବାରେ । ଏହିଭଳି ଭଗବାନ ତ ନିର୍ଗୁଣ, କାରଣ ରହିତ । ତେବେ ବି ତାଙ୍କୁ ଜଗତ୍ କାର୍ଯ୍ୟର କାରଣ କହି ପରିଚୟ ଦିଆଯାଏ କେବଳ ବୋଦ କରାଇବା ପାଇଁ । ଯଦିଓ ଭଗବାନଙ୍କୁ ପ୍ରତ୍ୟକ୍ଷ, ଅନୁମାନ, ଶବ୍ଦାଦି ପ୍ରମାଣ ଦ୍ୱାରା ସିଦ୍ଧ କରାଯାଇପାରେ ନାହିଁ, କାରଣ ସେ ଏ ସବୁର ଉର୍ଦ୍ଧ୍ୱରେ, ତେବେବି ବୁଝାଇବାକୁ ଯାଇ କହିଥାଉ । ଏ ସବୁ ଦ୍ୱାରା ବୁଝାଇ ହେଉ ନଥିଲେ ବି ତାଙ୍କୁ ବୁଝାଇ ଦେଇ ହୁଏ ତ !

ମହମନା ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ଜନକ ଯେତେବେଳେ ନାରାୟଣଙ୍କ ସ୍ୱରୂପ ପଁଚାରିଲେ ଯୋଗେଶ୍ୱର ପିପ୍‌ପଳାୟନ କହିଲେ, 'ରାଜନ୍ ! ବୃକ୍ଷ ଫଳ ଧାରଣ କଲେ ଯେ ପର୍ଯ୍ୟନ୍ତ ଫଳ ପାଚି ନ ଥାଏ, ସେ ପର୍ଯ୍ୟନ୍ତ ସ୍ଥିର ଥାଏ । ଏବଂ ପାଚିଲେ ଫଳ ପଡ଼ିଯାଏ । ଏ ସବୁ କାହା ପ୍ରେରଣାରେ ହୁଏ ?''

ରାଜା କହିଲେ, ''ମହାରାଜ ! ଏ ସବୁ ତ କାଳର ପ୍ରେରଣାରେ ହିଁ ହୋଇଥାଏ ।''

ମହାମୁନି ପିପ୍‌ପଳାୟନ କହିଲେ, ''ରାଜନ୍ ! **କାଳ ଯାହାଙ୍କ ପ୍ରେରଣାରେ କଳନା-ଶକ୍ତି ପାଏ ସେ ହିଁ ହେଉଛନ୍ତି ଶ୍ରୀମନ୍‌ନାରାୟଣ** । ସେ ଏହି ସଂପୂର୍ଣ୍ଣ ସଂସାରର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ ।''

ରାଜା କହିଲେ, ''ଯିଏ ଯାହାର କାରଣ, ସେହି କାରଣର ବି ତ କେହି କାରଣ

ଥିବେ ? ଯେପରି ପୁତ୍ରର କାରଣ ପିତା, ସେହି ପିତାଙ୍କର ବି କେହି କାରଣ ବି ତ ଥିବେ । ତେବେ ଶ୍ରୀମନ୍ନାରାୟଣଙ୍କର କାରଣ କିଏ ?''

ମୁନି କହିଲେ, **''ରାଜନ୍ ! ଭଗବାନ ହେଉଛନ୍ତି କାରଣ ରହିତ । ତାଙ୍କର କୌଣସି କାରଣ ନାହିଁ । ସେ ହିଁ କାର୍ଯ୍ୟ, ସେ ହିଁ କାରଣ ଓ ସେ ହିଁ କରଣ । ସେ ହିଁ ନିମିତ୍ତ କାରଣ ଓ ସେ ହିଁ ଉପାଦାନ କାରଣ ।** ଜାଗ୍ରତ, ସ୍ୱପ୍ନ, ଆଉ ସୁଷୁପ୍ତି- ଏପରି ତିନୋଟି ଅବସ୍ଥା କୁହାଯାଏ । ଜାଗ୍ରତରେ ସେ ବିଶ୍ୱରୂପରେ ନେତ୍ରରେ ରହିଥାଏ । ସ୍ୱପ୍ନରେ ସେ ତେଜସ ରୂପରେ ଆତ୍ମାରେ ରହେ, ସୁଷୁପ୍ତିରେ ସେ ହିଁ ପ୍ରାଜ୍ଞ ରୂପରେ ଆତ୍ମାରେ ରହିଥାଏ । ସେ ଅବସ୍ଥାସମୂହର ସାକ୍ଷୀ ରୂପରେ ଭିତରେ ବାହାରେ ସର୍ବତ୍ର ଥାଏ । ସେ ସବୁ ଦେଖୁଥା'ନ୍ତି, ସେ ସବୁ କରୁ ଥା'ନ୍ତି, ତେବେ ବି ଏ ସବୁଥିରେ, କେଉଁଥିରେ ହେଲେ ଲିପ୍ତ ନଥା'ନ୍ତି ।''

ରାଜା କହିଲେ, ''ମହାରାଜ୍ ! କାର୍ଯ୍ୟ ତ ଆମେ ଦେହରେ କର୍ମେନ୍ଦ୍ରିୟଙ୍କ ମାଧ୍ୟମରେ କରୁଛେ । ବସ୍ତୁଗୁଡିକର ଜ୍ଞାନ ଆମେ ଜ୍ଞାନେନ୍ଦ୍ରିୟଙ୍କ ମାଧ୍ୟମରେ ପାଉଛେ । ଜୀବନ ପ୍ରାଣ ଦ୍ୱାରା ଧାରଣ କରୁଛେ ଆଉ ଅନୁଭବ ହୃଦୟ ଦ୍ୱାରା ଅନ୍ତଃକରଣରେ କରୁଛେ ।''

ମହାମୁନି ପିପ୍ପଲାୟନ କହିଲେ, ''ରାଜନ୍ ! ଏ ସବୁ ତ ଜଡ଼ । ଏ ସମସ୍ତଙ୍କୁ ଯିଏ ଜୀବନ ପ୍ରଦାନ କରୁଛି, ଏ ସମସ୍ତରେ ଯିଏ ଚୈତନ୍ୟତା ସ୍ଥାପିତ କରି ସେମାନଙ୍କୁ କାର୍ଯ୍ୟରେ ପ୍ରବୃତ୍ତ କରୁଛି ତାଙ୍କୁହିଁ ତୁମେ ପରାତ୍ପର ତତ୍ତ୍ୱ ନାରାୟଣ ବୋଲି ଜାଣ ।''

ରାଜା କହିଲେ, ''ସେହି ତତ୍ତ୍ୱକୁ କିପରି ଜାଣିବା ? ମନ ଦ୍ୱାରା ମନନ କରିବା ନା ବୁଦ୍ଧି ଦ୍ୱାରା ଜାଣିବା ।''

ମହାମୁନି ପିପ୍ପଲାୟନ ହସି ହସି କହିଲେ, ''ଅଗ୍ନିର ସ୍ଫୁଲିଙ୍ଗ କ'ଣ ଅଗ୍ନିକୁ ପ୍ରକାଶିତ କରିପାରେ ? ଜଳର ଅଣୁ କ'ଣ ଜଳକୁ ଓଦା କରିପାରେ ? ବାୟୁର ତରଙ୍ଗ କ'ଣ ବାୟୁକୁ ଉଡ଼ାଇ ଦେଇ ପାରେ ? ସେହିଭଳି ମନ, ବାଣୀ, ଚକ୍ଷୁ, ବୁଦ୍ଧି, ପ୍ରାଣ ତଥା ଅନ୍ୟାନ୍ୟ ଇନ୍ଦ୍ରିୟ ସେହି ପ୍ରଭୁଙ୍କୁ ସିଦ୍ଧି କରିବାରେ ଅସମର୍ଥ । ରାଜନ୍ ! ଏ ସମସ୍ତ ତ ଜଡ଼ । ଏ ସବୁଥିରେ ଚୈତ୍ୟନତା ସେ ହିଁ ପ୍ରଦାନ କରିଥାଆନ୍ତି । ବାପ ଜନ୍ମର କଥା ପୁଅ କେଉଁଭଳି କହିପାରିବ ?''

ରାଜା କହିଲେ, ''ତେବେ ହେ ଭଗବନ୍ ! ଶାସ୍ତ୍ରତ ଶବ୍ଦ ଦ୍ୱାରା ତାହା କହି ପାରେ ?''

ମହାମୁନି କହିଲେ, ''ହଁ ! ଶାସ୍ତ୍ର ତ ତାହା କହେ । ଶାସ୍ତ୍ର ନ କହିଲେ ସେ ବିଷୟରେ ଜାଣନ୍ତେ କିପରି ? ଶାସ୍ତ୍ର କିନ୍ତୁ ତାଙ୍କୁ ପ୍ରତ୍ୟକ୍ଷରେ କହୁନାହିଁ । ଲାଜକୁଳୀ ବୋହୂ ଭଳି

ନିଷେଧ ବୃତ୍ତିରେ କହୁଛି । ଜଣଙ୍କର ପତି ଦଶଜଣଙ୍କ ଭିତରେ ବସିଛି । ସ୍ତ୍ରୀର ସାଙ୍ଗ ଯେତେବେଳେ ତୋ ପତି ସିଏ ବୋଲି କହେ, ସ୍ତ୍ରୀ ମୁଣ୍ଡ ହଲାଇ ମନାକରେ । ଦ୍ୱିତୀୟ ଲୋକକୁ ଦେଖାଇ ପଚାରିଲେ ସ୍ତ୍ରୀ ପୁଣି ମୁଣ୍ଡ ହଲାଏ । ଯେତେବେଳେ ପତି ଆଡକୁ ସଂକେତ କରେ ସେତେବେଳେ ସ୍ତ୍ରୀ ଲାଜେଇ ଯାଇ ଚୁପ୍ ହୋଇଯାଏ । ସ୍ତ୍ରୀର ସଙ୍ଗାତୁଣୀ ଏଥର ସେହି ଲୋକକୁ ହିଁ ପତି ଚିହ୍ନେ । ଠିକ୍ ସେହିଭଳି ଦେହ ବ୍ରହ୍ମ ନୁହେଁ, ଇନ୍ଦ୍ରିୟ ବ୍ରହ୍ମ ନୁହେଁ, ସେଗୁଡିକର ବିଷୟ ବ୍ରହ୍ମ ନୁହେଁ, ମନ ବ୍ରହ୍ମ ନୁହେଁ, ବୁଦ୍ଧି ବ୍ରହ୍ମ ନୁହେଁ, ଚିତ୍ତ ବ୍ରହ୍ମ ନୁହେଁ, ଅହଂକାର ବ୍ରହ୍ମ ନୁହେଁ, ଏହିଭଳି ନାହିଁ ନାହିଁ କରି କରି ଅବଶେଷରେ ଯାହା ରହିଯାଏ ତା' ବ୍ରହ୍ମ ବୋଲି କୁହାଯାଏ । **ଅନାତ୍ମ ପଦାର୍ଥକୁ ନିଷେଧ କରି କରି ସବୁ ସରିଯିବା ପରେ ଯାହା ରହେ ତାହା ବ୍ରହ୍ମ, ସେ ହିଁ ନାରାୟଣ ।''**

ରାଜା କହିଲେ, ''ତେବେ ଆମେ ଏପରି କାହିଁକି ନ ବୁଝିବା ଯେ ବ୍ରହ୍ମ କୌଣସି ପ୍ରକାର ବସ୍ତୁ ନୁହେଁ ।''

ଗମ୍ଭୀରତାର ସହିତ ପିପ୍‌ପଲାୟନ ମୁନି କହିଲେ, ''ନା ନା ରାଜନ୍ ! ଦେଖନ୍ତୁ, ଆପଣ ସେହି ନିଷେଧର କୌଣସି ଆଧାର ଯଦି ନ ମାନନ୍ତି ତେବେ 'ଏହା ନାହିଁ' ବୋଲି ତ କୁହାଯାଇ ନ'ପାରେ । ଏହା ନାହିଁ ବୋଲି କୌଣସି ବସ୍ତୁକୁ ଅପେକ୍ଷା କରି କୁହାଯାଏ । କେହି କହେ- 'ଏ ଭିଡ଼ ଭିତରୁ ଦେବଦତ୍ତକୁ ଖୋଜିଦେଲ ।' ଖୋଜିଲାବାଲା ଯାହାକୁ ଦେଖେ ସେ ଦେବଦତ୍ତ ନୁହେଁ ବୋଲି କୁହେ । ଆଉରି ଖୋଜା ଖୋଜି କରି ଅନ୍ୟକୁ ଦେଖି ଇଏ ବି ଦେବଦତ୍ତ ନୁହେଁ ବୋଲି କହେ । ଖୋଜିଲାବାଲା ଭିଡ଼ ଭିତରେ ସର୍ବତ୍ର ଖୋଜେ । ଆଉ ପ୍ରତ୍ୟେକଙ୍କୁ ଦେଖେ ଓ 'ନାହିଁ ନାହିଁ' ବୋଲି କହେ । ସେ 'ନାହିଁ' କହିବାର ତାତ୍ପର୍ଯ୍ୟ ହେଉଛି ଦେବଦତ୍ତ ନାମକ ଜଣେ ଅବଶ୍ୟ କେହି ଅଛି; ମାତ୍ର ସେ ଏହି ଭିଡ଼ ମଧ୍ୟରେ ନାହିଁ । ଠିକ୍ ସେହିଭଳି ବେଦ ଯେତେବେଳେ 'ନେତି ନେତି' କହୁଛି, ଯେ 'ସେ ତାହା ନୁହନ୍ତି' ବା 'ତାହା ସେ ନୁହନ୍ତି'- ଏଥିରୁ ସ୍ପଷ୍ଟ ସିଦ୍ଧ ହେଉଛି ଯେ ମନ, ବାଣୀ, ବୁଦ୍ଧି, ପ୍ରାଣ ତଥା ଅନ୍ୟାନ୍ୟ ଇନ୍ଦ୍ରିୟ ବ୍ରହ୍ମ ନୁହେଁ; କିନ୍ତୁ ଏ ସମସ୍ତଠାରୁ ପୃଥକ୍ କେହି ବ୍ରହ୍ମ ନିଶ୍ଚୟ ଅଛି । ଏହି ଅର୍ଥାପତ୍ତି ପ୍ରମାଣ ଦ୍ୱାରା ସିଦ୍ଧ ହେଉଛି । ଅର୍ଥାପତ୍ତି ଅର୍ଥ- ଯେଉଁ ବସ୍ତୁ ଦେଖାଯାଏ, କିନ୍ତୁ ତାହାକୁ ଅନୁମାନ କରାହୁଏ- ଯେପରି ଠେକୁଆର ଶିଙ୍ଘ ନଥାଏ, ଏପରି ବାକ୍ୟର ଅର୍ଥ ହେଉଛି ଠେକୁଆ ନାମକ ଜୀବର ମୁଣ୍ଡରେ ଶିଙ୍ଘ ଦେଖାଯାଏ ନାହିଁ । କିନ୍ତୁ ଶିଙ୍ଘ ନାମକ ବସ୍ତୁ ଅବଶ୍ୟ ଅଛି ଆଉ ତାହା ଚାରି ଗୋଡିଆ ପଶୁଙ୍କ ମୁଣ୍ଡରେ ଉଠେ । ଯଦି ଶିଙ୍ଘ ନାମକ କିଛି ବସ୍ତୁ ନଥା'ନ୍ତା ତେବେ ଠେକୁଆର ଶିଙ୍ଘ ନାହିଁ କହିବା ଅସଂଗତ ହୋଇଥା'ନ୍ତା । ଶିଙ୍ଘ ବୋଲି ଯଦି କିଛି ନଥା'ନ୍ତା ତେବେ ନିଷେଧାତ୍ମକ ବାକ୍ୟଟି କାହିଁକି ହେଲା, କିପରି ହୁଅନ୍ତା ?

ନିଷେଧ କରା ହୋଇଛି ଅର୍ଥ ଶିଙ୍ଘର ଅସ୍ତିତ୍ୱ ନିଶ୍ଚୟ ଅଛି । ବେଦରେ 'ନେତି ନେତି' ଶବ୍ଦ ଅଛି । ଏଥିରୁ ଏହା ସ୍ୱତଃସିଦ୍ଧ ଯେ ନାରାୟଣ ମାୟିକ ପଦାର୍ଥ ନୁହନ୍ତି, ଏହା ବ୍ୟତୀତ ଜଣେ ନାରାୟଣ ଅଛନ୍ତି । **ଏହି ସଂସାର ଯେତେବେଳେ ନଥିଲା ସେତେବେଳେ ବି ବ୍ରହ୍ମ ଥିଲା । ଏବେ ଏହି ଜଗତ ଦେଖାଯାଉଛି ଆଉ ତାହା ବି ଅଛି । ଜଗତ ଯଦି ରହିବ ନାହିଁ ତେବେ ବି ବ୍ରହ୍ମ ରହିବ ।'**

ରାଜା କହିଲେ, ''ବ୍ରହ୍ମନ୍ ! ବ୍ରହ୍ମ କେବଳ ଗୋଟିଏ ଥିଲା, ସେଥିରୁ ଅନେକ ହେଲା କିପରି ?''

ମହାମୁନି ପିପ୍‌ପଲାୟନ ହସି ହସି କହିଲେ, ''ରାଜନ୍ ! ଏକରୁ ତ ଅନେକ ହୋଇଥାଏ । ଆମ୍ବ ଗଛ ହେବାପୂର୍ବରୁ ଟାକୁଆ ମାତ୍ର ଗୋଟିଏ ଥିଲା । ମାଟିରେ ତାହା ପୋତିବା ପରେ ଟାକୁଆର ଅଙ୍କୁରୋଦ୍‌ଗମ ହେଲା । ସେଥିରୁ ପତ୍ର ବାହାରିଲା । ଶାଖା ପ୍ରଶାଖା ହେଲା । ଫଳ ଫଳିବାରେ ଲାଗିଲା । ଗୋଟିଏ ଟାକୁଆରୁ ଅନେକ ଫଳ ଫଳିଲା । ଗୋଟିଏ ଟାକୁଆରୁ ଅନେକ ଟାକୁଆ ଉତ୍ପନ୍ନ ହେଲା । ସେ ସବୁଥିରେ ବୀଜ ରୂପରେ ଗୋଟିଏ ମାତ୍ର ଶକ୍ତି ବିଦ୍ୟମାନ ଥାଏ । ଗୋଟିଏ ବୀଜରୁ ଅନେକ ବସ୍ତୁ ହୋଇଛି । ଏବଂ ପରିଶେଷରେ ବୀଜ ହିଁ ବୀଜ ରହିଯାଏ । ବୃକ୍ଷ ପୂର୍ବରୁ ବୀଜ ଥିଲା । ବୃକ୍ଷଟିରେ ପୂରାପୂରି ବୀଜ ବ୍ୟାପ୍ତ ହୋଇଯାଇଥିଲା । ପୁଣି ବୀଜ ହେବାପରେ ତହିଁରେ ବୃକ୍ଷ ହେବାର ପୂର୍ଣ୍ଣ ଶକ୍ତି ରହିଲା । ଅନେକତ୍ୱରେ ବୀଜ ଶକ୍ତିରୂପରେ ଏକତ୍ୱ ଲୁକ୍‌କାୟିତ ହୋଇ ରହିଛି । ଏହିଭଳି ସୃଷ୍ଟିର ଆଦିରେ ଏକ ବ୍ରହ୍ମ ହିଁ ଥିଲା । ସେହି ବ୍ରହ୍ମ ସତ୍ତ୍ୱ, ରଜ ଓ ତମ ଏହିଭଳି ତିନି ପ୍ରଧାନ୍ ରୂପରେ ପରିଣତ ହୋଇଗଲା ।''

ରାଜା ପଚାରିଲେ, ''ମହାରାଜ୍ ! ବ୍ରହ୍ମ ଜଡ଼ ନା ଚୈତନ୍ୟ ।''

ପିପ୍‌ପଲାୟନ ମୁନି କହିଲେ, ''ରାଜନ ! ଶ୍ରୀମନ୍ନାରାୟଣ ତ ଚୈତନ୍ୟଘନ । ସଚ୍ଚିଦାନନ୍ଦ ସ୍ୱରୂପ ।''

ରାଜା ପଚାରିଲେ, ''ତେବେ ଏହି ସତ୍ତ୍ୱ, ରଜ ଆଉ ତମ ଜଡ଼ ନା ଚୈତନ୍ୟ ?''

ମୁନି କହିଲେ, ''ସେ ସବୁ ଜଡ଼ ।''

ରାଜା କହିଲେ, ''ଚୈତନ୍ୟରୁ ଜଡ଼ର ଉତ୍ପତ୍ତି କିପରି ହେଲା ? ଚୈତନ୍ୟରୁ ଚୈତନ୍ୟ ତ ହେବା କଥା ନା ! ଜଡ଼ରୁ ଜଡ଼ । ମନୁଷ୍ୟଠାରୁ ଯିଏ ଉତ୍ପନ୍ନ ହେବ ସେ ମଣିଷ ନା ! ପୁଣି ଜଡ଼ରେ ବଢ଼ିବା ଆଦି କ୍ରିୟା ତ ସମ୍ଭବ ହୋଇନଥାଏ ।''

ଏପରି କଥା ଶୁଣି ଯୋଗେଶ୍ୱର ପିପ୍‌ଲାୟନ ହସି ହସି କହିଲେ, ''ରାଜନ୍ ! କାହିଁକି ? ତୁମ ଶରୀରରେ ନଖ, ବାଳ ଆଦି କ'ଣ ଉତ୍ପନ ହୋଇନାହିଁ । ସେଗୁଡ଼ିକରେ

ଯଦି ଚୈତନ୍ୟ ସହିତ ସମ୍ବନ୍ଧ ହୋଇପାରିଲା, ଜଡ଼ ହୋଇ ମଧ୍ୟ ତାହା ତ ବଢ଼ି ପାରୁଥାଏ । ତାକୁ କାଟି ଦେହଠାରୁ ପୃଥକ୍ କରିଦିଅ, ଅଥବା ଶରୀରଠାରୁ ପ୍ରାଣକୁ ପୃଥକ୍ କରିଦେଲେ ତାହା ଆଉ ବଢ଼ିପାରେ ନାହିଁ । ଏହିଭଳି ଦେହ, ମନ, ପ୍ରାଣାଦି ଜଡ଼ ହୋଇ ବି ଚୈତନ୍ୟ ସଂସର୍ଗରେ ଆସି ସକଳ କାର୍ଯ୍ୟ କରିଥା'ନ୍ତି ।''

ରାଜା କହିଲେ, ''ହଁ ମହାରାଜ, ଏଥର ବୁଝିଗଲି । ଚୈତନ୍ୟଘନ ସଚ୍ଚିଦାନନ୍ଦ ବ୍ରହ୍ମ ହିଁ ତ୍ରିବୃତ୍ ପ୍ରଧାନ ବା ପ୍ରକୃତି ନାମରେ ପ୍ରସିଦ୍ଧ । ଏହା ପରେ କ'ଣ ହେଲା ?''

ମହାମୁନି ପିପ୍ପଲାୟନ କହିଲେ, ''ହଁ ତା'ହେଲେ ହେ ରାଜନ୍ ! ତାହା ତ ପ୍ରଧାନ ସତ୍ତ୍ୱ, ରଜ ଆଉ ତମ ରୂପ ହେବାରୁ ପ୍ରଧାନ ଶ୍ରେଷ୍ଠ କୁହାଗଲା । ସତ୍ତ୍ୱଗୁଣର କାର୍ଯ୍ୟ ହେଲା ଜ୍ଞାନ, ରଜୋଗୁଣର କାର୍ଯ୍ୟ ହେଉଛି କ୍ରିୟା ଆଉ ତମୋଗୁଣର କାର୍ଯ୍ୟ ହେଉଛି ଢାଙ୍କି ଦେବା । ଆଉ ସେହି ପ୍ରଧାନ ତତ୍ତ୍ୱ ଜ୍ଞାନମୟ ହୋଇଥିବାରୁ ମହତତ୍ତ୍ୱ କୁହାଯାଏ । କ୍ରିୟାତ୍ମକ ହୋଇଥିବାରୁ ତାହାର ନାମ ସୂତ୍ରାତ୍ମା ଓ ଜୀବର ଉପାଧି ହେବାପରେ ତାହାର ସଂଜ୍ଞା ଅହଂକାର ହୋଇଯାଏ । ଏହାପରେ ସେହି ଅହଂକାର ରୂପୀ ବ୍ରହ୍ମ ସତ୍ତ୍ୱ, ରଜ ଆଉ ତମ ତିନି ଗୁଣର କାରଣ ଦଶ ଇନ୍ଦ୍ରିୟଙ୍କ ଅଧିଷ୍ଠାତୃ ଦେବ ରୂପରେ, ଦଶ ଇନ୍ଦ୍ରିୟ ରୂପରେ, ପାଞ୍ଚ ଭୂତ ରୂପରେ, ପାଞ୍ଚତନ୍ମାତ୍ରା ରୂପରେ ଆଭାସିତ ହେବାରେ ଲାଗେ । ଏସବୁ ହେବା ପରେ ବି ଏହାର ବୃଦ୍ଧି ହୁଏ ନାହିଁ କି ହ୍ରାସ ହୁଏ ନାହିଁ । ଯେପରି ସୁନା ଯେ ପର୍ଯ୍ୟନ୍ତ ଖଣିରେ ଥାଏ, ସେତେବେଳେ ବି ସୁନା ଥାଏ, କୁଣ୍ଡଳ ବା ହାର ହୋଇଯିବା ପରେ ବି ସୁନାରେ କୌଣସି ପରିବର୍ତ୍ତନ ହୋଇନଥାଏ । ତାହା ନାମ୍ ରୂପ, ଉପାଧି ରହିତ, ସବୁବେଳେ ଅପରିବର୍ତ୍ତିତ ରହିଥିବା ଏକରସ । ନାମ ରୂପ ତାହାର କିଛି କ୍ଷତି କରିପାରେ ନାହିଁ ।

ସେହି ଭଳି ସତ୍-ଅସତ୍, ଦୃଶ୍ୟ-ଅଦୃଶ୍ୟ ତଥା ଯା ପରେ ବି ଯାହା କିଛି ଥାଏ, ତାହା ବ୍ରହ୍ମ ହିଁ, ବ୍ରହ୍ମ, ବ୍ରହ୍ମ ଅତିରିକ୍ତ ଅନ୍ୟ କିଛି ନୁହେଁ । ଟିକିଏ ବୋଲି ନାନାତ୍ୱ ନଥାଏ । ସେହି ପରମାତ୍ମା ଭଗବାନ ନାରାୟଣ ବ୍ରହ୍ମର ନା କେବେ ଜନ୍ମ ହୋଇଥାଏ ନା ମୃତ୍ୟୁ । ନା ସେ କମେ ନା ବଢ଼େ । ଏପରି କୌଣସି ସ୍ଥାନ ନାହିଁ ଯେଉଁଠାରେ ବ୍ରହ୍ମ ଖଣ୍ଡିତ ହୋଇ ନଥାଏ । ଗୋଟିଏ ଡାଳରେ ମୁହଁ ପର୍ଯ୍ୟନ୍ତ କ୍ଷୀର ଭର୍ତ୍ତି କରିଦେବା ପରେ ଅନ୍ୟ ଜିନିଷ ପୂରାଇବା ପାଇଁ ଜାଗା କୁଆଡ଼ୁ ଆସିବ ? ସେହିଭଳି ଏତେ ଟିକିଏ ବି ସ୍ଥାନ ଖାଲି ନାହିଁ ଯେଉଁଠାରେ ବ୍ରହ୍ମ ପରିପୂର୍ଣ୍ଣ ରୂପରେ ବ୍ୟାପ୍ତ ନ ହୋଇଥାଏ । ବ୍ରହ୍ମ ତ ସର୍ବବ୍ୟାପକ । ନିତ୍ୟ, ଶାଶ୍ୱତ, ଅଚ୍ୟୁତ ତଥା ଜ୍ଞାନସ୍ୱରୂପ ।''

ରାଜା ପଚାରିଲେ, ''ଭଗବନ୍ ! ଏ ସବୁ ସତ୍ୟ କିନ୍ତୁ ଆମେ ଦେଖୁ- ବାଳକଟିଏ ଜନ୍ମ ହୋଇ ବାଳକ ହୁଏ. ଏହାପରେ ଯୁବକ ହୁଏ, ପରେ ବୁଢ଼ା ହୋଇ ମରିଯାଏ ।

ତେବେ ଏପରି ଯେଉଁ ପରିବର୍ତ୍ତନ ହେଲା ତାହା କେଉଁଥିରେ ହେଉଛି ? ଜୀବରେ, ବ୍ରହ୍ମରେ ନା ଶରୀରରେ ? ଆପଣ କହୁଛନ୍ତି ବ୍ରହ୍ମରେ ହ୍ରାସ ବୃଦ୍ଧି ସମ୍ଭବ ନୁହେଁ । ଷୋହଳ ତତ୍ତ୍ୱ ରୂପରେ ବିସ୍ତୃତ ହୋଇଥିବା ଏହି ପାଞ୍ଚଭୌତିକ ତ୍ରିଗୁଣମୟ ଚେତନଶକ୍ତି ଯୁକ୍ତ ଲିଙ୍ଗ ଶରୀର - ଯାହାକୁ ଜୀବ କୁହାଯାଏ- ଏଥିରେ ବି ଏହା ସମ୍ଭବ ନୁହେଁ; କାରଣ ଏହା ବି ଚୈତନ୍ୟାଂଶ । ଶରୀର ଜଡ଼, ତେବେ ବି ବାଲ୍ୟ, ଯୌବନ, ଆଉ ବାର୍ଦ୍ଧକ୍ୟ ଆଦି ଅବସ୍ଥା କାହାର ହୋଇଥାଏ ?''

ପିପ୍‌ପଲାୟନ ମୁନି କହିଲେ, ''ମୁଁ ଆପଣଙ୍କୁ ରାଜନ୍, ବାରମ୍ବାର କହିଛି ଯେ ଚୈତନ୍ୟର ଅଧିଷ୍ଠାନରେ ଦେହରେ ଏ ସମସ୍ତ ଅବସ୍ଥା ହୋଇଥାଏ । ବ୍ରହ୍ମ ତ ସାକ୍ଷୀ ରୂପରେ କେବଳ ଦେଖୁଥାଏ । ଯେପରି ଗୃହରେ ଦୀପ ଜଳୁଛି । ଦୀପ ଆଲୋକିତ କରୁଛି । ଦୀପ ଆଲୋକରେ ଆମେ ପୁସ୍ତକ ଲେଖୁ, ନିଷିଦ୍ଧ କର୍ମ କରୁ ଅଥବା ଆଉ ଯାହା ଇଚ୍ଛା ତାହା କରୁ, ଦୀପ କିନ୍ତୁ ତଟସ୍ଥ ଭାବରେ ଆଲୋକ ପ୍ରଦାନ କରୁଥାଏ । ଭଲ ଖରାପ କୌଣସି କର୍ମରେ ସେ ଲିପ୍ତ ନଥାଏ । କେବଳ ସମସ୍ତଙ୍କୁ ଦେଖୁଥାଏ । ଦୀପ ଯଦି ଦେଖିବା ବନ୍ଦ କରିଦିଏ, ଲିଭିଯାଏ ତେବେ ସମସ୍ତ ବସ୍ତୁ ଆଲୋକିତ ହୋଇ ପାରିବେ ନାହିଁ । କାର୍ଯ୍ୟ ବି ହୋଇ ପାରିବ ନାହିଁ । ସେହି ବ୍ରହ୍ମ ହିଁ ଅନେକ ରୂପରେ ଅନେକ ନାମରେ ପ୍ରତୀତ ହେଉଥାଏ । ଯେପରି ଲୋକଟିଏ, ଯାତ୍ରା କରିବା ବେଳେ ତାକୁ ଯାତ୍ରୀ କୁହାଯାଏ, ପଢ଼ିବାକୁ ଯାଉଥିବା ବେଳେ ତାକୁ ବିଦ୍ୟାର୍ଥୀ କୁହାଯାଏ, ମୁକୁଟ ବାନ୍ଧି ବିବାହ କରିବାକୁ ଯାଉଥିବା ବେଳେ ତାକୁ ବର ସଂଜ୍ଞା ଦିଆହୁଏ, ପଢ଼ାଇବାକୁ ଯାଉଥିବା ବେଳେ ତାକୁ ଅଧ୍ୟାପକ କୁହାଯାଏ- ସ୍ଥାନ ଓ କାର୍ଯ୍ୟ ଭେଦରେ ଲୋକଟିର ସଂଜ୍ଞା ଭିନ୍ନ ଭିନ୍ନ ହୋଇଥାଏ । ଯେପରି ଆପଣ ଜାଣନ୍ତି ଯେ ପ୍ରାଣ ହେଉଛି ଏକ । କିନ୍ତୁ ସ୍ଥାନ ଭେଦରେ ତାହାର ପ୍ରାଣ, ଅପାନ, ସମାନ ଆଉ ବ୍ୟାନ ଆଦି ନାମ ହୋଇଯାଏ । ହୃଦୟର ଉପରେ ଥିବା ବେଳେ ତାହା ପ୍ରାଣ, ନାଭିର ନିମ୍ନରେ ଥିବାବେଳେ ତାହା ଅପାନ ସଂଜ୍ଞା ଧାରଣ କରେ, ଏହି ଦୁଇ ସ୍ଥାନ ମଝିରେ ରହି ଉଭୟଙ୍କୁ ସମାନ ଚାପରେ ଟାଣୁଥିବା ବେଳେ ତାହାକୁ ସମାନ କୁହାଯାଏ । ସବୁ ସନ୍ଧିରେ ରହୁଥିବାରୁ ତାକୁ ଉଦାନ କୁହାଯାଏ । ଆଉ ସମ୍ପୂର୍ଣ୍ଣ ଶରୀରରେ ବ୍ୟାପ୍ତ ହେବାରୁ ତାହା ବ୍ୟାନ ସଂଜ୍ଞା ହୋଇଯାଏ । ଏହିଭଳି ଏକ ବ୍ରହ୍ମ ବିବିଧ ରୂପରେ ପ୍ରତୀତ ହେଉଥାଏ । ଏବେ ଦେଖନ୍ତୁ ଅଣ୍ଡଜ, ପିଣ୍ଡଜ, ଉଦ୍ଭିଦଜ, ତଥା ସ୍ୱେଦଜ - ଏହି ସମସ୍ତ ପ୍ରକାର ପ୍ରାଣୀଙ୍କର ପ୍ରାଣ ଅଛି । ଜୀବ ଯେଉଁ ଯୋନିକୁ ଯାଏ ତାହା ସେହିଭଳି ରୂପ ଅନୁସରଣ କରେ । ଦେହ ଯେଉଁ ଭଳି ହୋଇଥାଏ ସେପରି ପ୍ରାଣ ହୋଇଯାଏ । ପ୍ରାଣର ଦେହ ସହିତ କୌଣସି ପ୍ରକାର ସଙ୍ଗ ହୁଏ ନାହିଁ । ଶରୀରରେ ରହିଥିଲେ ବି ତାହା ଯେମିତି କି ସେମିତି ବିଶୁଦ୍ଧ ରହିଥାଏ । ଏହିଭଳି ବ୍ରହ୍ମ ପ୍ରତ୍ୟେକ ଅବସ୍ଥାରେ ସବୁଥିରେ ସାକ୍ଷୀ ରୂପରେ ସ୍ଥିତ ରହି ବି ନିର୍ଲେପ ରହିଥାଏ ।

ରାଜା କହିଲେ, ''ଭଗବନ୍ ! ଆତ୍ମାର ଅନୁଭବ ତ ଆମେ କରିପାରୁନା, ସମ୍ମୁଖରେ ଆମେ ଶବ୍ଦ, ରୂପ, ରସ, ଗନ୍ଧ ଆଉ ସ୍ପର୍ଶ ସମ୍ବନ୍ଧୀୟ ବିଷୟ ଦେଖୁ, ସେହି ବିଷୟକୁ ଗ୍ରହଣ କରୁଥିବା ଶ୍ରୋତ୍ର, ଚକ୍ଷୁ, ରସନା, ଘ୍ରାଣ ଆଉ ଚର୍ମ ଏହି ଇନ୍ଦ୍ରିୟଙ୍କର ବୋଧ କରାଇଥାଏ, ଅହଂକାରର ବି ଅନୁଭବ ହୁଏ- ଏହାଛଡ଼ା ପୁଣି ଆତ୍ମା କ'ଣ ?''

ପିପ୍‌ପଲାୟନ ମହାମୁନି ହସି ହସି କହିଲେ, ''ରାଜନ୍ ! ଆମର ଆତ୍ମା ଅନୁଭବ ହେଉନାହିଁ ବୋଲି ଆପଣ ତ ଏହା କହିପାରିବେ ନାହିଁ। ପ୍ରତ୍ୟେକ ପ୍ରାଣୀଙ୍କର ସବୁବେଳେ ଆତ୍ମାର ଅନୁଭବ ହେଉଥାଏ । ଆତ୍ମାନୁଭବ ନ ହେଉଥିଲେ ଏହି ଜୀବନ ବି ରହନ୍ତା ନାହିଁ । ଦେଖନ୍ତୁ, ଗାଢ଼ ନିଦ ସମୟରେ ବାହ୍ୟ ଜ୍ଞାନ ରହେ ନାହିଁ । ଇନ୍ଦ୍ରିୟ ନିଶ୍ଚେଷ୍ଟ ହୋଇଯାଏ । ଅହଂକାର ବି ଲୀନ ହୋଇଯାଏ । ସେତେବେଳେ ଜୀବାତ୍ମା ପରମାତ୍ମାଙ୍କ ସହିତ ମିଶି ସୁଖ ଅନୁଭବ କରେ । କାରଣ ସୁଖ ସ୍ୱରୂପ ହେଉଛନ୍ତି ଭଗବାନ । ଶୋଇ ସାରି ଉଠିବା ପରେ ଆମେ କହୁ, 'ଆଜି ଖୁବ୍ ସୁନ୍ଦର ନିଦ ହେଲା । ମୁଁ ସୁଖ ପୂର୍ବକ ଶୋଇଲି ।' ଏବେ କୁହନ୍ତୁ ତ ଦେଖି, ଇନ୍ଦ୍ରିୟମାନେ, ମନ, ଅହଂକାର - ଏ ସମସ୍ତ ଯେତେବେଳେ ନଥିଲେ, ସେତେବେଳେ ସୁଖ ଅନୁଭବ କିଏ କଲା ? କହିବାକୁ ପଡ଼ିବ ଯେ କୂଟସ୍ଥ ଆତ୍ମା ସେହି ଅବସ୍ଥାରେ ବି ଜାଗ୍ରତ ରହି ସେହି ସୁଖକୁ ଅନୁଭବ କରୁଥାଏ ।''

ରାଜା କହିଲେ, ''ମହାରାଜ ! ସୁଷୁପ୍ତି ଅବସ୍ଥାରେ ଏହି ଜୀବ ଯେତେବେଳେ ସୁଖ ଅନୁଭବ କରିପାରୁଛି, ସେତେବେଳେ ଜାଗ୍ରତ ଅବସ୍ଥାରେ ମାୟିକ ଦୁଃଖରେ କାହିଁକି ଫସି ଯାଉଛି ? ସେପରି ସୁଖାନୁଭୂତିରୁ ତ ଆଉ ଫେରିବା କଥା ନୁହେଁ ।''

ମହାମୁନି ପିପ୍‌ପଲାୟନ କହିଲେ, ''ରାଜନ୍ ! ସୁଷୁପ୍ତି ସମୟରେ ଜୀବ ଅଜ୍ଞାନକୁ ସାଙ୍ଗରେ ଧରି ରହିଥାଏ । ଅଜ୍ଞାନ ନ ରହିଥିଲେ ସେହି ସୁଖକୁ ଆମେ ସବୁବେଳେ ଅନୁଭବ କରୁଥାଆନ୍ତେ ।''

ରାଜା କହିଲେ, ''ତେବେ ହେ ଭଗବନ୍ ! ଏପରି କିଛି ଉପାୟ କୁହନ୍ତୁ ଯେଉଁଥିରେ ସେହି ସଚ୍ଚିଦାନନ୍ଦ ସ୍ୱରୂପ ବ୍ରହ୍ମରେ ନିତ୍ୟ ରହିଥିବେ ।''

ଏହା ଶୁଣି ମହାମୁନି ପିପ୍‌ପଲାୟନ କହିଲେ, ''ରାଜନ୍ ! ଯେ ପର୍ଯ୍ୟନ୍ତ ଗୁଣ କର୍ମ ସମ୍ଭୂତ ଏହି ମାୟାର ମନ୍ଦ ଚିତ୍ତରେ ଲେପି ହୋଇ ରହିଥାଏ ସେ ପର୍ଯ୍ୟନ୍ତ ଶୁଦ୍ଧ ତତ୍ତ୍ୱର ଆଲୋକ ପାଇବା କଠିନ ହୋଇଥାଏ । ସୂର୍ଯ୍ୟ ଉଦିତ ହୋଇଥିବେ, ଆଖି ବି ଥିବ କିନ୍ତୁ ଆଖିରେ ପରଳ ପଡ଼ିଥିବ ତେବେ ଆମେ ସୂର୍ଯ୍ୟକୁ ଦେଖି ପାରିବା କି ? କୌଣସି ଯୋଗ୍ୟ ବୈଦ୍ୟଙ୍କ ଦ୍ୱାରା ଆଖିରୁ ପରଳ ଦୂର କରିଦେଇ ପାରିଲେ ଆମେ ସୂର୍ଯ୍ୟକୁ ସ୍ୱତଃ ଦେଖି ପାରିବା । ସୂର୍ଯ୍ୟଙ୍କୁ ଆଉ କେଉଁଠାରୁ ଆଣି ଦେଖାଇବାକୁ ପଡ଼ିବ ନାହିଁ ।''

ରାଜା କହିଲେ, ''ଭଗବନ୍ ! ମୁଁ ସେହି ଉପାୟ ହିଁ ତ ପଚାରୁଛି । ଏହି ମାୟାର ପରଳ କିପରି ଦୂର ହୋଇ ପାରିବ ? ଚିତ୍ତ ଚିତ୍ତଚୋରଙ୍କ ଚାରୁ ଚରଣରେ କିପରି ଲାଗିଯାଇ ପାରିବ ?''

ଏହାଶୁଣି ମହାମୁନି ପିପ୍‌ପଲାୟନ କହିଲେ, ''ରାଜନ୍ ! କମଳନାଭ ଭଗବାନ୍ ବାସୁଦେବଙ୍କ ଚରଣାରବିନ୍ଦର ଇଚ୍ଛା ମନରେ ଜାଗୃତ ହୋଇଯିବ । - ଏହାହିଁ ହେଉଛି ତୀବ୍ର ଭକ୍ତି ରୂପ ଅଗ୍ନି ଯାହା ଜୀବର ଚିତ୍ତରେ ଢାଙ୍କି ହୋଇଥିବା ପରଳ ବା ଆସ୍ତରଣକୁ ଜଳାଇଦିଏ । ଚିତ୍ତ ବିଶୁଦ୍ଧ ହୋଇଯିବା ପରେ ବ୍ରହ୍ମର ଆଲୋକ (ଜ୍ୟୋତି/ପ୍ରକାଶ) ସ୍ୱତଃ ଦେଖା ଯିବାରେ ଲାଗିବ । ଅଶୁଦ୍ଧ ଚିତ୍ତ ସଂସାର ପ୍ରାପ୍ତ ହୋଇଥାଏ । ଆଉ ତାହା ଯେତେବେଳେ ବିଶୁଦ୍ଧ ହୋଇଯାଏ ବ୍ରହ୍ମ ସାକ୍ଷାତ୍‌କାରର କାରଣ ହୋଇଯାଏ । ଏଣୁ **ଆପଣ ଅନବରତ ଭଗବାନଙ୍କୁ ଭକ୍ତି କରନ୍ତୁ । ଚିତ୍ତକୁ ଶୁଦ୍ଧ କରିବା ବ୍ୟତୀତ ଭଗବାନଙ୍କ ଭକ୍ତିର ଅନ୍ୟ କୌଣସି ଦ୍ୱିତୀୟ ସରଳ ସୁଗମ ଆଉ ସର୍ବୋପଯୋଗୀ ସାଧନ ନାହିଁ । ଯେ କୌଣସି କର୍ମ କରୁଥିଲେ ବି ତାହା ଭଗବାନଙ୍କ ନିମିତ୍ତ କରୁଥିବା ଉଚିତ । ଯଜ୍ଞ ରୂପ ଶ୍ରୀମନ୍ନାରାୟଣଙ୍କୁ ପ୍ରସନ୍ନ କରିବା ପାଇଁ କର୍ମ କରୁଥିବା ଉଚିତ । ଯଜ୍ଞ ରୂପ ଶ୍ରୀମନ୍ନାରାୟଣଙ୍କୁ ପ୍ରସନ୍ନ କରିବା ପାଇଁ କର୍ମ କରୁଥିବା ଉଚିତ ।** ଯଜ୍ଞ ବ୍ୟତୀତ, ଭଗବାନଙ୍କର ପରିଚର୍ଯ୍ୟା ବ୍ୟତୀତ-ଅନ୍ୟ ସକଳ କର୍ମ ବନ୍ଧନର କାରଣ ହୋଇଥାଏ । ବାରମ୍ବାର ସଂସାର ପ୍ରାପ୍ତିର କାରଣ ହୋଇଥାଏ । କର୍ମ ତ ହେଉଛି ବନ୍ଧନର କାରଣ । କିନ୍ତୁ ସେହି କର୍ମ ଯଦି କୁଶଳତାର ପୂର୍ବକ କରାଯାଏ ତେବେ ମୁକ୍ତିର କାରଣ ହୋଇଯାଏ । **ଏଣୁ କର୍ମ ନ କରି କର୍ମଯୋଗ କରିବା ଉଚିତ । କର୍ମକୁ କୁଶଳତା ପୂର୍ବକ କରିବା ହେଉଛି କର୍ମଯୋଗ ।''**

ରାଜା ପଚାରିଲେ, ''ଭଗବନ୍ ! କୁଶଳତା ପୂର୍ବକ କର୍ମ କିପରି କରାଯାଏ ? କେଉଁ କେଉଁ କର୍ମ କରଣୀୟ ? କେଉଁ କେଉଁ କର୍ମ ଅକରଣୀୟ, କୃପାକରି ଆପଣ ଏହାର ଉପଦେଶ ଦେବା ହୁଅନ୍ତୁ । ଯେପରି ଭବସାଗର ସହଜରେ ପାରି ହୋଇ ହେବ । ଆପଣ ଏପରି କର୍ମ କୁହନ୍ତୁ ଯାହା ଦ୍ୱାରା କର୍ମସମୂହକୁ ତ୍ୟାଗକରି ନୈଷ୍କର୍ମ୍ୟ ସ୍ଥିତି ପ୍ରାପ୍ତ ହୋଇପାରିବା ।''

ରାଜାଙ୍କଠାରୁ ଏପରି କଥା ଶୁଣି ମହାମୁନି ପିପ୍‌ପଲାୟନ କିଛି ସମୟ ଚିନ୍ତାକରିବା ପରେ କହିଲେ, ''ରାଜନ୍ ! କର୍ମଯୋଗ ଏକ ସାଧାରଣ କଥା ନୁହେଁ । ମହାନ୍ ଜ୍ଞାନୀମାନେ ବି ଏହି ପ୍ରସଙ୍ଗରେ ମୋହିତ ହୋଇଯାଇଛନ୍ତି । କର୍ମ କ'ଣ ଓ ଅକର୍ମ କ'ଣ ତାହା ଚିହ୍ନିବା ବଡ଼ କଠିନ କଥା ।''

ରାଜା କହିଲେ, ''ଭଗବନ୍ ! ଏହି ପ୍ରଶ୍ନ ମୋତେ ବି କଠିନ ଜଣାପଡୁଛି । ଏ ବିଷୟରେ ମୁଁ ମୋର ଏକ ଅନୁଭବ କହୁଛି । ଦିନେ ମୁଁ ବାଳକାବସ୍ଥାରେ ପିତୃଦେବ ଇକ୍ଷ୍ୱାକୁଙ୍କ କୋଳରେ ବସିଥିଲି । ସେତେବେଳେ ସଦା ପାଞ୍ଚ ବର୍ଷ ବୟସରେ ରହୁଥିବା ବ୍ରହ୍ମାଙ୍କର ପୁତ୍ର ସନକ, ସନନ୍ଦନ, ସନାତନ ଆଉ ସନତ୍‌କୁମାର ସେଠାରେ ପହଞ୍ଚିଲେ । ସେମାନେ ଦେଖିବାକୁ ପିଲାଙ୍କ ଭଳି ଜଣା ପଡୁଥିଲେ, ସେମାନଙ୍କ ମୁଖମଣ୍ଡଳ ସୁନ୍ଦର ମନୋହର ଛୋଟ ଛୋଟ ଲଟାରେ ଆବୃତ ହୋଇ ମନୋରମ ଦେଖାଯାଉଥିଲା । ଚାରିଜଣ ଯାକ ପୂରା ଦିଗାମ୍ବର ଥିଲେ । ହେଲେ ନିଜ ନିଜର ତେଜରେ ଦଶଦିଗକୁ ଆଲୋକିତ କରିଦେଉଥିଲେ । ଜଣାଯାଉଥିଲା, ସତେ ଯେପରି ଚାରିଟି ସୂର୍ଯ୍ୟ ଏକା ବେଳକେ ଉଦିତ ହୋଇଯାଇଛନ୍ତି । ତାଙ୍କୁ ଦେଖି ମୋର ପୂଜ୍ୟ ପିତୃଦେବ, ମନ୍ତ୍ରୀ, ପୁରୋହିତ ଓ ଅନ୍ୟାନ୍ୟ ସଭାସଦମାନେ ଉଠି ଠିଆ ହୋଇଗଲେ । ସେମାନଙ୍କର ସ୍ୱାଗତ ସତ୍କାର କରି ସୁବର୍ଣ୍ଣ ସିଂହାସନରେ ବସାଇ ବିଧିବତ୍ ପୂଜା କଲେ । ଏଣୁ ତେଣୁ ଶିଷ୍ଟାଚାର ପ୍ରସଙ୍ଗରେ କଥୋପକଥନ ହେଉଥିଲା । ସେତେବେଳେ ସୁବିଧା ଦେଖି ମୁଁ ଯୋଡ଼ ହସ୍ତରେ ନିବେଦନ କଲି- ''ହେ ମନୁଗଣ ! ମୁଁ ଆପଣମାନଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହୁଁଛି । ଅନୁମତି ଦେଲେ ପଚାରନ୍ତି ।''

ମୁନିମାନେ ପ୍ରସନ୍ନତା ପୂର୍ବକ କହିଲେ, ''ହଁ ହଁ ! ପଚାରନ୍ତୁ, ପଚାରନ୍ତୁ ।''

ମୁଁ ନମ୍ରତାର ସହିତ ପଚାରିଲି, ''ଭଗବନ୍ ! ଆପଣମାନେ ମୋତେ କର୍ମଯୋଗର ଉପଦେଶ ଦିଅନ୍ତୁ । **କର୍ମଯୋଗ କ'ଣ ତାହା ମୁଁ ଜାଣିବାକୁ ଚାହୁଁଛି ।''**

ମୋ ପ୍ରଶ୍ନ ଶୁଣିବା କ୍ଷଣି ସେହି ମୁନିପୁଙ୍ଗବମାନେ ସହସା ମୌନ ହୋଇଗଲେ । ଚାରିଜଣଙ୍କ ଭିତରୁ ଜଣେ ବି କେହି ମୋ ପ୍ରଶ୍ନର ଉତ୍ତର ଦେଲେ ନାହିଁ । ମୁଁ କିନ୍ତୁ ଦ୍ୱିତୀୟ ଥର ପଚାରିବାକୁ ସାହସ କଲିନାହିଁ । ତେଣୁ ଆଉ ପ୍ରଶ୍ନ କଲି ନାହିଁ । ଏବେ ମୁଁ ଏହା ଜାଣିବାକୁ ଚାହୁଁଛି ଯେ, ସେତେବେଳେ ସେହି ସର୍ବଜ୍ଞ ମୁନିମାନେ ମୋ ପ୍ରଶ୍ନର ଉତ୍ତର ଦେଲେନାହିଁ କାହିଁକି ? ମୋ ପ୍ରଶ୍ନ ଶୁଣି ସେମାନେ ସମସ୍ତେ ମୌନ ହୋଇଯିବାର କାରଣ କ'ଣ ? ଏହାର କାରଣ ସହିତ ମୋ ପ୍ରଶ୍ନ ଉତ୍ତର କୃପାକରି ଦିଅନ୍ତୁ । ଆପଣ ଆଉ ସେହି ମୁନିମାନଙ୍କ ଭଳି ମୌନ ଧାରଣ କରନ୍ତୁ ନାହିଁ ।''

ଏହା ଶୁଣି ଯୋଗେଶ୍ୱର ପିପ୍‌ପଳାୟନ କହିଲେ, ''ରାଜନ୍ ତୁମର ପ୍ରଶ୍ନର ଉତ୍ତର ଆମର ସାନ ଭାଇ ଆବିର୍ହୋତ୍ର ଦେବେ । ଇଏ କର୍ମଯୋଗ ନିଷ୍ଣାତ ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଏପରି କଥା ଶୁଣି ମହାରାଜ ଜନକ ଜିଜ୍ଞାସାପୂର୍ଣ୍ଣ ଦୃଷ୍ଟିରେ ମହାମୁନି ଆବିର୍ହୋତ୍ରଙ୍କ ଆଡ଼କୁ ଚାହିଁବାରେ ଲାଗିଲେ । ଏବେ

ମହାଯୋଗେଶ୍ୱର ଆବିର୍ହୋତ୍ର ଯେଉଁଭଳି କର୍ମଯୋଗର ଉପଦେଶ ଦେଲେ ତାହା ବର୍ଣ୍ଣନା କରୁଛି ଶୁଣନ୍ତୁ ।

**ଛପ୍ପୟ**

ତ୍ରିବୃତ୍ ଔର ମହତତ୍ତ୍ୱ, ସୂତ୍ର, ହଂକାର, ସକଲ ସୁର ।
କରନ, ଅରଥ, ସତ୍, ଅସତ୍ ବ୍ରହ୍ମ ହୀ ସବ ଥଲ ଅକ୍ଷର ।।
ସାକ୍ଷୀ, ଚେତନ, ଶୁଦ୍ଧ, ନିତ୍ୟ କୂଟସ୍ଥ କହାବେ ।
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ସବନିକୋ ଦୃଶ୍ୟ ଦିଖାବେ ।।
ଇଚ୍ଛା ଜବ ଉତକଟ ବଢେ, କବ ପାଉଁ ପ୍ରଭୁପଦ କମଲ ।
କରମଯୋଗ ତେଂ ହୋହି ମନ, ଶୁଦ୍ଧ ବ୍ରହ୍ମ ଦୀଖୈ ଅମଲ ।।



# ଆବିର୍ହୋତ୍ରଙ୍କ କର୍ମଯୋଗ ବର୍ଣ୍ଣନା

**କର୍ମାକର୍ମବିକର୍ମେତି ବେଦବାଦୋ ନ ଲୌକିକଃ ।**
**ବେଦସ୍ୟ ଚେଶ୍ୱରାତ୍ମତ୍ୱାତ୍ତତ୍ର ମୁହ୍ୟନ୍ତି ସୂରୟଃ ।।☆**

(ଶ୍ରୀ ଭା. ୧୧ସ୍କ. ୩ଅ. ୪୩ ଶ୍ଳୋକ)

**ଛପ୍ପୟ**

କମରଯୋଗ ଅବ କହେ ଜନକ.ଜବ ବୋଲେ ମୁନି ତେଂ ।
ମୁନିବର ଆବିରହୋତ୍ର ବିହଁସିକେ ବୋଲେ ତିନି ତେଂ ।।
କରମଯୋଗ ଅତି କଠିନ ହୋହିଁ ମୋହିତ ହୂ ଜ୍ଞାନୀ ।
କରମ ଫଦମେଂ ଫସେ ନ ସମୁଝେଂ ନର ଅଜ୍ଞାନୀ ।।
କରମ କରେଂ ନିଷ୍କାମ ନିତ, ବେଦ ବିହିତ ପ୍ରଭୁ ପ୍ରୀତି ହିତ ।
ପ୍ରତିମା ପୂଜନ ପ୍ରେମ ତେଂ, କରେଂ ହୋହି ତବ ଶୁଦ୍ଧ ଚିତ ।।

☆ ଯେ କର୍ମ ଅକର୍ମ ବିକର୍ମ । ଏ ତିନି କହନ୍ତି ନିଗମ ।।
ଈଶ୍ୱର ବାକ୍ୟ ତିନିବେଦ । ବ୍ରହ୍ମାଶଙ୍କରେ ନୋହେ ଭେଦ ।।
ଏଣେ ମୋହିତ ସର୍ବଜନ । ନ ବୁଝି ବେଦର ବଚନ ।।

(ଭାଗବତ : ଜଗନ୍ନାଥ ଦାସ: ୧୧ଶ ସ୍କ. ୪ଅ.)

ସଂସାର ପାଇଁ ଯେଉଁ ସମସ୍ତ କାମନା ସହିତ କର୍ମ କରାଯାଏ ତାହାଦ୍ୱାରା ସଂସାର ପ୍ରାପ୍ତି ହିଁ ହୋଇଥାଏ । ଭଗବାନଙ୍କ ପାଇଁ 'ନିଷ୍କାମ ଭାବରେ' ଯେଉଁ କର୍ମ କରାଯାଏ ତାହା ଭଗବାନଙ୍କୁ ପ୍ରାପ୍ତ କରାଇଥାଏ । ଶୋଧନ ନ କରି ବିଷ ଖାଇଲେ ତାହା ମୃତ୍ୟୁର କାରଣ ହୋଇଥାଏ । **ଶୋଧନ କରି, ଶୃଙ୍ଖଳା ପୂର୍ବକ କୁଶଳତାର ସହିତ ଅନୁପାନ ବିଧି ପାଳନ କରି ତାହା ଖାଇଲେ ତାହା ଅନେକ ମାରାତ୍ମକ ରୋଗରୁ ମୁକ୍ତ କରିଥାଏ । ଏଣୁ, ଯେ କୌଣସି କର୍ମ ଯଦି କୁଶଳତା ପୂର୍ବକ କରାଯାଏ, ଚିତ୍ତର ବହୁମୁଖୀ ବୃତ୍ତିକୁ ନିରୋଧ କରି କରାଯାଏ, ପ୍ରଭୁଙ୍କ ପ୍ରୀତ୍ୟାର୍ଥେ କରାଯାଏ ତେବେ ତାହା ସାଧନ ହୋଇଥାଏ, ଭଜନ ହୋଇଥାଏ ।** ଏହି ରହସ୍ୟକୁ କର୍ମାସକ୍ତ ପୁରୁଷ ସହଜରେ ଆଦୌ ବୁଝିପାରନ୍ତି ନାହିଁ; ଗ୍ରହଣ କରିପାରନ୍ତି ନାହିଁ । ଯେଉଁମାନେ ମୋକ୍ଷର ଅଧିକାରୀ ହୋଇଯାଇ ଥାଆନ୍ତି ସେମାନେ କେବଳ ଏହାକୁ ବୁଝି ପାରନ୍ତି ଓ ଗ୍ରହଣ କରନ୍ତି ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ଜନକ ଯେତେବେଳେ କର୍ମଯୋଗ ସମ୍ବନ୍ଧରେ ପ୍ରଶ୍ନ କଲେ ତା'ର ଉତ୍ତର ଦେବାକୁ ଯାଇ ମହାଯୋଗେଶ୍ୱର ଆବିର୍ହୋତ୍ର କହିଲେ-

''ରାଜନ୍ ! କର୍ମ ତିନି ପ୍ରକାର ହୋଇଥାଏ । ଏକ କର୍ମ, ଦ୍ୱିତୀୟ ଅକର୍ମ, ତୃତୀୟ ବିକର୍ମ ।''

ରାଜା ପଚାରିଲେ, ''ଭଗବନ୍ ! ସେଗୁଡ଼ିକର ବ୍ୟାଖ୍ୟା କରନ୍ତୁ । ଏହା କର୍ମ, ଏହା ଅକର୍ମ ବା ବିକର୍ମ ବୋଲି ଆମେ ଜାଣିବା କିପରି ?''

ଯୋଗେଶ୍ୱର ମହାରାଜ କହିଲେ, ''ରାଜନ୍ ! ଏହି ବିଷୟକୁ ଏପରି ଜାଣି ହୁଏ ନାହିଁ । ଯେଉଁ କର୍ମ କରାଯାଏ ତାହା କର୍ମ । କର୍ମକୁ ଛାଡ଼ି ଦେବା ଅକର୍ମ । ବେଦ ବିରୁଦ୍ଧ କର୍ମ ହେଉଛି ବିକର୍ମ । ଧର୍ମ ପାଳନ କରିବା ଅତି କଠିନ କଥା । ଏଣୁ ଲୋକମାନେ ଧର୍ମକୁ ଛାଡ଼ି ଅଧର୍ମ କରିବାରେ ଲାଗିଛନ୍ତି ।''

ରାଜା କହିଲେ, ''ଭଗବନ୍ ! ଏହି କାର୍ଯ୍ୟ ଧର୍ମ, ଏହି କାର୍ଯ୍ୟ ଅଧର୍ମ- ଏହାର ସାଧାରଣ ଅର୍ଥ ଏହା ଯେ ଅତି କଠିନତାରେ, ଅତି କଷ୍ଟରେ ଯେଉଁ କର୍ମ କରାଯାଏ ତାହା ଧର୍ମ । ଯେଉଁ ଆଡ଼କୁ ଇନ୍ଦ୍ରିୟଙ୍କର ସାଧାରଣ ଦୁର୍ବଳତା ଥାଏ, ଯାହା ସ୍ୱଭାବତଃ ସରଳ ଜଣାପଡ଼େ ତାହା ଅଧର୍ମ ।''

ଏପରି କଥା ଶୁଣି ମହାମୁନି ଆବିର୍ହୋତ୍ର କହିଲେ, ''ରାଜନ୍ ! ଏହା ସତ୍ୟ ଯେ ଧର୍ମ

କାର୍ଯ୍ୟ କରିବା ଅତି କଠିନ । ଆଉ ମାଂସ ମଦିରା ଆଦି ବେଦବିରୁଦ୍ଧ କାର୍ଯ୍ୟରେ ମାନବଙ୍କର ସ୍ୱାଭାବିକ ପ୍ରବୃତ୍ତି ହୋଇଥାଏ । କିନ୍ତୁ ଏହି ବ୍ୟାଖ୍ୟା ସର୍ବଥା ନିର୍ଦ୍ଦୋଷ ହୋଇନଥାଏ । ଯାହା କଷ୍ଟ ସହି କରାଯାଏ ତାହା ଧର୍ମ, ଯାହା କରିବା ସହଜ ତାହା ଅଧର୍ମ- ଏପରି ଭାବିବା ଆଦୌ ଠିକ୍ ନୁହେଁ । ସିଂହ ମୂତ ପାଇବା ଅତି କଷ୍ଟକର, ବସ୍ତୁତଃ ଏକ ପ୍ରକାର ଦୁସ୍ତର କର୍ମ । ଯା ବୋଲି ତାହା ପାଇଥିବା ଆଦୌ ଧର୍ମ ନୁହେଁ । ଏହା ବଦଳରେ ଗୋ-ମୂତ୍ର ପାଇବା ଅତି ସୁଲଭ । ପଞ୍ଚଗବ୍ୟ ଘରେ ହିଁ ମିଳିଯାଏ । ପଞ୍ଚଗବ୍ୟ ପାଇବା କିନ୍ତୁ ଧର୍ମ । ଯେତେ ପ୍ରକାର ପ୍ରାୟଶ୍ଚିତ ବିଧି ଅଛି ପ୍ରତ୍ୟେକରେ ପଞ୍ଚଗବ୍ୟ ଅପରିହାର୍ଯ୍ୟ ବୋଲି କୁହାଯାଇଛି । ଏଣୁ ଧର୍ମ ଅଧର୍ମର ବ୍ୟାଖ୍ୟା ଏପରି କରାହୁଏ ନାହିଁ । **ବେଦ ଯାହା କହିଥାଏ, ତାହା ହେଉଛି ଧର୍ମ । ବେଦ ଯାହାକୁ ନିଷେଧ କରିଥାଏ ତାହା ଅଧର୍ମ । ଏହା କାର୍ଯ୍ୟ, ଏହା ଅକାର୍ଯ୍ୟ- ଏ ପ୍ରସଙ୍ଗରେ ଶାସ୍ତ୍ର ହିଁ ବିଶେଷ ପ୍ରମାଣ ଦେଇଥାଏ । ଲୌକିକ ପଦାର୍ଥରେ ଧର୍ମାଧର୍ମ କର୍ମାକର୍ମର ଜ୍ଞାନ ହୋଇନପାରେ ।''**

ରାଜା ପଚାରିଲେ, ''ଭଗବନ୍ ! ବେଦ କ'ଣ ? କିଏ ବେଦ ନିର୍ମାଣ କଲା ?''

ମହାମୁନି କହିଲେ, ''ରାଜନ୍ ! ବେଦ କେହି ବି ନିର୍ମାଣ କରିନାହାନ୍ତି । ବେଦ **ଅନାଦି । ଜ୍ଞାନର ନାମ ହେଉଛି ବେଦ । ଭଗବାନଙ୍କର ଶ୍ୱାସ ହେଉଛି ବେଦ । ବେଦ ଭଗବାନଙ୍କଠାରୁ ଭିନ୍ନ ନୁହେଁ । ତାହା ଭଗବଦ୍ ରୂପ ।** ଏହାର ରହସ୍ୟ ବାଳ-ବୁଦ୍ଧି ପୁରୁଷ ଜାଣି ପାରନ୍ତି ନାହିଁ । ଯେଉଁମାନେ ଚିରକାଳ ପର୍ଯ୍ୟନ୍ତ ମହାନ୍ ପୁରୁଷଙ୍କର ସେବା କରିଆସିଥାଆନ୍ତି, ସେଇମାନେ ହିଁ ଏହାର ରହସ୍ୟ ବୁଝି ପାରନ୍ତି । ବେଦର ବିଷୟ ଗୁଡ଼ିକରେ ମହାନ୍ ମହାନ୍ ବିଦ୍ୱାନ୍ ମାନେ ବି ବିସ୍ମିତ ହୋଇଯାଇଛନ୍ତି । ସେମାନଙ୍କର ମୁଣ୍ଡ ବି ଘାବରା ହୋଇ ଯାଇଛି । ସେମାନେ ବି ବିମୋହିତ ହୋଇଯାଇଛନ୍ତି । ବେଦଜ୍ଞଙ୍କ ଦ୍ୱାରା ଅଧିକାରୀ ଜିଜ୍ଞାସୁ ହିଁ କେବଳ କର୍ମର ରହସ୍ୟ ବୁଝିବା ପାଇଁ ସମର୍ଥ ହୋଇ ଥାଆନ୍ତି । ଆପଣ କହିଥିଲେ ଯେ ବାଳକ ସମୟରେ ସନକାଦି ମୁନିଙ୍କୁ ଆପଣ କର୍ମଯୋଗ ସମ୍ବନ୍ଧରେ ପ୍ରଶ୍ନ କରିଥିଲେ । କିନ୍ତୁ ସେତେବେଳେ ସେମାନେ କିଛି ଉତ୍ତର ଦେଇ ନଥିଲେ । ମୌନ ହୋଇଯାଇ ଥିଲେ । ଏହାର କାରଣ ଜାଣିବା ପାଇଁ ଆପଣ ଆଗ୍ରହ କରିଛନ୍ତି । ହେ ରାଜନ୍ ! ସେତେବେଳେ ଆପଣ ବାଳକ ଥିଲେ । ଆପଣ କର୍ମଯୋଗର ରହସ୍ୟ ଜାଣିବା ପାଇଁ ସମର୍ଥ ନଥିଲେ । ଅନେକ ଲୋକ କିଛି କଥା ନଜାଣି ଏଣୁ ତେଣୁ କରିଥାନ୍ତି । ସେତେବେଳେ ଏପରି ପ୍ରଶ୍ନ କରିବା ପାଇଁ ସେମାନେ ସେମାନଙ୍କର ଯୋଗ୍ୟତା ଆଦୌ ବିଚାର କରି ନଥାନ୍ତି । ଏପରି ପ୍ରଶ୍ନ ଉତ୍ତର ମଧ ଦିଆହୁଏ । କିନ୍ତୁ ପ୍ରଶ୍ନ କର୍ତ୍ତା ବୁଝିପାରେ ନାହିଁ । ପ୍ରକୃତ ଜ୍ଞାନୀମାନେ ଏପରି ପ୍ରଶ୍ନ ଶୁଣି ହସି

ଦିଅନ୍ତି, ଆଉ ମୌନ ରୁହନ୍ତି । ଏଣୁ ତେଣୁ କଥା କହି ଏଡ଼ାଇ ଦିଅନ୍ତି । ସେତେବେଳେ ଆପଣ ଏହି ଗୂଢ଼ ରହସ୍ୟକୁ ବୁଝିପାରି ନଥାନ୍ତେ । ଏଣୁ ବ୍ରହ୍ମପୁତ୍ର ସନକାଦି ମାନେ ମୌନ ହୋଇଯାଇଥିଲେ । ବେଦ ହେଉଛି ପରୋକ୍ଷବାଦ । ଏହାର ତାତ୍ପର୍ଯ୍ୟ ତ ଏକ ପ୍ରକାର ଥାଏ । ମାତ୍ର ଏହା କହେ ଆଉ ଏକ ପ୍ରକାରରେ ।''

ରାଜା ପଚାରିଲେ, ''ମହାରାଜ ! ପରୋକ୍ଷବାଦ କ'ଣ ?''

ମୁନି କହିଲେ, ''ରାଜନ୍ ! ଯାହା କରାଇବା କଥା ବା କରାଯିବା କଥା ତାହାକୁ ଗୁପ୍ତ ରଖି ଅନ୍ୟ ପ୍ରକାର କହିବା ହେଉଛି ପରୋକ୍ଷବାଦ । ଉପରେ ମିଠା କଥା କହି ସେଥିପ୍ରତି ତା'ର ପ୍ରବୃତ୍ତି କରାଇବା । ଯେପରି କୁନି ପିଲାକୁ ଶୁଆଇବାକୁ ହେବ, ସେ ଶୋଉ ନାହିଁ । ସେତେବେଳେ ତାକୁ କୁହନ୍ତି, 'ହଉ, ଗୋଟିଏ କାହାଣୀ ଶୁଣ ।'

ପିଲାମାନେ କାହାଣୀ ଶୁଣିବାକୁ ଭଲ ପାଆନ୍ତି । କାହାଣୀ କହିବାକୁ ମା' ପାଖରେ ଅଳି କରନ୍ତି । ମା' କହେ 'ତୁ କିନ୍ତୁ ଖଟରେ ଶୋଇ ମଝିରେ ମଝିରେ 'ହଁ' ମାରୁଥିବୁ ।' ପୁଅ ରାଜି ହୁଏ । ଖଟରେ ଶୋଇଯାଏ । ମା' କାହାଣୀ କହେ । ପୁଅ ଶୋଇବା ଅବସ୍ଥାରେ ମଝିରେ ମଝିରେ 'ହଁ' ମାରୁଥାଏ । କିଛି ସମୟ ପରେ ମା' କହୁଥିବା ଗପ ପ୍ରତି ପୁଅର ଏକାଗ୍ରତା ଆସିଯାଏ । ଚିତ୍ତ ଏକାଗ୍ର ହୋଇଯିବା ମାତ୍ରେ ତମୋଗୁଣ ହେତୁ ନିଦ ଆସିଯାଏ । ପୁଅ ଗପ ଶୁଣୁ ଶୁଣୁ ଶୋଇଯାଏ । ମା'ର ଉଦ୍ଦେଶ୍ୟ ପୂରଣ ହୋଇଯାଏ ।

ପୁଅର କାନ ଫୋଡ଼ିବାକୁ ହେବ । ମା' ସେତେବେଳେ ପୁଅକୁ ମିଠାଇ ଖୁଆଏ । ଏଠାରେ କିନ୍ତୁ ମୁଖ୍ୟ ଉଦ୍ଦେଶ୍ୟ ଖୋଇବାରେ ନଥାଏ । ଉଦ୍ଦେଶ୍ୟ ତ କାନ ଫୋଡ଼ିବାରେ ଥାଏ । ମା' ପୁଅକୁ ଯଦି କଟୁ ଔଷଧ ଖୋଇବାକୁ ପଡ଼େ ତେବେ ପୁଅ ତ ସହଜରେ ତାହା ଖାଇବ ନାହିଁ- ସେତେବେଳେ ମା' କହେ- ବାପା ! ଏ ଔଷଧ ଖାଇଦେ । ତୋତେ ମୁଁ ଖୁଆପେଡ଼ା ଖାଇବାକୁ ଦେବି । ପୁଅକୁ ପେଡ଼ା ଖୋଇବା ମା'ର ଉଦ୍ଦେଶ୍ୟ ନଥିଲା । ଉଦ୍ଦେଶ୍ୟ ତ ଥାଏ ଔଷଧ ଖୋଇବାରେ । ମାତାର ମୁଖ୍ୟ ଉଦ୍ଦେଶ୍ୟ ଥାଏ ପୁଅକୁ ରୋଗମୁକ୍ତ କରିବାରେ ।

ଏହିଭଳି ଅନାଦି ସଂସ୍କାରର ବଶୀଭୂତ ହୋଇ ଜୀବ ଜନ୍ମ-ମରଣର ଚକ୍ରରେ ଘୂରି ବାରମ୍ବାର କର୍ମ କରୁଥାଏ । ପୁଣି ପୁଣି ଜନ୍ମ ହେଉଥାଏ । ବନ୍ଧନରେ ପଡୁଥାଏ । ଆଉ ମରିବା ପାଇଁ ଜନ୍ମ ହେଉଥାଏ । ବେଦ ତାକୁ କର୍ମରୂପୀ ରୋଗରୁ ଭଲ କରିବା ପାଇଁ ଚାହେଁ । ପୁଅକୁ ଯେପରି ମିଠା ମିଠା କଥାରେ, ସୁମିଷ୍ଟ ଭୋଜନରେ, ରସାଳ ଖାଦ୍ୟ ପ୍ରତି ସାଧାରଣ ପ୍ରବୃତ୍ତି ଥାଏ । ସେ ବେଦ ବିହିତ କର୍ମ ତ କରେନାହିଁ, ନିଷିଦ୍ଧ କର୍ମ କରୁଥାଏ— ଆଉ ଏଇଥିଯୋଗୁ ତାକୁ ବାରମ୍ବାର ଜନ୍ମ ଓ ମୃତ୍ୟୁ ପ୍ରାପ୍ତ ହେଉଥାଏ; ଆଉ

ଏଇଥିପାଇଁ ବେଦ ନିଃସଙ୍ଗଭାବରେ ଈଶ୍ୱରାର୍ପଣ ପୂର୍ବକ କର୍ମ କରିବାକୁ ଆଗ୍ରହ କରେ । ଯେଉଁ କର୍ମ ଭଗବାନଙ୍କ ଉଦ୍ଦେଶ୍ୟରେ କରାଯାଏ ତାହା ଭଗବାନଙ୍କର ହୋଇଯାଏ । **ଭଗବାନ ହେଉଛନ୍ତି ନିଷ୍କର୍ମ । ତାଙ୍କଠାରେ କର୍ମ ନାହିଁ, ବନ୍ଧନ ନାହିଁ । ଏଣୁ କର୍ମ କରିବା ଦ୍ୱାରା ନୈଷ୍କର୍ମ୍ୟ ସିଦ୍ଧି ପ୍ରାପ୍ତି ହୋଇଯାଏ । ଭଗବାନଙ୍କ ନିମିତ୍ତ ନିଷ୍କାମ ଭାବରେ କରାଯାଇ ଥିବା କର୍ମ ବନ୍ଧନର କାରଣ ହୁଏ ନାହିଁ । ତହିଁରେ ପରମସିଦ୍ଧି ପ୍ରାପ୍ତ ହୋଇଥାଏ ।''**

ରାଜା କହିଲେ, ''ବେଦରେ ସବୁ କର୍ମତ ସକାମ । ସେଥିରେ ଗୋଟିଏ କର୍ମ କୁହାଯିବା ସହିତ କର୍ମର ଫଳ ପ୍ରଥମରୁ କୁହା ଯାଇଥାଏ । ଯେପରି ଶ୍ରୁତି କହେ, 'ସ୍ୱର୍ଗ ନିମନ୍ତେ ଯାହାର କାମନା ଥାଏ, ସେ ଅଶ୍ୱମେଧ ଯଜ୍ଞ କରୁ ।' 'ପୁତ୍ର କାମନା କରି ପୁତ୍ରେଷ୍ଟି ଯଜ୍ଞ କରୁ ।' ଅମୁକ କାମନା କରି ଅମୁକ ଯଜ୍ଞ କର । ଏପରି ସ୍ଥଳରେ କର୍ମରେ ନୈଷ୍କର୍ମ ସିଦ୍ଧି କେଉଁଭଳି ପ୍ରାପ୍ତ ହୋଇପାରେ ?''

ମହାଯୋଗେଶ୍ୱର ମହାରାଜ ଜନକଙ୍କର ଏପରି କଥା ଶୁଣି ହସିଦେଲେ । ଆଉ କହିଲେ, ''ରାଜନ୍ ! ସେହି ଯେତେସବୁ ଫଳଶ୍ରୁତି ଅଛି ସେ ସବୁ କେବଳ ବେଦୋକ୍ତ କର୍ମରେ ପ୍ରବୃତ୍ତ କରାଇବା ନିମିତ୍ତ ଅଛି । ଯେଉଁଭଳି କାହାର ପୁତ୍ର ପ୍ରାପ୍ତିର ଉତ୍କଟ ଇଚ୍ଛା ଥାଏ । ଯେତେବେଳେ ସିଏ ପୁତ୍ର ପ୍ରାପ୍ତି ପାଇଁ ଯତ୍ନ କରିବା ବିନା ତ ମାନିବ ନାହିଁ, ଝଡ଼ା-ଫୁଙ୍କା କରିବ, ଘୁଷୁରୀ, ଛେଳି, କୁକୁଡ଼ା ମାରିବ- ଏଣୁ ବେଦ କହିଦିଏ, ''ହଉ, ତୁମେ ପୁତ୍ର କାମନା ଯଦି କରିଛ, ତୁମେ ପୁତ୍ରେଷ୍ଟି ଯଜ୍ଞ କର । ଏବେ ସେ ଯଜ୍ଞ ସାମଗ୍ରୀ ସଂଗ୍ରହ କରିବ, ଦେବତାଙ୍କୁ ଆରାଧନା କରିବ, ବ୍ରାହ୍ମଣଙ୍କୁ ସେବାକରିବ, ଧନ ବ୍ୟୟ କରିବ । ଏହି ସବୁ ଶୁଭ କର୍ମ କରିବା ଦ୍ୱାରା ତାହାର ଅନ୍ତଃକରଣ ଶୁଦ୍ଧ ହେବ । ବେଦ ମନ୍ତ୍ର ତ ଅମୋଘ । ପୁତ୍ରଷ୍ଟି ଯଜ୍ଞ କଲେ ପୁତ୍ର ନିଶ୍ଚୟ ହେବ । ଏପରି କଲେ ବୈଦିକ କର୍ମ ପ୍ରତି ତା'ର ନିଷ୍ଠା ବଢ଼ିବ । ଆସ୍ତିକତା ଆସିଯବ, ଆଜି ନୋହିଲେ କାଲି, କାଲି ନୋହିଲେ ପରଦିନ ମୋକ୍ଷ ନିମନ୍ତେ ତା'ର ଜିଜ୍ଞାସା ହେବ । ସେତେବେଳେ ଶ୍ରୁତିର ମୁଖ୍ୟ ତାତ୍ପର୍ଯ୍ୟ ସ୍ୱର୍ଗ ସୁଖ ପାଇବାରେ ଅଥବା ପୁତ୍ର ଉତ୍ପନ୍ନ କରିବାରେ ଆଉ ରହେନାହିଁ । ଭଗବତୀ ଶ୍ରୁତି ତ ତାହାର ଭବରୋଗର ମାତା ଭଳି ଦୂର କରିବାକୁ ଚାହିଁଥାଏ । କିନ୍ତୁ ତ୍ୟାଗ ବୈରାଗ୍ୟ ଭଳି କଡ଼ା(କଟୁ) ଔଷଧ ମଣିଷ ସହ଼ସା ଖାଏ ନାହିଁ । ତେଣୁ ସ୍ୱର୍ଗାଦି ଫଳରୂପୀ ମିଠେଇ ବୋଲି ତାକୁ ବେଦ ବିହିତ କର୍ମ ଶିଖାଏ । ସକାମ କର୍ମ କରୁ କରୁ ସେଥିରେ ନିଷ୍କାମତା ଆସିଯାଏ; ଆଉ ଈଶ୍ୱରାର୍ପଣ ବିଧିରେ କରିବା ଦ୍ୱାରା ତାହା ମୋକ୍ଷର କାରଣ ହୋଇଯାଏ । ଏଣୁ ବେଦ ବିଧିରେ ଯାଗ ଯଜ୍ଞ କରିବା ସହିତ ଅନ୍ତଃକରଣ ବି ଶୁଦ୍ଧି କରିବା ଉଚିତ । ବେଦ ବିହିତ କର୍ମ କରିବା ଦ୍ୱାରା ଅନ୍ତଃକରଣ ଶୁଦ୍ଧି ହୋଇଗଲେ ଉପାସନା

ଉତ୍ତମ ରୂପେ ହୋଇପାରେ । ଏହାପରେ ଜ୍ଞାନ ହୋଇଯାଏ । ଜ୍ଞାନରୁ ମୁକ୍ତି ହୁଏ । ହୃଦୟରେ ଅହଂକାର ରୂପୀ ଗୋଟିଏ ଗଣ୍ଠି ପଡ଼ିଯାଇଥାଏ । ଏଣୁ ପରମାତ୍ମସ୍ୱରୂପର ଦର୍ଶନ ହୋଇପାରେ ନାହିଁ । ଯେତେବେଳେ ସେହି ହୃଦୟ ଗଣ୍ଠିଟି ଖୋଲିଯାଏ ସେତେବେଳେ ସୁନ୍ଦର ଦର୍ଶନ ମିଳେ । ଏଣୁ ବେଦ ବିଧିରେ ବିହିତ କର୍ମ କରିବା ଉଚିତ ।''

ରାଜା ଜନକ କହିଲେ, ''ରାଜନ୍ ! ବେଦର ବିଧିତ ଅତି କଠିନ । ବିଶେଷ କରି କଳିଯୁଗରେ ବେଦମନ୍ତ୍ର ଉଚ୍ଚାରଣ କରିପାରିବା ଲୋକ ମିଳିବା ଅତି କଠିନ କଥା । ଯଜ୍ଞ କରିବା ନିମିତ୍ତ ଶୁଦ୍ଧ ସାମଗ୍ରୀ ବି ମିଳିବା କଷ୍ଟକର କଥା । ଏପରି କଳିଯୁଗରେ ଭଗବାନଙ୍କର ଉପାସନା କିଭଳି କରାଯାଇ ପାରେ ?''

ଏପରି କଥା ଶୁଣି ମହାମୁନି ଆବିର୍ହୋତ୍ର କହିଲେ, ''ରାଜନ୍ ! କେବଳ ଅଗ୍ନିରେ ହିଁ ହବନ କରି ଉପାସନା କରାଯାଇ ପାରିବ, ଏପରି କଥା ନୁହେଁ । ତେଣୁ ଏହାର ଆବଶ୍ୟକ ନାହିଁ । ବୈଦିକ ମନ୍ତ୍ରରେ ଭଗବାନଙ୍କ ମୂର୍ତ୍ତିକୁ ପୂଜା କରିବା ଦରକାର । ଭଗବାନଙ୍କର ଅର୍ଚ୍ଚା ବିଗ୍ରହକୁ ପୂଜା କରିବା ସର୍ବଶ୍ରେଷ୍ଠ ଉପାସନା । ପୁରୁଷ ସୂକ୍ତ ତଥା ଅନ୍ୟ ମନ୍ତ୍ରରେ ମୂର୍ତ୍ତି ପୂଜା କରିବା ଉଚିତ । ବୈଦିକ ମନ୍ତ୍ର ଉଚ୍ଚାରଣ କରିବାରେ ଅସମର୍ଥ ହେଲେ ତନ୍ତ୍ରୋକ୍ତ ମନ୍ତ୍ରରେ ପୂଜା କରିବା ଉଚିତ । ତାନ୍ତ୍ରିକ ମନ୍ତ୍ରରେ ଭଗବାନଙ୍କୁ ଭକ୍ତି ଭାବରେ ସେବା କରିବା ଉଚିତ । **ନିଜ ଗୁରୁଦେବଙ୍କ ପାଖକୁ ଯାଇ ଦୀକ୍ଷା ଗ୍ରହଣ କରିବା ଉଚିତ । ତାଙ୍କର କୃପା ପ୍ରାପ୍ତ ହେବା ଉଚିତ । ଆଉ ତାଙ୍କଠାରୁ ପୂଜା କରିବା ବିଧି ଶିଖିବା ଉଚିତ । ଏହାପରେ ଭଗବାନଙ୍କର ଯେଉଁ ମୂର୍ତ୍ତି ଆମକୁ ଅତି ଭଲ ଲାଗେ ତାହାକୁ ଗୁରୁଦେବ ବତାଇ ଥିବା ବିଧିରେ ଶ୍ରଦ୍ଧାପୂର୍ବକ ବିଧି-ବିଧାନରେ ଶ୍ରୀମନ୍ନାରାୟଣଙ୍କୁ ପୂଜା କରିବା ଉଚିତ ।''**

ରାଜା କହିଲେ, ''ବ୍ରହ୍ମନ୍ ! ମୁଁ ପୂଜାର ବିଧି ଜାଣିବା ପାଇଁ ଚାହୁଁଛି । ପୂଜା କିପରି କରାଯାଏ, କେଉଁ ତନ୍ତ୍ରର ମନ୍ତ୍ରରେ କେଉଁଭଳି କୃତ୍ୟ କରାଯାଏ, କୃପାକରି ମୋତେ ତାହା କୁହନ୍ତୁ । କାରଣ ପୂଜା ପଦ୍ଧତି ସଂକ୍ରାନ୍ତରେ ବହୁମୁନି ବହୁମତ ବ୍ୟକ୍ତ କରିଥାନ୍ତି ।''

ଏହାଶୁଣି ମହାମୁନି ଆବିର୍ହୋତ୍ର କହିଲେ, ''ରାଜନ୍ ! ପୂଜା ବିଧି ଅନେକ । ଆଉ ତନ୍ତ୍ରରେ ସେଗୁଡ଼ିକ ବିସ୍ତୃତ ରୂପେ ବର୍ଣ୍ଣନ ହୋଇଛି । କିନ୍ତୁ ମୁଁ ଆପଣଙ୍କୁ ଅତି ସଂକ୍ଷେପ ପୂଜା ବିଧି କହୁଛି, ଶୁଣନ୍ତୁ ।''

ମହାପ୍ରାଜ୍ଞ ସୂତ ଶୌନକାଦି ଋଷିଙ୍କୁ କହୁଛନ୍ତି- ''ହେ ମୁନିଗଣ ! ମହାମୁନି ଆବିର୍ହୋତ୍ର ଯେଉଁଭଳି ମହାରାଜ ନିମିଙ୍କୁ ପୂଜାବିଧି ବତାଇଲେ ତାହା ମୁଁ ଆପଣଙ୍କୁ କହୁଛି । ଏହା ଅତି ଉପକାରୀ ଆପଣମାନେ ଶୁଣନ୍ତୁ ।''

### ଛପ୍ପୟ

ଭୀତର ବାହାର କରନ ଶୁଦ୍ଧି କରି ପ୍ରତିମା ସମ୍ମୁଖ ।
ବୈଠେ ପ୍ରାଣାୟାମ କରୈ ତଜି ଜଗ କେ ସୁଖ ଦୁଖ ।।
ପୂଜା କୀ ସବ ବସ୍ତୁ ଯଥାକ୍ରମ ସବଇ ଧାରିକେଂ ।
ସ୍ୱୟଂ ଅଂଗ କରନ୍ୟାସ କରୈ, ପ୍ରତିମାମହଁ କରିକେଂ ।।
ମୂଲ ମନ୍ତ୍ର ପଢ଼ିକେଂ କରୈ, ପ୍ରତିମା ପୂଜନ ପ୍ରେମତେଂ ।
ଅଙ୍ଗ ଉପାଙ୍ଗ ସପାର୍ଷଦହିଁ, ପୂଜୈ ନିତ ପ୍ରତି ନେମତେଂ ।।



# ପ୍ରଭୁ ପୂଜା ପଦ୍ଧତି

**ଏବମଗ୍ନ୍ୟର୍କତୋୟାଦାବତିଥୌ ହୃଦୟେ ଚ ୟଃ ।**
**ୟଜତୀଶ୍ୱରମାତ୍ମାନମଚିରାନ୍ମୁଚ୍ୟତେ ହି ସଃ ।।☆**

(ଶ୍ରୀଭା ୧୧ ସ୍କ.୩ ଅ ,୫୫ ଶ୍ଲୋକ)

### ଛପ୍ପୟ

ପାଦ୍ୟ, ଅର୍ଘ୍ୟ; ଆଚମନ, ସ୍ନାନ, ନାନା, ପଟ, ଭୂଷନ ।
ଗନ୍ଧ, ପୁଷ୍ପ, ତିଲେ, ହାର, ଧୂପ, ଦୀପକ, ବର ବ୍ୟଞ୍ଜନ ।।
ପୁଙ୍ଗୀଫଲ, ତାଂବୂଲ, ଦକ୍ଷିଣା, ନୀରାଜନ କରି ।
କ୍ଷମା ପ୍ରାର୍ଥନା ସ୍ତୋତ୍ର ଦଂଡ଼ବତ ପୃଥିବୀ ପୈ ପରି ।।
ୟୋଂ ତନ୍ମୟ ହ୍ୱୈ କେଂକରୈ, ପୂଜନ ପ୍ରଭୁ ପରମେଶ କୋ ।
ହୋବୈ ତବହୀ ନାଶ ସବ, ଜନ କେ ଦୁଖ ଭୟ କ୍ଲେଶ କୋ ।

---

☆ ସୂର୍ଯ୍ୟ ଅନଳ କିବା ଜଳେ । ଅଥବା ହୃଦୟ କମଳେ ।।
ଯେବେ ନ ପାରି ଏତେ ମତ । ଗୃହେ ଯେ ଅତିଥି ଆଗତ ।।
ତାହାଙ୍କୁ ବିଷ୍ଣୁ ଭାବେ ମଣି । ପୂଜିବ ଦେଇ ଅନ୍ନପାଣି ।।
ଏମନ୍ତେ ବିଷ୍ଣୁ ପୂଜା କରି । ଏ ଭବଜଳୁ ଯାନ୍ତି ତରି ।।
(ଭାଗବତ: ଜଗନ୍ନାଥ ଦାସ: ୧୧ଶ ସ୍କ,୪ର୍ଥ ଅ.)

କେତେକଙ୍କୁ ପୂଜା କରିବା ଓ ଆଉ କେତେକଙ୍କୁ ଘୃଣା କରିବା ମଣିଷର ଏକ ସାଧାରଣ ପ୍ରବୃତ୍ତି । ମଣିଷ ଏହି ପ୍ରବୃତ୍ତିର ଅଧୀନରେ ରହି କାହା କାହାର ସମ୍ମୁଖରେ ନମ୍ରତା ଦେଖାଏ ଆଉ କାହାକୁ ଉପେକ୍ଷା କରିଦିଏ । **ସାଧକମାନେ ଯଦି କାହାକୁ ଉପେକ୍ଷା ତଥା ଘୃଣା କରିବାକୁ ଚାହାନ୍ତି, ତେବେ ସେମାନେ ତାହା ନିଜର ଦୁର୍ଗୁଣକୁ କରିବା ଉଚିତ ।** ନମ୍ର ହେବାକୁ ଚାହିଁଲେ, ପୂଜା କରିବାକୁ ଯଦି ଇଚ୍ଛା ଥାଏ ତେବେ ପରାତ୍ପରଙ୍କୁ ତାହା କରିବା ଉଚିତ । କାରଣ ସଂସାରରେ ପ୍ରଭୁଙ୍କ ବ୍ୟତୀତ କେହି ପୂଜନୀୟ ନାହିଁନ୍ତି, କେହି ବି ବନ୍ଦନୀୟ ନାହିଁ, କେହି ଅର୍ଚ୍ଚନୀୟ ନାହିଁ ।ପୂଜା କରିବା ପାଇଁ ମନ ଥିଲେ ତାହା ବିଧିପୂର୍ବକ କରିବା ଉଚିତ । ଯିଏ ଶାସ୍ତ୍ର ବିଧିକୁ ପରିତ୍ୟାଗ କରି ମନମୁଖୀ କରୁଥାଏ, ସ୍ୱଚ୍ଛନ୍ଦ ଆଚରଣ କରୁଥାଏ ସେ ଆନ୍ତରିକ ଶାନ୍ତି ପାଏ ନାହିଁ । ସୁଖୀ ହୁଏ ନାହିଁ, ଆଉ ଯେଉଁ ସିଦ୍ଧି ନିମନ୍ତେ ସେ କର୍ମ କରୁଥାଏ ତାହାର ସିଦ୍ଧି ବି ସେ ପାଏନାହିଁ । ଏଣୁ ଯାହା ବି କର୍ମ କରିବା ଶାସ୍ତ୍ର ବିଧିକୁ ବୁଝି କରୁଥିବା ଉଚିତ । ଯଦିଓ ଭଗବାନଙ୍କ ପୂଜା ଯେଉଁଭଳି ବି କଲେ ସେଥିରେ ଅନିଷ୍ଟର ସମ୍ଭାବନା ନ ଥାଏ, ତେବେ ସୁଦ୍ଧା ଯେତେଦୂର କରି ହୁଏ, ବିଧିପୂର୍ବକ ପୂଜନ ଅର୍ଚ୍ଚନ କରିବା ଉଚିତ । କାରଣ, ବିଧି ନିଷେଧର ବର୍ଣ୍ଣନା ବେଦଗୁଡ଼ିକରେ ଅଛି । ଆଉ ବେଦ ହେଉଛି ଭଗବାନଙ୍କ ଆଜ୍ଞା । ବେଦ ହେଉଛି ଭଗବାନଙ୍କ ସ୍ୱରୂପ ।

ମହାପ୍ରାଜ୍ଞ ସୂତ କହୁଛନ୍ତି,'' ହେ ମୁନିଗଣ ! ମହାରାଜ ନିମି ପୂଜା ବିଧି ସମ୍ବନ୍ଧରେ ଜାଣିବା ପାଇଁ ମହାମୁନି ଆବିର୍ହୋତ୍ରଙ୍କୁ ପଚାରିବା ପରେ ମହାମୁନି କହିଲେ ''ରାଜନ୍ ! ପୂଜା, ଅର୍ଚ୍ଚନା, ସେବା, ଭଜନ, ପରିଚର୍ଯ୍ୟା ତଥା ଯଜନ- ଏ ସମସ୍ତ ହେଉଛି ପର୍ଯ୍ୟାୟବାଚୀ ଶବ୍ଦ । ଏହା କରିବା ପାଇଁ କର୍ତ୍ତା ସର୍ବ ପ୍ରଥମେ ପବିତ୍ର ହୋଇ ପୂଜା କରିବା ପାଇଁ ଯୋଗ୍ୟ (ଅଧିକାରୀ) ହେବାକୁ ପଡ଼ିଥାଏ । ସ୍ନାନାଦି ଦ୍ୱାରା ଶରୀର ଶୁଦ୍ଧକରି, ଶ୍ରଦ୍ଧା ସଂଯମ ଆଉ ସଦାଚାର ଭାବନା ସହିତ ଅନ୍ତଃକରଣକୁ ପ୍ରଫୁଲ୍ଲିତ କରିବା ପରେ ପୂଜାପାଇଁ ବସିବା ଉଚିତ । ଯେଉଁ ପ୍ରତିମାକୁ ଆମେ ପୂଜା କରିବା ତା' ସମ୍ମୁଖକୁ ଆମେ ଶ୍ରଦ୍ଧାର ସହିତ ଯିବା । ଆସନ ବିନା ବସିବା ଉଚିତ ନୁହେଁ । ଆସନ ଉପରେ ବସି ପ୍ରଥମେ ପୃଥ୍ୱୀକୁ ପ୍ରାର୍ଥନା କରିବା ଉଚିତ - 'ହେ ପୃଥ୍ୱୀ ! ତୁମେ ସକଳ ଲୋକଙ୍କୁ ନିଜ ଉପରେ ଧାରଣ କରିଛ । ହେ ମାତା ! ତୁମେ ମୋର ଏହି ଆସନକୁ ଧାରଣ କର ଆଉ ଏହାକୁ ପବିତ୍ର କର ।''

''ଏହିପରି ଜଳ ଛିଞ୍ଚି ଆସନକୁ ପବିତ୍ର କରିଦେବ । ଏହା ପରେ ତିନିଥର ଆଚମନ କରି ତିନି ଥର ପ୍ରାଣାୟାମ କରିବ । ପ୍ରାଣାୟାମ କରିବାଦ୍ୱାରା ନାଡ଼ିଗୁଡ଼ିକରେ ରୁଦ୍ଧ ହୋଇଥିବା ମଳ ଶୁଦ୍ଧ ହୋଇଯାଏ । ଏହିଭଳି ପ୍ରଣାୟାମରେ ନାଡ଼ି ଶୁଦ୍ଧି କରି ଦେବପୂଜନ ପାଇଁ ସଂକଳ୍ପ

କରିବ । ଅମୁକ କ୍ଷେତ୍ରରେ ଅମୁକ ସମ୍ବତ୍ସର, ମାସ, ପକ୍ଷ, ତିଥି, ବାର ନକ୍ଷତ୍ର ଆଦିରେ ପ୍ରଭୁ-ପ୍ରୀତି ନିମନ୍ତେ ମୁଁ ଦେବପୂଜନ କରୁଛି ।''

''ଏପରି କରି, ଜଳ ଛିଞ୍ଚି, ପୁଣି ଯେଉଁ ମନ୍ତ୍ରରେ ପୂଜା କରିବାକୁ ଥିବ ତାହାର ଅଙ୍ଗନ୍ୟାସ, କରନ୍ୟାସ ନିଜର ଅଙ୍ଗରେ କରିବ । କାରଣ ସ୍ୱୟଂ ମନ୍ତ୍ରମୟ ହୋଇ ଦେବାର୍ଚ୍ଚନ କରିବା ଉଚିତ । ଏହାପରେ ହାତରେ ଜଳ ନେଇ ତାକୁ ଚାରିପଟେ ବୁଲାଇ ଦିଗ୍‌ବନ୍ଧ କରିବା ଉଚିତ । ପ୍ରତିମା ସମ୍ମୁଖରେ ଏହିପରି ବସି ପୂଜା କରିବ । ପୂଜା ନିମନ୍ତେ ଯେଉଁ ସକଳ ସାମଗ୍ରୀ ଦରକାର ସେ ସମସ୍ତଙ୍କୁ ଗୋଟିଏ ବଡ଼ ପତ୍ରରେ କ୍ରମାନୁସାରେ ସଜାଇ ନିଜର ଦକ୍ଷିଣ ପଟେ କୌଣସି ପିଢ଼ା ବା ଚଉକୀ ଉପରେ ରଖିଥିବା ଉଚିତ । ଯାହାଫଳରେ ପ୍ରତ୍ୟେକ ବସ୍ତୁ ନିମନ୍ତେ ବାରମ୍ବାର ଉଠିବାକୁ ପଡ଼େନାହିଁ । ବସ୍ତୁ ଗୁଡିକୁ ଦେଖି ଗଣିଦେବା ଉଚିତ । ସମସ୍ତ ବସ୍ତୁ ସଜାଇ ରଖିଥିବା ଦରକାର । ଏହାପରେ ପୂଜା ପାଇଁ ଥିବା ଜଳ ପୂର୍ଣ୍ଣ କଳସରେ ଗନ୍ଧ ପୁଷ୍ପ ପକାଇ ତାହାକୁ ପୂଜା କରିବା ଦରକାର । ଶଙ୍ଖରେ ଜଳ ପୂରାଇ ସେଥିରେ ଚନ୍ଦନ ପୁଷ୍ପ ଓ ତୁଳସୀଜଳ ପକାଇ ସେହି ଜଳକୁ କଳସୀରେ ପକାଇ ଦେବ । (୧) ଏହି ପ୍ରକାର କଳସ-ପୂଜା କରି ସେହି ଜଳକୁ ପୂଜାରେ ବ୍ୟବହାର କରିବ । ପୂଜା ସାମଗ୍ରୀ ଉପରେ ସେହି ଜଳ ଛିଞ୍ଚି ଦେବା ଦରକାର । ଘୃତ ଦୀପ ଜାଳି ଗନ୍ଧ, ଅକ୍ଷତ, ପୁଷ୍ପ ଧୂପାଦିରେ ସେହି ଦୀପକୁ ବି ପୂଜା କରିବା ଉଚିତ ।(୨) ଘଣ୍ଟା ଶଙ୍ଖ ଆଦିରେ ଚନ୍ଦନ ପୁଷ୍ପ ଦେଇ ପୂଜା କରିବ । କାରଣ ଦେବତାଙ୍କ ପୂଜା ପୂର୍ବରୁ ତାଙ୍କର ପାର୍ଷଦଙ୍କର ପୂଜା କରିବା ନିହାତି ଆବଶ୍ୟକ । ଦ୍ୱାରପାଳଙ୍କ ପୂଜା କରିଦେବା ପରେ ଦେବତାଙ୍କୁ ପୂଜା କରିବାରେ ସୁଗମତା ହୋଇଯାଏ । ଏହି ସବୁ ବ୍ୟବସ୍ଥା ହୋଇଯିବା ପରେ ପୂଜା ଆରମ୍ଭ କରିବା ଉଚିତ ।''

ରାଜା କହିଲେ, ''ମହାରାଜ ! ପୂଜା କିପରି କରାହୁଏ ?''

ମହାମୁନି ଆବିର୍ହୋତ୍ର କହିଲେ,''ରାଜନ୍ ! ପୂଜାର ଅନେକ ପ୍ରକାର ଭେଦ ଅଛି । ଏଥିମଧ୍ୟରୁ ସଂକ୍ଷେପରେ ପଞ୍ଚାଙ୍ଗ ପୂଜା କରାଯାଏ । କିନ୍ତୁ ସାଧାରଣତଃ ଷୋଡ଼ଶୋପଚାର ପୂଜା କରଣୀୟ । ପୂଜାର ଆହୁରି ବିସ୍ତୃତ ଉପଚାର ବି ଅଛି । ବିସ୍ତୃତ ପୂଜା ପଦ୍ଧତି ମୁଁ ବର୍ଣ୍ଣନା କରିବାକୁ ଯାଉନାହିଁ ।

---

(୧) କଳସ ମନ୍ତ୍ର : କଲଶସ୍ୟ ମୁଖେ ବିଷ୍ଣୁଃ କଣ୍ଠେ ରୁଦ୍ରଃ ! ସମାଶ୍ରିତଃ ।
ମୂଲେ ତସ୍ୟ ସ୍ଥିତୋ ବ୍ରହ୍ମା ମଧ୍ୟେ ମାତୃଗଣାଃ ସ୍ମୃତାଃ ।।
କୁକ୍ଷୌ ତୁ ସାଗରାଃ ସର୍ବେ ସପ୍ତଦ୍ୱୀପା ବସୁନ୍ଧରା ।
ଋଗ୍‌ବେଦୋଽଥ ଯଜୁର୍ବେଦଃ ସାମବେଦୋଃ ହ୍ୟଥର୍ବଣଃ ।।
ଅଙ୍ଗୈଶ୍ଚ ସହିତା ସର୍ବେ କଲଶଂ ତୁ ସମାଶ୍ରିତାଃ ।
ଅତ୍ର ଗାୟତ୍ରୀ ସାବିତ୍ରୀ ଶାନ୍ତିଃ ପୁଷ୍ଟିକରୀ ତଥା ।।
ଆୟନ୍ତୁ ମମ ଶାନ୍ତ୍ୟାର୍ଥଂ ଦୁରିତକ୍ଷୟ କାରକାଃ ।
ଏହି ମନ୍ତ୍ରରେ ଆବାହନ କରି ମୂଳ ମନ୍ତ୍ରରେ ପୂଜା କରିବ ।

ପଞ୍ଚାଙ୍ଗ ପୂଜାରେ (ପଞ୍ଚୋପଚାର) ଗନ୍ଧ, ପୁଷ୍ପ, ଧୂପ, ଦୀପ ଆଉ ନୈବେଦ୍ୟ ଏହି ପାଞ୍ଚଟି ଜିନିଷ ଦରକାର ପଡ଼େ । ଏହି ଗୋଟିଏ ଗୋଟିଏ ବସ୍ତୁ ଗୋଟିଏ ଗୋଟିଏ ଭୂତର ପ୍ରତିନିଧିତ୍ୱ କରନ୍ତି ।

ଷୋଡ଼ଶୋପଚାର ପୂଜାରେ (୧) ଆବାହନ,(୨) ଆସନ, (୩) ପାଦ୍ୟ, (୪) ଅର୍ଘ୍ୟ, (୫) ଆଚମନ, (୬) ସ୍ନାନ, (୭) ବସ୍ତ୍ର, (୮) ଯଜ୍ଞୋପବୀତ, (୯) ଚନ୍ଦନ, (୧୦) ପୁଷ୍ପ, ତୁଳସୀ (୧୧) ଧୂପ, (୧୨) ଦୀପ, (୧୩) ନୈବେଦ୍ୟ, (୧୪) ମୁଖ ଶୁଦ୍ଧି ଦକ୍ଷିଣା, (୧୫) ଆଳତୀ (୧୬) ନମସ୍କାର ପ୍ରଦକ୍ଷିଣା ବିସର୍ଜନ । ଏହାପରେ ପୁଷ୍ପାଞ୍ଜଳି ଦେଇ ବିସର୍ଜନ କରିବ । ଏଥିରେ ଅନେକ ମତଭେଦ ଅଛି । ସେ ସବୁର ବିସ୍ତାର କଲେ ସନ୍ଦେହ ବଢ଼ିବା ସାର ହେବ । ଏଣୁ ଶ୍ରଦ୍ଧାର ସହିତ ପୂଜା କରିବା ଉଚିତ ।

ରାଜା କହିଲେ,"ଭଗବାନ୍ ! ମୋତେ ଏ ସମସ୍ତର ଅର୍ଥ କୁହନ୍ତୁ ଆଉ କେଉଁ ମନ୍ତ୍ରରେ କିପରି ପୂଜା କରାଯିବା ଉଚିତ ତାହା କୁହନ୍ତୁ ।"

ଯୋଗେଶ୍ୱର ଆବିର୍ହୋତ୍ର କହିଲେ," ରାଜନ୍ ! କର୍ମକାଣ୍ଡର ଏହି ପ୍ରସଙ୍ଗ ଅତି ବିସ୍ତୃତ, ଏବଂ ଏହା ଅତି ଗୂଢ଼ । ତେଣୁ ମୁଁ ଅତି ସଂକ୍ଷେପରେ ତୁମକୁ ତାହା ବୁଝାଉଛି । ବୈଦିକ ମନ୍ତ୍ର ଉଚ୍ଚାରଣ କରିବା ପାଇଁ ଯେଉଁମାନଙ୍କର କ୍ଷମତା ଥାଏ, ଯେଉଁମାନେ ଏହାକୁ ଗୁରୁକୁଳରେ ରହି ଶିଖିଥା'ନ୍ତି ସେମାନେ ବୈଦିକ ମନ୍ତ୍ରରେ ଷୋଡ଼ଶଉପଚାରରେ ପୂଜା କରିବା ଉଚିତ । ବିଶେଷକରି ପୁରୁଷସୂକ୍ତର ପ୍ରତ୍ୟେକ ମନ୍ତ୍ରକୁ ଗୋଟି ଗୋଟି ଉଚ୍ଚାରଣ କରି ଗୋଟିଏ ଗୋଟିଏ କୃତ୍ୟ କରିବା ଉଚିତ । ବେଦ ମନ୍ତ୍ରରେ ସମସ୍ତଙ୍କର ଅଧିକାର ନଥାଏ । ତାନ୍ତ୍ରିକ ମନ୍ତ୍ରରେ ସ୍ତ୍ରୀ ଶୂଦ୍ର ସମସ୍ତେ ପୂଜା କରିପାରିବେ । ଏଣୁ ଆମେ ଏହିଠାରେ ତାନ୍ତ୍ରିକ ମନ୍ତ୍ର ଦ୍ୱାରା କରାଯାଇ ଥିବା ପୂଜା ବିଧି ଆଲୋଚନା କରିବା ।

---

(୨) ଦୀପ ମନ୍ତ୍ର : ଭୋ ଦୀପ ଦେବରୂପସ୍ତ୍ୱଂ କର୍ମସାକ୍ଷୀ ହ୍ୟବିଘ୍ନକୃତ ।
ଯାବତ୍ କର୍ମ ସମାପ୍ତଃ ସ୍ୟାଦ୍ ତାବତ୍ତ୍ୱଂ ସୁସ୍ଥିରୋ ଭବ ।।

ଏହି ମନ୍ତ୍ରରେ ଆବାହନ କରି ମୂଳ ମନ୍ତ୍ରରେ ପୂଜା କରିବ ।

ଘଣ୍ଟା ମନ୍ତ୍ର: ଆଗମାର୍ଥଂତୁ ଦେବନାଂ ଗମନାର୍ଥତୁ ରକ୍ଷସାମ୍ ।
ଘଣ୍ଟାନାଦଂ ପ୍ରକୁର୍ବତ୍ ପଶ୍ଚାଦ୍ ଘଣ୍ଟାଂ ପ୍ରପୂଜୟେତ ।।

ଶଙ୍ଖ ମନ୍ତ୍ର: ତ୍ୱଂ ପୁରା ସାଗରୋତ୍ପନ୍ନୋ ବିଷ୍ଣୁନା ବିଧୃତଃ କରେ ।
ନିର୍ମିତଃ ସର୍ବଦେବୈଶ୍ଚ ପାଞ୍ଚଜନ୍ୟ ନମୋଽସ୍ତୁତେ ।।

ଏହି ମନ୍ତ୍ରରେ ଆବାହନ କରି ମୂଳ ମନ୍ତ୍ରରେ ପାଞ୍ଚୋପଚାର ଅଥବା ଷୋଡ଼ଶୋପଚାର ପୂଜା କରିବା ।

## (୧) ଆବାହନ

ପୂଜାରେ ସର୍ବପ୍ରଥମ ଉପଚାର ହେଉଛି ଆବାହନ । ଆମର ଏଠାରେ ପ୍ରଚଳିତ ପ୍ରଥା ହେଉଛି, କୌଣସି ଶ୍ରେଷ୍ଠ ପୁରୁଷ ଆମ ଘରକୁ ଆସୁଥିବା ଦେଖିଲେ ଆମେ ପ୍ରସନ୍ନତା ପୂର୍ବକ କହିଥାଉ -" ଆସନ୍ତୁ, ଆସନ୍ତୁ, ସ୍ୱାଗତମ୍ ସ୍ୱାଗତମ୍ ।" ଆବାହନ ଶବ୍ଦର ଅର୍ଥ ନିମନ୍ତ୍ରଣ କରିବା, ଡାକିବା, ସେବା ସତ୍କାର ପୂଜା ନିମନ୍ତେ ଆବାହନ କରିବା । ପ୍ରତିଷ୍ଠିତ ମୂର୍ତ୍ତି ଥିଲେ ଅଥବା ଶାଳଗ୍ରାମ ଥିଲେ ପ୍ରତିଦିନ ଦେବତାଙ୍କୁ ଆବାହନ କରିବା ଦରକାର ନାହିଁ । ନୈମେତିକ ପୂଜା ଯଦି ଛାୟାଚିତ୍ରକୁ କରାଯାଉ ଥାଏ ତେବେ ବି ଆବାହନର ଆବଶ୍ୟକତା ନ ଥାଏ । କିନ୍ତୁ କଲେ କିଛି କ୍ଷତି ନାହିଁ । ହାତରେ ଅକ୍ଷତ ପୁଷ୍ପ ଧରି ହାତ ଯୋଡ଼ି କହିବ - "ହେ ଭଗବନ୍ ! ଆସନ୍ତୁ ଆସନ୍ତୁ ଏହି ସ୍ଥାନରେ ବିରାଜମାନ କରନ୍ତୁ । ମୁଁ ଯେ ପର୍ଯ୍ୟନ୍ତ ପୂଜା କରୁଥିବି ଆପଣ ସେ ପର୍ଯ୍ୟନ୍ତ ଏଠାରେ ସ୍ଥିର ଥାଆନ୍ତୁ ।" (୩) ଏପରି କହି ଆବାହନ କରି ଅକ୍ଷତ ପୁଷ୍ପ ପକାଇଦେବ । ବିଷ୍ଣୁ ପୂଜାରେ ଅକ୍ଷତ ନିଷେଧ କରା ହୋଇଛି । ଅକ୍ଷତ ପ୍ରତିବଦଳରେ ଶ୍ୱେତ ତିଳ ଅଥବା ଯବ ବ୍ୟବହାର କରିବେ । ତା' ନ ହେଲେ କେବଳ ଫୁଲ ଚଢ଼ାଇବେ । କହିବେ -

"ଶ୍ରୀମନ୍ନାରାୟଣାୟ ସାଙ୍ଗାୟ ସପରିବାରାୟ ନାରାୟଣମ୍ ଆବହୟାମି ଅଥବା ଗୋପାଳ କୃଷ୍ଣାୟ ଆବାହୟାମି । ଯେଉଁ ଦେବତାଙ୍କୁ ଆବାହନ କରିବ ଏହିଭଳି ହିଁ କରିବ ।"

## (୨) ଆସନ

ଆବାହନ କରିବା ପରେ ପରେ ବସିବା ପାଇଁ ଆସନ ଦିଆ ହୋଇଥାଏ । ଯେପରି ଆମ ଘରକୁ କେହି ଶ୍ରେଷ୍ଠ ଲୋକ ଆସିଲେ ଆମେ କହୁ- "ଆସନ୍ତୁ, ଏହି ଆସନ ଅଳଙ୍କୃତ କରନ୍ତୁ ।" ଠିକ୍ ସେହିଭଳି ଭାବନା କରିବ—ଆମର ଇଷ୍ଟଦେବ ଆସିଯାଇଛନ୍ତି, ଏବେ ତାଙ୍କୁ ସର୍ବୋତ୍ତମ ଆସନରେ ବସାଇବା । ହାତ ଯୋଡ଼ି କହିବା, 'ହେ ଦେବ ! ଏହା ଅତ୍ୟନ୍ତ ରମ୍ୟ, ସୁଶୋଭନ, ଦିବ୍ୟ, ସୁଖକର ଶୁଭ ଆସନ । ଆପଣଙ୍କୁ ମୁଁ ଏହା ପ୍ରଦାନ କରୁଛି । କୃପାକରି ଆପଣ ତାହା ଗ୍ରହଣ କରନ୍ତୁ । (୪) ଏହିପରି କହି ସୁନ୍ଦର ଆସନ ଦେବ । ଆସନ ନଥିଲେ ଶାଳଗ୍ରାମଙ୍କ ତୁଳସୀ ଦଳକୁ ଆସନ ସ୍ଥାନରେ ଦେବ ଅଥବା ଆସନ ରୂପରେ ପୁଷ୍ପ ଅର୍ପଣ କରି କହିବ- "ଆସନଂ ସମର୍ପୟାମି"

---

(୩) ଆବହନ ମନ୍ତ୍ର : ଆଗଛ ଭଗବନ୍ ଦେବ ସ୍ଥାନେ ରାତ୍ରସ୍ଥିରୋ ଭବ ।
ଯାବତ୍ ପୂଜାଂ କରଷ୍ୟାମି ତାବତ୍ୱଂ ସନ୍ନିଧୌଭବ ।।

(୪)ଆସନ ମନ୍ତ୍ର : ରମ୍ୟଂ ସୁଶୋଭନଂ ଦିବ୍ୟଂ ସର୍ବସୋଖ୍ୟକରଂ ଶୁଭମ୍ ।
ଆସନଂ ଚ ମୟା ଦତ୍ତଂ ଗୃହାଣ ପରମେଶ୍ୱର ।।

## (୩) ପାଦ୍ୟ

ଆସନ ପରେ ପାଦ୍ୟ ଦିଆ ହୁଏ । ପାଦ ଧୋଇବା ଜଳକୁ ପାଦ୍ୟ କୁହାଯାଏ । ପୂର୍ବେ ଏପରି ସଦାଚାର ଥିଲା ଯେ, ବାହାରୁ କେହି ଆସିଲେ ଗୋଡ଼ ଧୋଇବା ପାଇଁ ପାଣି ଦିଆ ହେଉଥିଲା । ପଦ ପ୍ରକ୍ଷାଳନ ପରେ ଅନ୍ୟ କୃତ୍ୟ ହେଉଥିଲା । କୌଣସି ଶ୍ରେଷ୍ଠ ପୁରୁଷ ଆସିଲେ ତାଙ୍କୁ ସର୍ବ ପ୍ରଥମେ ଆସନରେ ବସାଇ ତାଙ୍କ ପାଦ ଧୋଇ ଦେଉଥିବା ଉଚିତ । ଶ୍ରେଷ୍ଠ ପୁରୁଷଙ୍କ ଚରଣୋଦକ ଅତି ପବିତ୍ର ହୋଇଥାଏ । କାରଣ ପାଦରେ ଭଗବାନ ବିଷ୍ଣୁ ରହିଥା'ନ୍ତି । ଆଉ ଭଗବାନଙ୍କ ଚରଣାମୃତ ତ ଗଙ୍ଗାଜଳ ଭଳି । ଶ୍ରୀଗଙ୍ଗାଙ୍କର ଉତ୍ପତ୍ତି ଭଗବାନଙ୍କର ଚରଣାରବିନ୍ଦରୁ ହିଁ ତ ହୋଇଛି । ପାଦ୍ୟ ଜଳ ନେଇ 'ପାଦ୍ୟଂ ସମର୍ପୟାମି' ଏପରି କହି ଜଳ ତଳେ ପକାଇବ । ପଞ୍ଚପାତ୍ରରୁ ପାଦ୍ୟର ପାତ୍ରରୁ ଜଳ ତଳେ ପକାଇ 'ଶୁଦ୍ଧୋଦକ ସମର୍ପୟମି' କହି ଶୁଦ୍ଧଦୋକ ବି ତଳେ ପକାଇବ । ପାଦ୍ୟ ସମୟରେ କହିବ- 'ହେ ଦେବ ! କିଛି ଉଷ୍ମ ନିର୍ମଳ ସଂଯୁକ୍ତ ଜଳ ଆପଣଙ୍କ ପଦ ପ୍ରକ୍ଷାଳନ ନିମନ୍ତେ ମୁଁ ଦେଉଛି । ତାହା ଆପଣ ଗ୍ରହଣ କରନ୍ତୁ । (୫)

ରାଜା ପଚାରିଲେ,''ଭଗବନ୍ ! ପଞ୍ଚପାତ୍ର କ'ଣ ?''

ମୁନି କହିଲେ,''ପୂଜକ ପ୍ରତିମାଙ୍କ ସମ୍ମୁଖରେ ପାଞ୍ଚଟି ପାତ୍ର ରଖନ୍ତି । ଗୋଟିଏ ବଡ଼ ପାତ୍ରରେ ପାଞ୍ଚଟି ଛୋଟ ଢାଳ ତମ୍ବା ବା ଚାନ୍ଦିର ଚତୁର୍ଦ୍ଦଳ କମଳ ଭଳି ରଖନ୍ତି । ମଝିରେ ବଡ଼ ଓ ଚାରି ପାଖରେ ସାନ ସାନ । ଉପରଟାରେ ପାଦ୍ୟ ଜଳ ଦକ୍ଷିଣ ପଟେ ଅର୍ଘ୍ୟ ଜଳ, ତଳେ ଆଚମନୀୟ ଜଳ ଓ ବାମ ପାଖରେ ସ୍ନାନ ଜନ ଓ ମଝିଟାରେ ଶୁଦ୍ଧ ଜଳ ରଖିଥାନ୍ତି । ଗୋଟିଏ ପାତ୍ରୀ(ଚାମଚ) ତହିଁରେ ପଡ଼ିଥାଏ । ସେହି ଢାଳଗୁଡିକରୁ ପାଦ୍ୟ, ଅର୍ଘ୍ୟ, ଆଚମନୀୟ ତଥା ସ୍ନାନୀୟ ଜଳ ତଥା ସେହି ସେହି ସାମଗ୍ରୀର ସହିତ ମିଶି ପୂର୍ଣ୍ଣ ରହିଥାଏ ।''

ରାଜା ପଚାରିଲେ,''ଭଗବନ୍ ! ପାଦ୍ୟ, ଅର୍ଘ୍ୟାଦି ଜଳରେ କି କି ସାମଗ୍ରୀ ପକାହୁଏ ।''

ମୁନି କହିଲେ,''ରାଜନ୍ ! ପାଦ୍ୟ ଜଳରେ ସମାଦାନା ପକା ହୋଇଥାଏ । ଦୂବ, ବିଷ୍ଣୁକାନ୍ତା ତଥା ତୁଳସୀଦଳ ଆଦି ପକାନ୍ତି । ଅର୍ଘ୍ୟର ଜଳରେ ଚନ୍ଦନ, ପୁଷ୍ପ, ଯବ, କୁଶ, ତିଳ, ଉତ୍ତମ ଦୁଧ, ଦହି ଆଦି ପକାନ୍ତି ।

''ଆଚମନୀୟ ଜଳରେ କର୍ପୂର, ଲବଙ୍ଗ, ଜାଇଫଳ ତଥା ଖସ ଆଦି ସୁଗନ୍ଧିତ ଦ୍ରବ୍ୟ

---

(୫) ପାଦ୍ୟ ମନ୍ତ୍ର : ଉଷ୍ଣୋଦକଂ ନିର୍ମଳଂ ଚ ସର୍ବ ସୌଗନ୍ଧ୍ୟସଂଯୁତମ୍ ।
ପାଦପ୍ରକ୍ଷାଳନାର୍ଥାୟ ଦତ୍ତଂ ମେ ପ୍ରତି ଗୃହ୍ୟତାମ୍ ।।

ପକାଯାଏ । ସେହିଭଳି ସ୍ନାନୀୟ ଜଳରେ ଚନ୍ଦନ କର୍ପୂର ଆଦି ସୁଗନ୍ଧିତ ଦ୍ରବ୍ୟ ପକାଯାଏ । ଏ ସବୁ ଯଦି ନ ମିଳେ ତେବେ ସେହି ଚାରି ଢାଳରେ ତୁଳସୀଦଳ, ଚନ୍ଦନ ପକାଇ ଆଚମନୀୟ ପାତ୍ରରେ ପକାଇବାକୁ ହୋଇଥାଏ । ଥରେ ପାଦ୍ୟ ଦେବାପରେ ପରେ ଶୁଦ୍ଧୋଦକ ଥରେ ଦିଆଯାଏ । ପୂଜା ଏହିଭଳି କରାଯାଏ । ଏହି ପାଞ୍ଚପାତ୍ରକୁ ପଞ୍ଚପାତ୍ର କୁହାଯାଏ । ଯେଉଁଠାରେ ପାଞ୍ଚପାତ୍ର ମିଳେନାହିଁ ସେଠାରେ ଗୋଟିଏ ପାତ୍ର (ଢାଳ)ରେ ପାଞ୍ଚପାତ୍ରର କଳ୍ପନା କରି ସେହିଥିରେ କାମଚଳାଇବାକୁ ହୋଇଥାଏ ।''

ରାଜା କହିଲେ, ''ଭଗବନ୍ ! ପଞ୍ଚପାତ୍ରର ଅର୍ଥ ବୁଝିଗଲି । ଏବେ ପାଦ୍ୟ ପରେ ଯାହା ଯାହା କରଣୀୟ କୃପାକରି ସେ ସମସ୍ତ କୁହନ୍ତୁ ।''

## (୪) ଅର୍ଘ୍ୟ

ମହାମୁନି ଆବିର୍ହୋତ୍ର କହିଲେ, 'ରାଜନ୍ ! ପାଦ୍ୟ ପରେ ଅର୍ଘ୍ୟ ଦିଆହୁଏ । ଅର୍ଘ୍ୟ ଆଦରରେ ପ୍ରଦାନ କରିବାକୁ କୁହାଯାଏ । ଅର୍ଘ୍ୟ ଅର୍ଘା(ଆଦରରେ) ଦିଆହୁଏ । ସମ୍ମାନ ପ୍ରଦାନ କରିବାର ଏହା ଏକ ବିଧି । ନିଜ ଠାରୁ ଶ୍ରେଷ୍ଠକୁ ହିଁ ଅର୍ଘ୍ୟ ଦିଆହୁଏ । କିନ୍ତୁ ହେ ରାଜନ୍ ! ଋତ୍ୱିକ, ଜାମାତା ତଥା ରାଜପୁତ୍ର, ଏମାନେ କନିଷ୍ଠ ହୋଇଥିଲେ ବି ଅର୍ଘ୍ୟର ଅଧିକାରୀ ହୋଇଥା'ନ୍ତି । ଅର୍ଘାରେ ଅର୍ଘ୍ୟ ସାମଗ୍ରୀ ସହିତ ଜଳ ପୂରଣକରି ତିନିଥର ଅର୍ଘ୍ୟ ଦେବାକୁ ହୁଏ । ସେତେବେଳେ କୁହାଯାଏ— 'ହେ ଦେବଦେବ ! ଏହି ଗନ୍ଧ, ଅକ୍ଷତ, ପୁଷ୍ପାଦି ସହିତ ଅର୍ଘ୍ୟ ମୁଁ ଆପଣଙ୍କୁ ପ୍ରଦାନ କରୁଛି । ଆପଣ ଏହି ଅର୍ଘ୍ୟକୁ ଗ୍ରହଣ କରନ୍ତୁ । ହେ ଦେବ ! ମୁଁ ଆପଣଙ୍କୁ ନମସ୍କାର କରୁଛି । (୬) ଅର୍ଘ୍ୟ ଦେବାପରେ ପୁଣି ଶୁଦ୍ଧୋଦକ ଦେବ ଓ କହିବ 'ଅର୍ଘ୍ୟ ସମର୍ପୟାମି' ।

## (୫) ଆଚମନ

ଅର୍ଘ୍ୟ ପ୍ରଦାନ ପରେ ପରେ ଆଚମନ ନିମନ୍ତେ ଜଳ ଦେବାକୁ ହୁଏ । ପ୍ରାଚୀନ କାଳରେ ଏପରି ସଦାଚାର ଥିଲା ଯେ, ମୁଖକୁ ଶୁଦ୍ଧ କରିବା ପାଇଁ ପ୍ରତ୍ୟେକ କଥାରେ ଆଚମନ କରୁଥିଲେ । ନିଜ ପାଖରେ ସବୁବେଳେ ଜଳ ରଖୁଥିଲେ । ସକାଳୁ ଉଠିବା କ୍ଷଣି ହାତ ପାଦ ଧୋଇ ଆଚମନ କରୁଥିଲେ । ଶୌଚ ଯାଇ ଶୁଦ୍ଧ ହୋଇ ଆଚମନ କରୁଥିଲେ । ସ୍ନାନ ପରେ, କେଉଁ ଆଡୁ ଆସିଲେ, ମଳ ମୂତ୍ର ତ୍ୟାଗ ପରେ, ଅପାନ ବାୟୁ ପରେ, ଛିଙ୍କିଲେ, ଜିଭରେ ଚାଟିବା ପରେ, ସନ୍ଧ୍ୟାଦି କୃତ୍ୟ କରିବା ପରେ । ସାରକଥା ହେଉଛି ଯେଉଁ କର୍ମରେ ଅସୂଚୀ ହେବାର ସମ୍ଭାବନା ଥାଏ, ସେହି ସବୁ କର୍ମ ପରେ ପରେ ଆଚମନ କରୁଥିଲେ ।

---

(୬) ଅର୍ଘ୍ୟମନ୍ତ୍ର : ଅର୍ଘ୍ୟ ଗୃହାଣ ଦେବେଶ ଗନ୍ଧପୁଷ୍ପାକ୍ଷତୈଃସହ ।
କରୁଣାଂ କୁରୁ ମେ ଦେବ ଗୃହାଣାର୍ଘ୍ୟ ନମୋଽସ୍ତୁତେ ।।

ଆଚମନୀୟ ନଥିଲେ ବାମ କାନକୁ ସ୍ପର୍ଶ କରୁଥିଲେ, କିମ୍ବା ସୂର୍ଯ୍ୟଙ୍କୁ ଚାହିଁ ଦେଉଥିଲେ । ଅର୍ଘ୍ୟ ପରେ ଆଚମନ ଆବଶ୍ୟକ । ଏଣୁ ସୁଗନ୍ଧିତ ଜଳରେ ତିନି ଥର ଆଚମନ କରାଯାଏ ଆଉ କୁହାଯାଏ, 'ହେ ପରମେଶ୍ୱର ! ସକଳ ତୀର୍ଥର ଜଳଯୁକ୍ତ ସୁଗନ୍ଧିତ ଏହି ନିର୍ମଳ ନୀର ଆପଣଙ୍କ ଆଚମନ ନିମନ୍ତେ ପ୍ରଦାନ କରୁଛି । ହେ ଭଗବନ୍ ! ଏହି ଜଳ ଗ୍ରହଣ କରି ଆପଣ ଆଚମନ କରିନିଅନ୍ତୁ (୭) 'ଆଚମନୀୟ ସମର୍ପୟାସି' ଏପରି କହି ଆଚମନ କରାଯାଏ ଓ ଆଚମନ ସାରି ଶୁଦ୍ଧ ଜଳରେ ହାତ ଧୋଇବାକୁ ହୁଏ ।

## (୬) ଜଳସ୍ନାନ

ଆଚମନ ପରେ ଭଗବାନଙ୍କୁ ଶୁଦ୍ଧ ଜଳରେ ସ୍ନାନ କରାଇବାକୁ ହୁଏ । ସ୍ନାନୀୟ ଜଳ ପ୍ରଦାନ କରି କହିବ, ''ଗଙ୍ଗା, ସରସ୍ୱତୀ, ରେବା, ପାୟୋଷ୍ଣୀ; ନର୍ମଦା ଆଦି ପବିତ୍ର ସରିତାଙ୍କର ହେଉଛି ଏହି ଜଳ । ଏଥିରେ ହେ ଦେବ ! ମୁଁ ଆପଣଙ୍କୁ ସ୍ନାନ କରାଇବା ପାଇଁ ଚାହୁଁଛି । ଯେପରି ସ୍ନାନ କଲେ ଆପଣଙ୍କୁ ଶାନ୍ତି ମିଳେ, ମୋତେ ସେହି ଭଳି ଶାନ୍ତି ପ୍ରଦାନ କରନ୍ତୁ । (୮) ଏହି ନଦୀଙ୍କ ଭିତରୁ କୌଣସି ନଦୀର ଜଳ ନ ଥାଇପାରେ, ଯେ କୌଣସି ନଦୀ ଜଳରେ ଏପରି ଭାବନା କରିବା ଉଚିତ । ସ୍ନାନ ବହୁତ ପ୍ରକାରର- ଦୁଗ୍ଧସ୍ନାନ, ଦଧିସ୍ନାନ, ଘୃତସ୍ନାନ, ମଧୁସ୍ନାନ, ଶର୍କରାସ୍ନାନ, ପଞ୍ଚାମୃତସ୍ନାନ, ତଥା ଶୁଦ୍ଧୋଦକ ସ୍ନାନ । ଏହାଛଡ଼ା ମହୌଷଧି, ଦିବ୍ୟୌଷଧି, ଆଦିରେ ବି ସ୍ନାନ କରାଯାଏ । ଏ ସମସ୍ତ ସ୍ନାନର ଅନ୍ତର୍ଗତ । ଏ ସମସ୍ତ ମଧ୍ୟରୁ ପଞ୍ଚାମୃତ ସ୍ନାନର ମାହାତ୍ମ୍ୟ ଅଧିକ ।

ତେଣୁ ଆମେ ପଞ୍ଚାମୃତ ସ୍ନାନର ବିଧି କହିବା । ଶୁଦ୍ଧୋଦକରେ ସ୍ନାନ କରିବା ପରେ ଦୁଗ୍ଧ ସ୍ନାନ କରିବେ ।

**ଦୁଗ୍ଧ ସ୍ନାନ** : ଛଣା ଯାଉଥିବା ଖାଣ୍ଟି ଦୁଧରେ ଭଗବାନଙ୍କୁ ସ୍ନାନ କରାଇବ । ଆଉ ବିନତୀ କରି କହିବ :

*କାମଧେନୁ ସମୁତ୍ପନ୍ନଂ ସର୍ବେଷାଂଜୀବନଂ ପରମ୍ ।*
*ପାବନ ଯଜ୍ଞହେତୁଶ୍ଚ ପୟଃ ସ୍ନାନାର୍ଥମର୍ପିତମ୍ ।।*

ଅର୍ଥାତ୍, ''ହେ ଦେବ ! ଏହି ଦୁଧ କାମଧେନୁଙ୍କର । ଏହା ସକଳ ପ୍ରାଣୀଙ୍କର ଜୀବନ ।

---

(୭) ଆଚମନ ମନ୍ତ୍ର : ସର୍ବ ତୀର୍ଥ ସମାଯୁକ୍ତଂ ସୁଗନ୍ଧ ନିର୍ମଳ ଜଳମ୍ ।
ଆଚମ୍ୟତାଂ ମୟା ଦତ୍ତଂ ଗୃହୀତ୍ୱା ପରମେଶ୍ୱର ।।

(୮) ଜଳ ସ୍ନାନ ମନ୍ତ୍ର : ଗଙ୍ଗା ସରସ୍ୱତୀ ରେବା ପୟୋଷ୍ଣୀ ନର୍ମଦା ଜଲୈଃ ।
ସ୍ନାପିତୋଽସି ମୟା ଦେବ ତଥା ଶାନ୍ତିଂ କୁରୁଷ୍ୱମେ ।।

ଏହା ଯାଗଯଜ୍ଞାଦିର କାରଣ ଏବଂ ପରମ ପବିତ୍ର । ଏଣୁ ଏଥିରେ ଆପଣଙ୍କ ସ୍ନାନ ନିମନ୍ତେ ମୁଁ ଅର୍ପଣ କରୁଛି ।'' ଏପରି କହି ଦୁଗ୍ଧରେ ସ୍ନାନ କରାଇବ । ଏହାପରେ ଦଧିରେ ସ୍ନାନ କରାଇବ ।

**ଦଧିସ୍ନାନ** : ଦହିରେ ଠାକୁରଙ୍କୁ ସ୍ନାନ କଲାବେଳେ ବିନୟର ସହିତ କହିବ :

*ପୟସସ୍ତୁ ସମୁଦ୍‌ଭୂତଂ ମଧୁରାମ୍ଳଂ ଶଶିପ୍ରଭମ୍ ।*
*ଦଧ୍ୟାନୀତଂ ମୟାଦେବ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥*

ଅର୍ଥାତ୍, ''ହେ ଦେବ ! ଏହି ଦହି ଦୁଧରୁ ଉତ୍ପନ୍ନ ହୋଇଛି । ଚନ୍ଦ୍ରଙ୍କ ଭଳି ଶୁଭ୍ର ଆଉ ସ୍ୱଚ୍ଛ, ଖଟାଯୁକ୍ତ ମିଠା, ଏହାକୁ ଗ୍ରହଣ କରନ୍ତୁ ।'' ଏପରି ପ୍ରାର୍ଥନା କରି, 'ଦଧିସ୍ନାନଂ ସମର୍ପୟାମି' କହି ଦହିରେ ସ୍ନାନ ସାରି ଶୁଦ୍ଧୋଦକରେ ସ୍ନାନ କରାଇବ । ଏବଂ ଏହାପରେ ଘୃତସ୍ନାନ କରାଇବ ।

**ଘୃତସ୍ନାନ** : ଖାଣ୍ଟି ଗୁଆ ଘିଅରେ ଭଗବାନଙ୍କୁ ସ୍ନାନ କରାଇବ । ଘିଅ ଧରି କହିବ :

*ନବନୀତସମୁତ୍ପନ୍ନଂ ସର୍ବସନ୍ତୋଷ କାରକମ୍ ।*
*ଘୃତଂ ତୁଭ୍ୟଂ ପ୍ରଦାସ୍ୟାମି ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥*

ଅର୍ଥାତ୍, ''ହେ ଭଗବନ୍ ! ଏହି ଘିଅ ଲହୁଣୀରୁ ଉତ୍ପନ୍ନ ହୋଇଛି । ଏହା ସକଳ ପ୍ରାଣୀଙ୍କୁ ସନ୍ତୋଷ ଦେଇଥାଏ । ଏହା ଯଜ୍ଞର ପ୍ରଧାନ କାରଣ । ଘୃତାଦି ବିନା ଯଜ୍ଞ ସମ୍ପନ୍ନ ହୁଏନାହିଁ । ଏହି ପରମ ପବିତ୍ର ଘୃତକୁ ସ୍ନାନ ନିମନ୍ତେ ଆପଣଙ୍କୁ ଅର୍ପଣ କରୁଛି । ହେ ପୂଜ୍ୟ ! ଆପଣ ଏହାକୁ ଗ୍ରହଣ କରନ୍ତୁ ।'' 'ଘୃତସ୍ନାନ ସମର୍ପୟାମି' ଏପରି କହି ଘୃତସ୍ନାନ କରାଇବେ । ପୁଣିଥରେ 'ଜଳସ୍ନାନ ସମର୍ପୟାମି' କହି ଶୁଦ୍ଧୋଦକରେ ସ୍ନାନ କରାଇବେ । ଏହାପରେ ମଧୁରେ ସ୍ନାନ କରାଇବେ ।

**ମଧୁସ୍ନାନ** : ମହୁର ଧାରରେ ଭଗବାନଙ୍କୁ ସ୍ନାନ କରାଇବାକୁ ହୋଇଥାଏ । ମଧୁରେ ସ୍ନାନ କରିବା ବେଳେ ପ୍ରାର୍ଥନା କରି କହିବ :

*ତରୁପୁଷ୍ପେ ସମୁଦ୍‌ଭୂତଂ ସୁସ୍ୱାଦୁ ମଧୁରଂ ମଧୁ ।*
*ତେଜଃ ପୁଷ୍ଟିକରଂ ଦିବ୍ୟଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥*

ଅର୍ଥାତ୍, ''ହେ ଦେବ ! ଏହି ମହୁ ବୃକ୍ଷର ପୁଷ୍ପରୁ ଉତ୍ପନ୍ନ ହୋଇଛି । ଏହା ଅତି ମଧୁର, ସ୍ୱାଦିଷ୍ଟ, ଦିବ୍ୟ, ତେଜ ତଥା ପୁଷ୍ଟିକାରକ । ଏହାକୁ ମୁଁ ଆପଣଙ୍କ ସ୍ନାନ ନିମନ୍ତେ ଅର୍ପଣ କରୁଛି । ଆପଣ ଏହାକୁ ଗ୍ରହଣ କରନ୍ତୁ ।'' 'ମଧୁସ୍ନାନଂ ସମର୍ପୟାମି' ଏପରି କହି ମଧୁସ୍ନାନ କରାଇ ପୁଣି ଶୁଦ୍ଧୋଦକ ସ୍ନାନ କରାଇବ । ଏହାପରେ ଶର୍କରା ସ୍ନାନ କରାଇବ ।

**ଶର୍କରା ସ୍ନାନ** : ଆଖୁରସ ହେଉ କିମ୍ବା ଶାକରକୁ ପାଣିରେ ଘୋଳି, ଛାଣି ତହିଁରେ ଭଗବାନଙ୍କୁ ସ୍ନାନ କରାଇବ । ଆଉ ସ୍ନାନ କରାଉଥିବା ସମୟରେ କହିବ:

*ଇକ୍ଷୁସାର ସମୁଦ୍‌ଭୂତା ଶର୍କରା ପୁଷ୍ଟକାରିକା ।*
*ମଳାପହାରିକା ଦିବ୍ୟା ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, ''ଏହି ଶର୍କରା ଆଖୁସାରରୁ ପ୍ରସ୍ତୁତ । ଏହା ପୁଷ୍ଟିକାରୀ, ମଳ ହରଣକାରୀ ଓ ଦିବ୍ୟ । ଏହାକୁ ମୁଁ ସ୍ନାନ ନିମନ୍ତେ ପ୍ରଦାନ କରୁଛି । କୃପାକରି ଆପଣ ଏହାକୁ ଗ୍ରହଣ କରନ୍ତୁ ।'' 'ଶର୍କରା ସ୍ନାନ ସମର୍ପୟାମି', 'ପୁନର୍ଜଳ ସ୍ନାନ ସମର୍ପୟାମି' ଏପରି କହି ଶର୍କରା ସ୍ନାନ ଓ ତା ପରେ ପରେ ଶୁଦ୍ଧୋଦକ ସ୍ନାନ କରାଇବ । ଏହାପରେ ଏହି ପାଞ୍ଚ ଦ୍ରବ୍ୟ ମିଶାଇ ପଞ୍ଚାମୃତ କରିବେ ଓ ତହିଁରେ ସ୍ନାନ କରାଇବେ ।

**ପଞ୍ଚାମୃତ ସ୍ନାନ** : ଦୁଧ, ଦହି, ଘୃତ, ମହୁ ଓ ଶର୍କରା ମିଶିଲେ ପଞ୍ଚାମୃତ ହୁଏ । ଏଗୁଡ଼ିକ ନେଇ ପୃଥକ୍ ପୃଥକ୍ ସ୍ନାନ କରାଇବା ପରେ ଏ ସମସ୍ତକୁ ମିଶାଇ, ପଞ୍ଚାମୃତ କରି ଏଥିରେ ସ୍ନାନ କରିବା ବେଳେ ପ୍ରାର୍ଥନା କରି କହିବ :

*ପଞ୍ଚାମୃତଂ ମୟାନୀତଂ ପୟୋଦଧି ସମନ୍ୱିତମ୍ ।*
*ଘୃତଂ ମଧୁଶର୍କରୟା ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, ''ହେ ଦେବ ! ଦୁଧ, ଦହି, ଘୃତ, ମଧୁ ଆଉ ଶର୍କରା ଏହି ପଞ୍ଚାମୃତ ରୂପ ଦ୍ରବ୍ୟରେ ନିର୍ମିତ ପଞ୍ଚାମୃତ ମୁଁ ଆପଣଙ୍କ ସ୍ନାନ ନିମନ୍ତେ ଆଣିଛି । ଆପଣ ଏହାକୁ ଗ୍ରହଣ କରନ୍ତୁ ।'' 'ପଞ୍ଚାମୃତ ସମର୍ପୟାମି' ଏପରି କହି ପଞ୍ଚାମୃତରେ ସ୍ନାନ କରାଇବ ଓ ପରେ ପରେ ଶୁଦ୍ଧୋଦକରେ ସ୍ନାନ କରାଇବ ।

**ଶୁଦ୍ଧୋଦକ ସ୍ନାନ** : ଯେଉଁ ପାତ୍ରରେ ପଞ୍ଚାମୃତ ସ୍ନାନ କରାଇଥିବ ତହିଁରୁ ପ୍ରତିମାକୁ ବାହାର କରି ଧୀରେ ଧୀରେ ଶ୍ରୀବିଗ୍ରହରେ ଲାଗିଥିବା ପଞ୍ଚାମୃତ ପୋଛିଦେବ । ଆଉ ପ୍ରତିମାକୁ ଶୁଦ୍ଧ ଜଳରେ ସ୍ନାନ କରାଇବ । ସେତେବେଳେ ପ୍ରାର୍ଥନା କରି କହିବ :

*ମନ୍ଦାକିନ୍ୟାସ୍ତୁ ଯଦ୍‌ବାରି ସର୍ବପାପହରଂ ଶୁଭମ୍ ।*
*ତଦିଦଂ କଳ୍ପିତଂ ଦେବଂ ସ୍ନାନାର୍ଥ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, ''ସର୍ବପାପ ହରଣକାରୀ ମନ୍ଦାକିନୀର ଜଳ ମୁଁ ସଂଗ୍ରହ କରିଛି । (ଏପରି କଳ୍ପନା କରି) ହେ ଦେବ ! ଆପଣ କୃପାକରି ଶୁଦ୍ଧୋଦକ ସ୍ନାନ ନିମିତ୍ତ ଏହାକୁ ଗ୍ରହଣ କରନ୍ତୁ ।'' 'ଶୁଦ୍ଧୋଦକସ୍ନାନଂ ସମର୍ପୟାମି' କହି ଶୁଦ୍ଧୋଦକରେ ସ୍ନାନ କରାଇବ । ଗନ୍ଧରେ ବି ସ୍ନାନ କରାଇବେ ଓ ତା'ପରେ ପୁଣି ଜଳରେ ସ୍ନାନ କରାଇ ବସ୍ତ୍ରରେ ଭଲଭାବରେ ପୋଛି ଦେବ ଏବଂ ଆସନରେ ବସାଇ ଦେବ ।

## ୮. ବସ୍ତ୍ର ଉପବସ୍ତ୍ର

ପ୍ରତିମାଙ୍କର ସ୍ନାନ ସମାପନ କରି ବସ୍ତ୍ର ପିନ୍ଧାଇବାକୁ ହୋଇଥାଏ । ପୂର୍ବେ ଦୁଇଟି ବସ୍ତ୍ର ପିନ୍ଧା ହେଉଥିଲା । ଗୋଟିଏ ଅଣ୍ଟାରୁ ତଳକୁ ଓ ଆଉ ଗୋଟିଏ କାନ୍ଧରେ ପକାଇବା ପାଇଁ ଉତ୍ତରୀୟ । ଏବଂ ମୁହଁ ହାତ ପୋଛାପୋଛି ନିମିତ୍ତ ଏକ କ୍ଷୁଦ୍ର ବସ୍ତ୍ର । ଅତି କମ୍‌ରେ ଦୁଇଟି ବସ୍ତ୍ର ଭଗବାନଙ୍କୁ ଅର୍ପଣକରି ପ୍ରାର୍ଥନା ନିବେଦନ କରିବ :

*ସର୍ବଭୂଷାଧିକେ ସୌମ୍ୟେ ଲୋକଲଜ୍ଜାନିବାରଣେ ।*
*ମୟୋପପାଦିତେ ତୁଭ୍ୟଂ ବାସସୀ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, ''ହେ ଦେବ ! ସକଳ ଭୂଷଣ ମଧ୍ୟରେ ବସ୍ତ୍ର ହେଉଛି ଶ୍ରେଷ୍ଠ, ସୁନ୍ଦର, ମନୋହର । ଏଥିରେ ଲୋକଲଜ୍ଜା ନିବାରଣ ହୁଏ । ଏଥିପାଇଁ ଏହି ବସ୍ତ୍ରଦ୍ୱୟ ମୁଁ ଆପଣଙ୍କୁ ଅର୍ପଣ କରୁଛି । ଆପଣ କୃପାକରି ଏହାକୁ ସ୍ୱୀକାର କରନ୍ତୁ ।'' ଏପରି କହି 'ବସ୍ତ୍ରମ୍ ଉପବସ୍ତ୍ରଞ୍ଚ ସମର୍ପୟାମି' ବସ୍ତ୍ର-ଉପବସ୍ତ୍ର ଅର୍ପଣ କରିଦେବ । ବସ୍ତ୍ର ଅଭାବରେ ପୁଷ୍ପ ଅର୍ପଣ କରିବ । ଅଥବା ଅକ୍ଷତ ଅର୍ପଣ କରିବ । ଏହାପରେ ଯଜ୍ଞୋପବିତ ଅର୍ପଣ କରିବ । ବସ୍ତ୍ରାନ୍ତେ 'ଆଚମନୀୟ ସମର୍ପୟାମି' ବସ୍ତ୍ର ଅର୍ପଣ ପରେ ପରେ ଅଚମନ କରାଇବ ।

## ୯. ଯଜ୍ଞୋପବୀତ

ସଦ୍ୟ ପ୍ରସ୍ତୁତ ହୋଇଥିବା ଯଜ୍ଞୋପବୀତ ଭଗବାନଙ୍କୁ ଅର୍ପଣ କରିବାକୁ ହୋଇଥାଏ । ଯଜ୍ଞୋପବିତ ଅର୍ପଣ କରିବା ବେଳେ ପ୍ରାର୍ଥନା କରି କହିବାକୁ ହୋଇଥାଏ :

*ନବଭିସ୍ତନ୍ତୁର୍ଯୁକ୍ତଂ ତ୍ରିଗୁଣଂ ଦେବତାମୟମ୍ ।*
*ଉପବୀତଂ ମୟା ଦତ୍ତଂ ଗୃହାଣ ପରମେଶ୍ୱର ।।*

ଅର୍ଥାତ୍, ହେ ପ୍ରଭୁ ! ଏହି ଯଜ୍ଞୋପବୀତ ନବତନ୍ତୁ ଗ୍ରହଣ କରନ୍ତୁ । 'ଯଜ୍ଞୋପବୀତ ସମର୍ପୟାମି' କହି ଯଜ୍ଞୋପବୀତ ନିବେଦନ କରିବ ଏବଂ ଆଚମନ କରିବ । ଏହାପରେ ଚନ୍ଦନ ଅର୍ପଣ କରିବ ।

## ୧୦. ଗନ୍ଧ

ସୁନ୍ଦର ସୁଗନ୍ଧଯୁକ୍ତ ଚନ୍ଦନ ଯେଉଁଥିରେ କେଶର, କର୍ପୂର ତଥା ଅନ୍ୟ ସୁଗନ୍ଧିତ ବସ୍ତୁ ପଡ଼ିଥିବ ତାହା ଶ୍ରୀଭଗବାନଙ୍କର ଶ୍ରୀବିଗ୍ରହରେ ଲେପନ କରିବ । ଏବଂ ପ୍ରାର୍ଥନା କରିବ:

*ଶ୍ରୀ ଖଣ୍ଡଂ ଚନ୍ଦନଂ ଦିବ୍ୟଂ ଗଂଧାଢ୍ୟଂ ସୁମନୋହରମ୍ ।*
*ବିଲେପନଂ ସୁରଶ୍ରେଷ୍ଠ ଚନ୍ଦନଂ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, ''ହେ ସୁରଶ୍ରେଷ୍ଠ ! ଏହି ଶ୍ରୀଖଣ୍ଡ ଚନ୍ଦନ ଅତି ଦିବ୍ୟ । ମନୋହର ସୁଗନ୍ଧଯୁକ୍ତ । ଶରୀରରେ ଏହାକୁ ଉତ୍ତମରୂପେ ଲେପନ କରାଯାଏ । ଏହାକୁ ଆପଣ ଗ୍ରହଣ କରନ୍ତୁ । 'ଗନ୍ଧଂ ସମର୍ପୟାମି' ଏପରି କହି ଚନ୍ଦନ ଲଗାଇବ । ଚନ୍ଦନ ଲାଗି ହୋଇଯିବା ପରେ

ପରେ ଅକ୍ଷତ ଅର୍ପଣ କରିବ । କିନ୍ତୁ ଭଗବାନ ବିଷ୍ଣୁଙ୍କୁ ଅକ୍ଷତ ଅର୍ପଣ କରିବାକୁ ମନା । ଏଣୁ ଶ୍ୱେତ ତିଳ ଅଥବା ଯବ ଅର୍ପଣ କରିବ ।

## ଅକ୍ଷତ

ଚତୁର୍ଭୁଜ ବିଷ୍ଣୁଙ୍କ ପୂଜାରେ ଅକ୍ଷତ ନିଷେଧ । ଦ୍ୱିଭୁଜ ରାମ ବା କୃଷ୍ଣଙ୍କ ପୂଜାରେ ଅକ୍ଷତ ବ୍ୟବହାର କରାଯାଇପାରେ । ଅକ୍ଷତ ପ୍ରତିବଦଳରେ ଶ୍ୱେତ ତିଳ ବ୍ୟବହାର କରାଯାଇଥାଏ । ଏବଂ ଏହା ସମର୍ପଣ କରିବାବେଳେ ପ୍ରାର୍ଥନା ନିବେଦନ କରିବାକୁ ହୋଇଥାଏ :

*ଅକ୍ଷତାଶ୍ଚ ସୁରଶ୍ରେଷ୍ଠ କୁଙ୍କୁମକ୍ତାଃ ସୁଶୋଭିତାଃ ।*
*ମୟା ନିବେଦିତା ଭକ୍ତ୍ୟା ଗୃହାଣ ପରମେଶ୍ୱର ।।*

ଅର୍ଥାତ୍, ହେ ଦେବଦେବ ! କେଶରରେ ରଙ୍ଗ ହୋଇଥିବା ଏହି ସୁନ୍ଦର ଅକ୍ଷତକୁ ମୁଁ ଭକ୍ତିପୂର୍ବକ ଆପଣଙ୍କୁ ନିବେଦନ କରୁଛି । ଆପଣ ଏହାକୁ କୃପାକରି ସ୍ୱୀକାର କରନ୍ତୁ । 'ଅକ୍ଷତାନ୍ ସମର୍ପୟାମି' ଏପରି କହି ଚନ୍ଦନରେ ଅକ୍ଷତ ଲଗାଇଦେବ ଏବଂ ସେହି ଅକ୍ଷତ ପକାଇଦେବ । ଏହାପରେ ପୁଷ୍ପ ଲାଗି କରିବ ।

## ୧୧. ପୁଷ୍ପ

ସୁଗନ୍ଧିତ ପୁଷ୍ପ ସଂଗ୍ରହ କରିବ । ଭଗବାନ୍ ବିଷ୍ଣୁଙ୍କୁ ଧୁତୁରା, ଅର୍କ ଅଥବା ସୁଗନ୍ଧ ନଥିବା ପୁଷ୍ପ ଲାଗି କରିବନାହିଁ । କୁନ୍ଦ ପୁଷ୍ପକୁ ଶିବଙ୍କୁ ଲାଗି କରିବ ନାହିଁ । ଦେବୀଙ୍କୁ ମନ୍ଦାର ପୁଷ୍ପ ଓ ସୂର୍ଯ୍ୟଙ୍କୁ ଟଗର ପୁଷ୍ପ ନିଷେଧ ହୋଇଛି । ଯେଉଁ ପୁଷ୍ପକୁ ଜଳରେ ଧୋଇ ଦିଆଯାଇଥାଏ ସେହି ପୁଷ୍ପ ନିର୍ମାଲ୍ୟ ହୋଇଯାଏ । ସେପରି ପୁଷ୍ପକୁ ଦେବତାଙ୍କୁ ଲାଗି କରିବ ନାହିଁ । ପିନ୍ଧା ବସ୍ତ୍ରରେ, ସାରୁ ପତ୍ରରେ ଗୁଡ଼ାଇ ଅଥବା ଦୁଇହାତକୁ ଆଞ୍ଜୁଳାକରି ସେହି ଆଞ୍ଜୁଳାରେ ଫୁଲ ଛିଣ୍ଡାଇ ସଂଗ୍ରହ କରିଥିବା ଫୁଲ ଠାକୁରଙ୍କୁ ଲାଗି କରିବନାହିଁ । ଶୁଦ୍ଧ ପୁଷ୍ପକୁ କୌଣସି ପାତ୍ରରେ ସଂଗ୍ରହ କରିବ । ପତ୍ରରେ ଅଣାଯାଇଥିବା ଫୁଲକୁ ଠାକୁରଙ୍କୁ ଲାଗି କରିବା ବେଳେ ପ୍ରାର୍ଥନା କରି କହିବ :

*ମାଲ୍ୟାଦୀନି ସୁଗନ୍ଧୀନି ମାଲତ୍ୟାଦୀନି ବୈ ପ୍ରଭୋ ।*
*ମୟାନୀତାନି ପୁଷ୍ପାଣି ଗୃହାଣ ପରମେଶ୍ୱର ।।*

ଅର୍ଥାତ୍, ''ହେ ପ୍ରଭୁ ! ମାଳତୀ ଆଦି ସୁନ୍ଦର ସୁଗନ୍ଧିତ ଏହି ସୁନ୍ଦର ଫୁଲ ମୁଁ ଆପଣଙ୍କ ପାଇଁ ଆଣିଛି । ଆପଣ କୃପାକରି ଗ୍ରହଣ କରନ୍ତୁ ।

'ଇତି ପୁଷ୍ପାଣି ସମର୍ପୟାମି' କହି ଫୁଲ ଚଢ଼ାଇବ ଏବଂ ଏହାପରେ ପୁଷ୍ପ ମାଳା ପିନ୍ଧାଇଦେବ ।

## ୧୨. ପୁଷ୍ପମାଳା

ସୁନ୍ଦର ସୁଗନ୍ଧିତ ପୁଷ୍ପର ମାଳ ଗୁନ୍ଥି ଠାକୁରଙ୍କ କଣ୍ଠରେ ପିନ୍ଧାଇବ ଏବଂ ପ୍ରାର୍ଥନା କରି କହିବ :

*ସୁରଭି ପୁଷ୍ପ ନିଚୟୈଃ ଗ୍ରଥିତାଂ ଶୁଭ ମାଳିକାମ୍ ।*
*ଦଦାମି ତବ ଶୋଭାର୍ଥଂ ଗୃହାଣ ପରମେଶ୍ୱର ॥*

ଅର୍ଥାତ୍, ହେ ପରମେଶ୍ୱର ! ସୁଗନ୍ଧିତ ପୁଷ୍ପ ସମୂହରେ ଗୁନ୍ଥା ହୋଇଥିବା ଶୁଭ୍ରମାଳା ମୁଁ ଆପଣଙ୍କ ଶୋଭାବର୍ଦ୍ଧନ ନିମନ୍ତେ ଅର୍ପଣ କରୁଛି । ଏହାକୁ ଆପଣ ଗ୍ରହଣ କରନ୍ତୁ । 'ଇତି ପୁଷ୍ପମାଳାଂ ସମର୍ପୟାମି' ଏହିଭଳି ପୁଷ୍ପମାଳାକୁ ପିନ୍ଧାଇ ତୁଳସୀଦଳ ଭଗବାନ୍‌ଙ୍କୁ ଅର୍ପଣ କରିବ ।

### ତୁଳସୀଦଳ

ତୁଳସୀ ପତ୍ର ତୋଳିବ । ଯେଉଁଥିରେ ଚାରି ଛ'ଟି ପତ୍ର ଲାଗିଥିବ ସେପରି ଦଳକୁ ତୋଳିବାକୁ ହୋଇଥାଏ । ଗଣେଶଙ୍କୁ ତୁଳସୀ ଚଢ଼ାଇବା ନିଷେଧ । **ଭଗବାନଙ୍କ ଚରଣରେ ତୁଳସୀଦଳ ଅର୍ପଣ କରିବାକୁ ହୋଇଥାଏ ।** ଏବଂ ପ୍ରାର୍ଥନା କରିବାକୁ ହୋଇଥାଏ :

*ତୁଳସୀ ହେମରୂପାଂ ଚ ରତ୍ନରୂପାଞ୍ଚ ମଞ୍ଜରୀମ୍ ।*
*ଭବ ମୋକ୍ଷପ୍ରଦଂ ତୁଭ୍ୟମର୍ପୟାମି ହରିପ୍ରିୟାମ୍ ॥*

''ହେ ଦେବ ! ଏହି ତୁଳସୀ ସୁନା ସଦୃଶ, ଏହାର ମଞ୍ଜରୀ ରତ୍ନ ସଦୃଶ, ଏହା ଆପଣଙ୍କର ଅତି ପ୍ରିୟ ହୋଇଥିବାରୁ 'ହରିପ୍ରିୟା' ନାମରେ ବିଭୂଷିତ ହୋଇଛି । ଏହା ଭକ୍ତି ଓ ମୁକ୍ତି ଉଭୟର ପ୍ରଦାନକାରୀ । ଏପରି ଯେଉଁ ତୁଳସୀ ତାହାକୁ ମୁଁ ଆପଣଙ୍କ ଚରଣାରବିନ୍ଦରେ ଅର୍ପଣ କରୁଛି । 'ତୁଳସୀଦଳାନି ସମର୍ପୟାମି' କହି ତୁଳସୀଦଳ ଚଢ଼ାଇବ । ତୁଳସୀ ଦଳ ପରେ ବେଲପତ୍ର ବି ଭଗବାନ୍‌ଙ୍କୁ ଅର୍ପଣ କରାଯାଇପାରେ । କେତେକ କେବଳ ଶିବଙ୍କୁ ବେଲପତ୍ର ଦେବା ପାଇଁ କୁହନ୍ତି । ଏମିତି ତ ତୁଳସୀ, ବେଲପତ୍ର, ନିମ୍ବ ଅଁଳା ଜଂବୀର ଏହି ପଞ୍ଚପତ୍ରର ନାମ ହେଉଛି ବିଲ୍ୱପତ୍ର । କିନ୍ତୁ ସୂର୍ଯ୍ୟଙ୍କୁ ବେଲପତ୍ର ଲାଗି କରିବ ନାହିଁ । ବେଲପତ୍ର ଲାଗି କରିବା ବେଳେ ଡେମ୍ଫ ଛିଣ୍ଡାଇ ତାହା ଲାଗି କରିବ ।

ଦୁର୍ବା : ଶ୍ୟାମଳ ଦୁର୍ବା ସଂଗ୍ରହକରି ଭଗବାନ୍‌ଙ୍କୁ ଅର୍ପଣ କରିବ । ଆଉ ପ୍ରାର୍ଥନା କରି କହିବ :

*ବିଷ୍ଣ୍ୱାଦି ସର୍ବଦେବାନାଂ ଦୂର୍ବେ ତ୍ୱଂ ପ୍ରୀତିଦା ଯଦା ।*
*କ୍ଷୀରସାଗର ସମ୍ଭୂତେ ବଂଶ ବୃଦ୍ଧିକରୀ ଭବ ॥*

ଅର୍ଥାତ୍, ''ହେ ଦୂର୍ବେ ! ତୁମେ ବିଷ୍ଣୁ ଆଦି ସକଳ ଦେବତାଙ୍କର ଅତି ପ୍ରିୟ । କ୍ଷୀରସାଗରରେ ତୁମେ ଭଗବାନ୍‌ଙ୍କୁ ଅର୍ପିତ ହୋଇ ଉତ୍ପନ୍ନ ହୋଇଛ । ତୁମେ ବଂଶ ବର୍ଦ୍ଧନକାରୀ । 'ଦୂର୍ବା ସମର୍ପୟାମି, ଦୂର୍ବାଙ୍କୁରାନ୍ ସମର୍ପୟାମି' ଏପରି କହି ଦୂବ ଲାଗି କରିବ । ଦେବୀ ପୂଜାରେ ଦୂବ ନିଷେଧ ।

## ୧୨. ଧୂପ

ଧୂପ ଅନେକ ପ୍ରକାରର ତିଆରି ହେଉଛି । ଆଜିକାଲି ଧୂପକାଠି ତ ସହଜ ଲଭ୍ୟ । ଘରେ କେତେକ ଗୁଗ୍‌ଗୁଳ, ଘିଅ, କର୍ପୂର, ଚନ୍ଦନ ଗୁଣ୍ଡ ମିଶାଇ କରନ୍ତି । ଏହା ଅତି ସୁଗନ୍ଧିତ । ଏଥିରେ ଅଗୁର, ତଗର, ଖସା, ଛାର, ଛବୀଲ ତଥା ନାଗରମୋଥା ଆଦି ସୁଗନ୍ଧିତ ଦ୍ରବ୍ୟ ମିଶାଇଲେ ତାହା ଦେବତାଙ୍କର ଅତି ପ୍ରିୟ ହୋଇଯାଏ ।

ଧୂପ କାଠିକୁ ଜଳାଇ, ଜଳୁଥିବା ଶିଖାକୁ ଲିଭାଇ ରଖିବା ଉଚିତ । ଫଳରେ କେବଳ ଧୂଆଁ ବାହାରେ । ଗୁଣ୍ଡ ଧୂପକୁ କୋଇଲା ରଡ଼ରେ ପକାଇ ଧୂଆଁ କରିବା ଦରକାର । ଧୂପ ଦେବାବେଳେ ପ୍ରାର୍ଥନାକରି କହିବ :

*ବନସ୍ପତି ରସୋଦ୍‌ଭୂତୋ ଗନ୍ଧାଢ୍ୟୋ ଗନ୍ଧ ଉତ୍ତମଃ ।*
*ଆଘ୍ରେୟଃ ସର୍ବ ଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, ଏହି ଧୂପ ବନସ୍ପତିର ରସରେ ତିଆରି, ଗନ୍ଧଯୁକ୍ତ, ଏବଂ ଅତି ସୁଗନ୍ଧିତ । ଦେବତାମାନେ ଏହି ଗନ୍ଧକୁ ଭଲ ପାଆନ୍ତି । ହେ ଦେବାଧିଦେବ ! ଆପଣଙ୍କୁ ମୁଁ ଦେଉଥିବା ଏହି ଧୂପ ଗ୍ରହଣ କରିବା ହୁଅନ୍ତୁ । 'ଇତି ଧୂପଂ ଆଘ୍ରାପୟାମି' ଏପରି ପ୍ରାର୍ଥନା କରି ଧୂପ ଦେବ । ଏହାପରେ ସମ୍ମୁଖରେ ଜଳୁଥିବା ଦୀପକୁ ଚାହିଁବ ।

## ୧୩. ଦୀପ

ଦେବ ପୂଜାରେ ଘିଅ ଦୀପ ପ୍ରଶସ୍ତ । ଘୃତ ନ ମିଳିଲେ ତେଲ ଦୀପ ଜାଳିବ । ଯେ ପର୍ଯ୍ୟନ୍ତ ପୂଜା ହେଉଥିବ ସାକ୍ଷୀ ରୂପରେ ଦୀପ ପ୍ରଜ୍ଜ୍ୱଳିତ ରହିଥିବା ଦରକାର । ଭଗବାନଙ୍କୁ ପ୍ରାର୍ଥନା କରି କହିବ:

*ଆଜ୍ୟ ନ ବର୍ତିଂସଂଯୁକ୍ତଂ ବହ୍ନିନା ଯୋଜ୍‌ତି ମୟା ।*
*ଦୀପଂ ଗୃହାଣ ଦେବେଶ ତ୍ରୈଲୋକ୍ୟତିମିରାପହ ।।*

ଅର୍ଥାତ୍, ''ହେ ଦେବେଶ ! ଘୃତ ସ୍ନିଗ୍ଧ ଏହି ବତୀ ମୁଁ ଅଗ୍ନି ଦ୍ୱାରା ପ୍ରଜ୍ଜ୍ୱଳିତ କରିଛି । ଆପଣ ତ ତ୍ରିଲୋକର ଅନ୍ଧକାର ଦୂରକାରୀ । ତେବେ ବି ମୋ ଦ୍ୱାରା ଅର୍ପିତ ଏହି ଘୃତଦୀପ ଆପଣ ସ୍ୱୀକାର କରନ୍ତୁ । 'ଇତି ଦୀପଂ ଦର୍ଶୟାମି' କହି ଦୀପକୁ ନିବେଦନ କରିବ । ଦୀପ ଅର୍ପଣ କରିବା ପରେ ପରେ ଶୁଦ୍ଧ ଜଳରେ ହାତ ଧୋଇବ । ଏହାପରେ ନୈବେଦ୍ୟ ଅର୍ପଣ କରିବ ।

## ୧୪. ନୈବେଦ୍ୟ

ନୈବେଦ୍ୟରେ ମିଠା ଜିନିଷ ନେବେ। ଘିଅରେ ତିଆରି ମିଠାଇ, ଲଡୁ, ମହନ୍‌ଭୋଗ, ମାଲପୁଆ ଆଦି ଭୋଗ କରିବାକୁ ହୋଇଥାଏ। ନ ମିଳିଲେ ଦହୀ ଓ ଚିନି ଭୋଗ କରିଦେବ। ମେଓ୍ଵା, ଫଳ ଆଦି ନୈବେଦ୍ୟ କରାଯାଇପାରେ। ନୈବେଦ୍ୟକୁ ସମ୍ମୁଖରେ ରଖି ବସ୍ତ୍ର ଘୋଡ଼ାଇ କହିବ :

*ଶର୍କରା ଘୃତଂ ସଂଯୁକ୍ତଂ ସ୍ଵାଦୁ ମଧୁରଂ ଚୋତ୍ତମମ୍ ।*
*ଉପହାରସମାଯୁକ୍ତଂ ନୈବେଦ୍ୟଂ ପ୍ରତିଗୃହ୍ୟତାମ୍ ॥*

ଅର୍ଥାତ୍, ''ହେ ଦେବ ! ଘୃତ, ଶର୍କରା ସଂଯୁକ୍ତ ଏହା ଅତି ସ୍ଵାଦିଷ୍ଟ ନୈବେଦ୍ୟ। ଏହା ଉପହାର ସଂଯୁକ୍ତ, ଏହାକୁ ଆପଣ ଗ୍ରହଣ କରନ୍ତୁ। 'ନୈବେଦ୍ୟ ସମର୍ପୟାମି' ଏପରି କହି ଭଗବାନ୍‌ଙ୍କ ଆଗରେ ରଖିବ। ସମ୍ମୁଖରେ ରଖିବା ବେଳେ ତହିଁରେ ତୁଳସୀ ପକାଇଦେବ। ତୁଳସୀ ନପକାଇଲେ ଭଗବାନ ତାହା କଦାପି ଗ୍ରହଣ କରିବେ ନାହିଁ। ତୁଳସୀ ହେଉଛି ଏକ ପ୍ରକାରର ଛାୟା। ତୁଳସୀ ପଡ଼ିଥିଲେ ସେ ଜାଣି ନିଅନ୍ତି ଯେ ଏହି ପ୍ରସାଦ ତାଙ୍କର। ଏହିଭଳି ନୈବେଦ୍ୟ ଅର୍ପଣ କରି ତିନି ଥର ଆଚମନ କରିବ।

**ଆଚମନ** : ନୈବେଦ୍ୟ ପରେ ପରେ ତିନିଥର ଆଚମନ କରାଇବାକୁ ହୁଏ। କହିବ 'ଆଚମନୀୟଂ ସମର୍ପୟାମି, ପ୍ରତ୍ୟାଚମନୀୟଂ ସମର୍ପୟାମି, ଶୁଦ୍ଧାଚମନୀୟଂ ସମର୍ପୟାମି' ଆଚମନ ଜଳ ଦେଇ ପ୍ରାର୍ଥନା କରିବ :

*ଅତି ତୃପ୍ତିକର ତୃୟଂ ସୁଗନ୍ଧି ଚ ପିବେଚ୍ଛୟା ।*
*ତ୍ଵୟି ତୃପ୍ତେ ଜଗତ୍ତୃପ୍ତଂ ନିତ୍ୟ ତୃପ୍ତେ ମହାତ୍ମନି ॥*

ଅର୍ଥାତ୍, ହେ ଦେବ ! ଏହି ଜଳ ଅତି ତୃପ୍ତିକାରୀ, ସୁଗନ୍ଧଯୁକ୍ତ, ଏହାକୁ ଆପଣ ଇଚ୍ଛାନୁସାରେ ପେଟ ପୂରା ପାନ କରନ୍ତୁ। କାରଣ ଆପଣ ତୃପ୍ତ ହୋଇଗଲେ ସଂପୂର୍ଣ୍ଣ ଜଗତ ତୃପ୍ତ ହୋଇଯିବ। ପ୍ରକୃତରେ ତ ଆପଣ ନିତ୍ୟ ତୃପ୍ତ ସନାତନ ଅଟନ୍ତି।

**ଋତୁଫଳ** : ଏହାପରେ ଋତୁ ଅନୁସାରେ ଯେଉଁ ଫଳ ମିଳେ ତାହା ଭଗବାନଙ୍କୁ ଅର୍ପଣ କରି ପ୍ରାର୍ଥନା କରିବ:

*ଇଦଂ ଫଳଂ ମୟା ଦେବ ସ୍ଥାପିତଂ ପୁରତସ୍ତବ ।*
*ତେନ ମେ ସଫଳାବାପ୍ତିର୍ଭବେଜ୍ଜନ୍ମନି ଜନ୍ମନି ॥*

ଅର୍ଥାତ୍, ହେ ଦେବ ! ଏହି ଫଳ ମୁଁ ଆପଣଙ୍କ ସମ୍ମୁଖରେ ରଖି ଦେଇଛି। ଏଇଥିରେ ମୋତେ ଜନ୍ମଜନ୍ମାନ୍ତରରେ ସଫଳତା ପ୍ରାପ୍ତ ହୋଇଥାଉ। 'ଫଳଂ ସମର୍ପୟାମି' କହି ପୁଣି ଆଚମନ କରାଇବ।

**ତାମ୍ବୂଳ ପୂଙ୍ଗୀଫଳ** : ନୈବେଦ୍ୟ ପରେ ପରେ ମୁଖ ଶୁଦ୍ଧି ନିମନ୍ତେ ପାନ ଗୁଆ ଅର୍ପଣ କରିବ । ଆଉ ପ୍ରାର୍ଥନା କରି କହିବ :

*ପୂଂଗୀ ଫଳ ମହାଦିବ୍ୟଂ ନାଗବଲ୍ଲୀ ଦଳୈର୍ୟୁତମ୍ ।*
*ଏଲାଚୂର୍ଣାଦି ସଂଯୁକ୍ତଂ ତାମ୍ବୂଲଂ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, ଏହି ପାନ ପତ୍ର ଅତି ଦିବ୍ୟ । ଏଥିରେ ଗୁଆ ଓ ଅଳେଇଚ ଆଦିର ଚୂର୍ଣ୍ଣ ଦିଆହୋଇଛି । ହେ ଦେବ ! ଆପଣ ଏହି ଗୁଆ ସହିତ ପାନ ଗ୍ରହଣ କରନ୍ତୁ । ଏପରି କହି ପାନ ଅର୍ପଣ କରିବ । ଏହାପରେ ଦକ୍ଷିଣାଦ୍ରବ୍ୟ ଭଗବାନଙ୍କ ପାଖରେ ରଖିବ ।

## ୧୫. ଦକ୍ଷିଣା

ସୁନା, ରୁପା ଅଥବା ତମ୍ବା ଯେଉଁଭଳି ଦକ୍ଷିଣା ଦେବାର ଶକ୍ତିଥିବ, ଅଥବା ଅକ୍ଷତ, ପତ୍ର, ପୁଷ୍ପ, ଫଳ- ଅର୍ପଣ କରି ପ୍ରାର୍ଥନା କରିବ :

*ପୂଜାଫଳ ସମୃଦ୍ଧ୍ୟର୍ଥ ଦକ୍ଷିଣା ଚ ତବାଗ୍ରତଃ ।*
*ସ୍ଥାପିତା ତେନ ମେ ପ୍ରୀତଃ ପୂର୍ଣାନ୍ କରୁ ମନୋରଥାନ୍ ।।*

ଅର୍ଥାତ୍, ପୂଜାଫଳର ବୃଦ୍ଧି ନିମନ୍ତେ ହେ ଦେବ ! ଏହି ଦକ୍ଷିଣା ମୁଁ ତୁମ ଆଗରେ ଥୋଉଛି । ଏଥିରେ ମୋ ଉପରେ ପ୍ରସନ୍ନ ହୋଇ ମୋର ସମସ୍ତ ମନୋରଥ ପୂରଣ କରନ୍ତୁ । 'ଇତି ଦକ୍ଷିଣା ଦ୍ରବ୍ୟଂ ସମର୍ପୟାମି' ଏପରି କହି ଦକ୍ଷିଣା ରଖିବା ଦରକାର ।

## ୧୬. ଆଳତି

ଏବେ ପୂଜା ସରିବା ବେଳକୁ ଆଳତି କରିବାକୁ ହୋଇଥାଏ । ଗୋଟିଏ, ତିନୋଟି ଅଥବା ପାଞ୍ଚୋଟି ବତୀ ଜାଳି ଭଗବାନଙ୍କର ଆଳତି କରିବାକୁ ହୁଏ । ପାଦ ତଳୁ ଆଳତି ଆରମ୍ଭ କରିବାକୁ ହୋଇଥାଏ । ପଦ ଭାଗରେ ଚାରିଥର ଆଳତି କରି, ନାଭିରେ ଦୁଇଥର, ମୁଖରେ ଥରେ ଅଥବା ତିନିଥର ଆଳତି କରାହୁଏ । ସର୍ବାଙ୍ଗର ଅତି କମରେ ସାତ ଥର ଅଥବା ତା'ଠାରୁ ଅଧିକ ଆଳତି କରାଯାଏ । ଆଳତି କରିବା ବେଳେ ଅତି ବିନୟର ସହିତ କହୁଥିବା ଦରକାର:

*ଚନ୍ଦ୍ରାଦିତ୍ୟୌ ଚ ଧରଣୀ ବିଦ୍ୟୁଦାଗ୍ନିସ୍ତୈବ ଚ ।*
*ତ୍ୱମେବ ସର୍ବ ଜ୍ୟୋତୀଂଷି ଆର୍ତିକ୍ୟଂ ପ୍ରତିଗୃହ୍ୟତାମ୍ ।।*

ଅର୍ଥାତ୍, "ଚନ୍ଦ୍ର, ସୂର୍ଯ୍ୟ, ପୃଥିବୀ, ବିଦ୍ୟୁତ୍, ଅଗ୍ନି ତଥା ସମଗ୍ର ଜ୍ୟୋତି ହେଉଛନ୍ତି ଆପଣ । ହେ ପ୍ରଭୁ ! ମୋ ଆଳତି ଗ୍ରହଣ କରନ୍ତୁ ।" ବତୀ ଆଳତି ପରେ ପରେ କର୍ପୂର ଆଳତି ଗ୍ରହଣ କରିବା ବିଧି ।

**କର୍ପୂର ଆଳତି** : କର୍ପୂର ଜାଳି ଆଳତି କରୁଥିବା ସମୟରେ ବିନତୀ କରିବାକୁ ହୋଇଥାଏ : "ହେ ପ୍ରଭୁ ! ଏହି କର୍ପୂର କଦଳୀ ଖୁମ୍ବରୁ ଉତ୍ପନ୍ନ ହୋଇଥାଏ । ଏହାର ପ୍ରଦୀପ କରି ମୁଁ ଆଳତି କରୁଛି । ହେ ପ୍ରଭୁ ! ଆପଣ ମୋତେ ଦେଖୁଥାନ୍ତୁ ଓ ମୋର ବରଦାତା ହୁଅନ୍ତୁ ।"

**ସ୍ତୁତି ପୁଷ୍ପାଞ୍ଜଳି** : ଆଳତି ପରେ ପରେ ଶଙ୍ଖରେ ଜଳ ପୂରଣ କରି ଠାକୁରଙ୍କୁ ସମ୍ମୁଖରେ ବୁଲାଇ ଆଣି ସେହି ଜଳକୁ ଭକ୍ତଙ୍କ ଉପରେ ଛିଞ୍ଚିବ । ଏହା ପରେ ସ୍ତୁତି କରିବ । ସ୍ତୁତିରେ ଅନେକ ପ୍ରାକୃତ ପଦ ଅଛି । ସେଥିମଧ୍ୟରୁ ଯାହାକୁ ଯେଉଁଟି ପ୍ରିୟ ସେ ପଦରେ ମନ୍ତ୍ର ତଥା ଶ୍ଳୋକ ଉଚ୍ଚାରଣ ପୂର୍ବକ ସ୍ତୁତି କରିବ :

*ତ୍ୱମେବ ମାତା ଚ ପିତା ତ୍ୱମେବ*
*ତ୍ୱମେବ ବନ୍ଧୁ ଚ ସଖା ତ୍ୱମେବ*
*ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ ।*
*ତ୍ୱମେବ ସର୍ବଂ ମମ ଦେବ ଦେବ ॥୧॥*

*ପାପୋଽହଂ ପାପକର୍ମାହଂ ପାପାତ୍ମା ପାପସମ୍ଭବଃ ।*
*ତ୍ରାହି ମାଂ ପୁଣ୍ଡରୀକାକ୍ଷ ସର୍ବ ପାପହରୋ ଭବ ॥୨॥*

*ଧ୍ୟେୟଂ ସଦା ପରିଭବଘ୍ନମଭୀଷ୍ଟଦୋହମ୍*
*ତୀର୍ଥାସ୍ପଦଂ ଶିବବିରଞ୍ଚିନୁତଂ ଶରଣ୍ୟମ୍ ।*
*ଭୃତ୍ୟାର୍ତିହଂ ପ୍ରଣତପାଳ ଭବାବ୍ଧିପୋତମ୍*
*ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ ॥୩॥*

*ତ୍ୟକ୍ତ୍ୱା ସୁଦୁସ୍ତ୍ୟଜ ସୁରେପ୍ସିତ ରାଜ୍ୟଲକ୍ଷ୍ମୀମ୍*
*ଧର୍ମିଷ୍ଠ ଆର୍ଯ୍ୟବଚସା ଯଦ୍‌ଗାଦରଣ୍ୟମ୍ ।*
*ମାୟାମୃଗଂ ଦୟିତ ୟେପ୍ସିତମନ୍ୱଧାବଦ୍‌*
*ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ ॥୪॥*

*କୃଷ୍ଣାୟ ବାସୁଦେବାୟ ହରୟେ ପରମାତ୍ମନେ ।*
*ପ୍ରଣତକ୍ଲେଶନାଶାୟ ଗୋବିନ୍ଦାୟ ନମୋ ନମଃ ॥୫॥*

ଅର୍ଥାତ୍, "ହେ ଦେବ ! ତୁମେ ହିଁ ମୋ ମାତା, ପିତା, ବନ୍ଧୁ, ବାନ୍ଧବ, ମିତ୍ର, ବିଦ୍ୟା ତଥା ଧନ । କେତେ ବା କହିବି, ତୁମେ ହେଉଛ ମୋ ଦେବ ଦେବ ! ମୋର ସର୍ବସ୍ୱ । ମୁଁ ପାପୀ, ଯେଉଁ କର୍ମ କରୁଛି ତାହା ପାପମୟ । ପାପରୁ ହିଁ ଉତ୍ପନ୍ନ ହୋଇଛି, ମୋ ମନ ମଧ୍ୟ ପାପମୟ । ଆପଣଙ୍କ ନାମ ହରି । ଆପଣ ସକଳ ପାପ ହରଣ କରିବାକୁ ସମର୍ଥ । ଏଣୁ

ହେ ପୁଣ୍ଡରୀକାକ୍ଷ ! ମୋର ରକ୍ଷା କରନ୍ତୁ । ରକ୍ଷାକରନ୍ତୁ । ମୋତେ ନିଷ୍ପାପ ବିଶୁଦ୍ଧ କରିଦିଅନ୍ତୁ । ହେ ମହାପୁରୁଷ ! ପ୍ରଣତପାଳ ! ଆପଣଙ୍କ ଚରଣାରବିନ୍ଦ ସର୍ବଦା ଧ୍ୟାନଯୋଗ୍ୟ । ପରାଭବ ନାଶକରୀ, ମୋହନାଶକ, ଇଷ୍ଟ ବସ୍ତୁ ପ୍ରଦାନକାରୀ, ତୀର୍ଥ ସ୍ୱରୂପ, ଶିବ ଓ ବ୍ରହ୍ମାଦି ଦେବ ସଦା ଯାହାଙ୍କୁ ବନ୍ଦନା କରନ୍ତି, ଶରଣ ପ୍ରଦାନକାରୀ, ଭୃତ୍ୟଙ୍କ ଦୁଃଖ ଦୂରକାରୀ, ତଥା ସଂସାର ସମୁଦ୍ର ନିମନ୍ତେ ପୋତ ସଦୃଶ । ହେ ମହାପୁରୁଷ ! ହେ ଧର୍ମିଷ୍ଠ ! ଆପଣଙ୍କ ଚରଣାରବିନ୍ଦ ପିତା ଦଶରଥଙ୍କ ପ୍ରତିଜ୍ଞା ରକ୍ଷାକରି ଅତି ଦୁସ୍ତ୍ୟଜ୍ୟ ରାଜ୍ୟଲକ୍ଷ୍ମୀଙ୍କୁ ଛାଡ଼ି ବଣକୁ ନେଇଯାଇଥିଲା । ଯାହାକୁ ଦେବଗଣ ଇଚ୍ଛା କରିଥାଆନ୍ତି, ସେହି ଚରଣାରବିନ୍ଦ ନିଜର ପ୍ରିୟା ସୀତାଙ୍କୁ ଅଭୀଷ୍ଟ କପଟ ମୃଗ ଧରିବା ପାଇଁ ତା' ପଛେ ପଛେ ଦୌଡ଼ିଥିଲା । ଆପଣଙ୍କର ସେହି ପାଦପଦ୍ମକୁ ମୁଁ ପ୍ରଣାମ କରୁଛି । ଶ୍ରୀକୃଷ୍ଣଙ୍କୁ ନମସ୍କାର କରୁଛି । ପରମାତ୍ମାଙ୍କୁ ନମସ୍କାର କରୁଛି । ପ୍ରଣତଙ୍କର କ୍ଲେଶ ନାଶକାରୀଙ୍କୁ ନମସ୍କାର କରୁଛି । ଶ୍ରୀ ଗୋବିନ୍ଦଙ୍କୁ ବାରମ୍ବାର ନମସ୍କାର କରୁଛି ।''

ଠିକ୍ ଏହିଭଳି ସ୍ତୁତି କରିବା ନିହାତି ଆବଶ୍ୟକ ନୁହେଁ । ଯେଉଁ ପଦ ଓ ବାକ୍ୟରେ ହୃଦୟ ଦ୍ରବିତ ହୋଇଯାଉଥିବ ହୃଦୟ ଉପରେ ଅଧିକ ପ୍ରଭାବ ପକାଉଥିବ, ଯାହା ଅନ୍ତଃକରଣକୁ ସ୍ପର୍ଶ କରୁଥିବ ସେଥିରେ ସ୍ତୁତି କରିବା ଉଚିତ ।

**ପୁଷ୍ପାଞ୍ଜଳି** : ସ୍ତୁତିଗାନ କରିବା ପରମୁହୂର୍ତ୍ତରେ ହାତରେ ଧରିଥିବା ଫୁଲକୁ ଭଗବାନଙ୍କ ପାଦତଳେ ଅର୍ପଣ କରିବ । ଅର୍ପଣ କରିବାର ପୂର୍ବକ୍ଷଣରେ ବିନୀତ ନିବେଦନ କରି କହିବ :

*ନାନା ସୁଗନ୍ଧି ପୁଷ୍ପାଣି ଯଥା କାଲୋଦ୍‌ଭବାନି ଚ ।*
*ପୁଷ୍ପାଞ୍ଜଳିର୍ମୟା ଦତ୍ତୋ ଗୃହାଣ ପରମେଶ୍ୱର ॥*

ଅର୍ଥାତ୍, ''ଏବେ ମୁଁ ଯେଉଁଭଳି ସୁଗନ୍ଧିତ ପୁଷ୍ପ ପାଇଛି, ତାହାର ପୁଷ୍ପାଞ୍ଜଳି ମୁଁ ଆପଣଙ୍କୁ ଅର୍ପଣ କରୁଛି । ହେ ପରମେଶ୍ୱର ! ଆପଣ ଏହାକୁ ଗ୍ରହଣ କରନ୍ତୁ ।'' ପ୍ରଭୁଙ୍କ ପାଦପଦ୍ମରେ ପୁଷ୍ପାଞ୍ଜଳି ଅର୍ପଣ କରିବା ପର ମୁହୂର୍ତ୍ତରେ ସାଷ୍ଟାଙ୍ଗ ପ୍ରଣାମ କରିବାକୁ ହୋଇଥାଏ ।

**ପ୍ରଣାମ** : ନାନା ପ୍ରକାର ଭାବରେ ଠାକୁରଙ୍କୁ ପ୍ରଣାମ କରାଯାଏ । ପ୍ରଣାମର ଅର୍ଥ ପ୍ରଣତ ହୋଇଯିବା, ନଇଁ ପଡ଼ିବା । ହାତଯୋଡ଼ି ମୁଣ୍ଡ ନୁଆଇଁବା ହେଉଛି ଏକ ପ୍ରକାର ପ୍ରଣାମ । ସାଷ୍ଟାଙ୍ଗ ଭୂମିରେ ପେଟାଇ ମୁଣ୍ଡିଆ ମାରିବା ବି ଏକ ପ୍ରକାର ପ୍ରଣାମ । ଏପରି ପ୍ରଣାମ ବେଳେ ଯୋଡ଼ ହସ୍ତ ଆଗରେ ରହିଥାଏ । ଏପରି ପ୍ରଣାମ ଆଠ ଅଙ୍ଗରେ କରାହୁଏ । ଦୁଇ ହାତ, ଦୁଇ ଗୋଡ଼, ହୃଦୟ, ମସ୍ତକ, ମନ ଓ ବାଣୀ : ଏଣୁ ଏହାକୁ ଅଷ୍ଟାଙ୍ଗ ପ୍ରଣାମ କୁହାଯାଏ । **ସ୍ତ୍ରୀମାନଙ୍କ ପାଇଁ ସାଷ୍ଟାଙ୍ଗ ପ୍ରଣାମ ନିଷେଧ । ସେମାନଙ୍କ**

**ବକ୍ଷସ୍ଥଳ ଭୂମି ସ୍ପର୍ଶ କରିବା ଅନୁଚିତ ।** ଆଣ୍ଠୁମାଡ଼ି ଦୁଇହାତକୁ ଯୋଡ଼ି ବକ୍ଷସ୍ଥଳରେ ଲଗାଇ ଅଣ୍ଠାବାଙ୍କି ମୁଣ୍ଡ ଲଗାଇ ପ୍ରଣାମ କରିବାକୁ ମୁଣ୍ଡିଆ ମାରିବା କୁହନ୍ତି । ପାଦତଳେ ପ୍ରଣାମ କରିବା ସମୟରେ ମୁଣ୍ଡକୁ ପାଦରେ ରଖାଯାଏ । ଡାହାଣ ହାତରେ ଦକ୍ଷିଣ ପାଦ ଓ ବାମ ହାତରେ ବାମ ପାଦ ସ୍ପର୍ଶ କରି କହିବା ଉଚିତ :

*ପଦଯୋଃ ପତିତଂ ଦୀନଂ ଭକ୍ତି ହୀନଂ ନିରାଶ୍ରିତମ୍ ।*
*ପ୍ରପନ୍ନଂ ପାହି ମାମୀଶ ଭୀତଂ ମୃତ୍ୟୁ ଗ୍ରହାର୍ଣବାତ୍ ।।*

ଅର୍ଥାତ୍, ''ହେ ପ୍ରଭୁ ! ମୃତ୍ୟୁରୂପୀ କାଳ (କୁମ୍ଭୀର) ମୁହଁ ମେଲାଇ ବସିଥିବା ଦେଖି ସଂସାର ସାଗରକୁ ମୁଁ ଭୟ କରୁଛି । ମୁଁ ପ୍ରପନ୍ନ । ଆପଣଙ୍କ ଶରଣ ଲୋଡୁଛି । ଆପଣ ମୋତେ ରକ୍ଷା କରନ୍ତୁ । ଏପରି କହି ପ୍ରଣାମ କରିବା ପରେ ପ୍ରଦକ୍ଷିଣା କରିବାକୁ ହୁଏ ।

**ପ୍ରଦକ୍ଷଣ** : ପୂଜା ସରିବା ପରେ ପରେ ପ୍ରଦକ୍ଷଣ କରିବ । ଦକ୍ଷିଣାବର୍ତ୍ତ ଭାବରେ ଠାକୁରଙ୍କୁ ବୁଲି ଆସିବାକୁ ପ୍ରଦକ୍ଷଣ କୁହାଯାଏ । ସାଧାରଣତଃ ତିନିଥର ପ୍ରଦକ୍ଷିଣ କରାଯାଏ । ବିଷ୍ଣୁ ଭଗବାନଙ୍କୁ ଚାରିଥର, ଶିବଙ୍କୁ ଅର୍ଦ୍ଧପରିକ୍ରମା କରାଯାଏ । **ଶିବଙ୍କର ଜଳଧାରକୁ ଲଂଘନ କରିବା ନିଷେଧ ।** କେତେକ ଶହେ ଆଠଥର ପ୍ରଦକ୍ଷଣ କରନ୍ତି । ପ୍ରଦକ୍ଷଣ କରିବା ସମୟରେ କହୁଥିବା ଉଚିତ ଯେ,

*ଯାନି କାନି ଚ ପାପାନି ଜନ୍ମାନ୍ତର କୃତାନି ଚ ।*
*ତାନି ତାନି ପ୍ରଣଶ୍ୟନ୍ତି ପ୍ରଦକ୍ଷିଣୟା ପଦେ ପଦେ ।।*

ଅର୍ଥାତ୍, ''ଏହି ଜନ୍ମର ଅଥବା ପୂର୍ବ ଜନ୍ମର ଯାହା ବି ପାପ ଥାଉ, ପ୍ରଦକ୍ଷିଣର ପ୍ରତ୍ୟେକ ପଦରେ ଏହା ଗୋଟି ଗୋଟି ନଷ୍ଟ ହୋଇଯାଉ ।

**କ୍ଷମା ପ୍ରାର୍ଥନା** : ପୂଜା ସରିଲା । ତେବେ ପୂଜାରେ କିଛି ନା କିଛି ତ୍ରୁଟି ରହିଯାଇଥିବାର ସମ୍ଭାବନା ଥାଏ । କାରଣ ମଣିଷ ପ୍ରମାଦ କରେ, କେବଳ ଭଗବାନ ହେଉଛନ୍ତି ପ୍ରମାଦ ଶୂନ୍ୟ । ପ୍ରମାଦ ଶୂନ୍ୟଙ୍କୁ ଯେତେ ନିଷ୍ଠାର ସହିତ ପୂଜା କଲେ ବି ପ୍ରମାଦ ରହିଯାଏ । କିଛି ନା କିଛି ଦୋଷ ତ୍ରୁଟି, ଅପରାଧ ହୋଇଯାଏ । ଏହି ଦୋଷ ନିବାରଣ ପାଇଁ ପ୍ରାର୍ଥନା କରିବା ଉଚିତ :

*ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ଜନାର୍ଦ୍ଦନ ।*
*ଯତ୍ ପୂଜିତଂ ମୟା ଦେବ ପରିପୂର୍ଣ୍ଣ ତଦସ୍ତୁ ମେ ।।*
*ଆବହନ ନ ଜାନାମି ନ ଜାନାମି ବିସର୍ଜନମ୍ ।*
*ପୂଜାଂ ଚୈବ ନ ଜାନାମି କ୍ଷମସ୍ୱ ପରମେଶ୍ୱର ।।*
*ଅନ୍ୟଥା ଶରଣଂ ନାସ୍ତି ତ୍ୱମେବ ଶରଣଂ ମମ ।*
*ତସ୍ମାତ୍ କାରୁଣ୍ୟଭାବେନ ରକ୍ଷ ମାଂ ପରମେଶ୍ୱର ।।*

ଅର୍ଥାତ୍, ''ହେ ଜନାର୍ଦ୍ଦନ ! ହେ ଦେବ ! ମନ୍ତ୍ର, କ୍ରିୟା ତଥା ଭକ୍ତି ହୀନ ମୁଁ ଯେଉଁଭଳି ପୂଜା କରିଛି, ସେହି ଅପୂର୍ଣ୍ଣ ପୂଜା ଆପଣଙ୍କ ଅନୁଗ୍ରହରେ ପରିପୂର୍ଣ୍ଣ ହୋଇଯାଉ । ମୁଁ ଆବାହନ ବିଧି ଜାଣିନାହିଁ, ବିସର୍ଜନ କରିବା ବି ଜାଣିନାହିଁ । ବିଧି ଅନୁସାରେ ପୂଜା କରିବା ବି ଜାଣି ନାହିଁ । ଏଣୁ ଯେଉଁସବୁ ଅପରାଧ ହୋଇଯାଇଛି, ହେ ପରମେଶ୍ୱର ! କ୍ଷମା କରନ୍ତୁ । ହେ ପରମେଶ୍ୱର ! ଆପଣଙ୍କ ବ୍ୟତୀତ ମୁଁ ଅନ୍ୟ କାହାର ଶରଣରେ ନାହିଁ । ଆପଣ ମୋର ଏକମାତ୍ର ଶରଣଦାତା । ଏଣୁ କାରୁଣ୍ୟଭାବରେ ମୋତେ ରକ୍ଷା କରନ୍ତୁ ।

**ସମର୍ପଣ :** ଯେ କୌଣସି ଭଜନ, ପୂଜନ ବା କର୍ମ କରିବା ପରେ ପରିଶେଷରେ ତାହାକୁ ଭଗବାନଙ୍କୁ ଅର୍ପଣ କରିଦେଉଥିବା ଉଚିତ । କାରଣ ଭଗବାନ୍ ଅନନ୍ତ ଆଉ ତାଙ୍କ ଭଣ୍ଡାରରେ ପହଞ୍ଚିଗଲେ ତାହା ଅନନ୍ତତାରେ ମିଶିଯାଏ । ଏଣୁ କ୍ଷମା ପ୍ରାର୍ଥନା ପରେ ପରେ କହିବା ଉଚିତ :

*କାୟେନବାଚା ମନସେନ୍ଦ୍ରିୟୈର୍ବା*
*ବୁଦ୍ଧ୍ୟାତ୍ମନା ବାନୁସୃତସ୍ୱଭାବାତ୍ ।*
*କରୋମି ଯଦ୍ୟତ୍ ସକଳଂ ପରସ୍ମୈ*
*ନାରାୟଣାୟେତି ସମର୍ପୟାମି ॥* ✡

ଅର୍ଥାତ୍, ''ତନୁ, ମନ, ବଚନ, ଇନ୍ଦ୍ରିୟ, ବୁଦ୍ଧି ତଥା ଅହଂକାର ବଶୀଭୂତ ହୋଇ ମୁଁ ଯାହା କିଛି କରିଛି ଅଥବା କରୁଛି ସେ ସମସ୍ତଙ୍କୁ ଶ୍ରୀମନ୍ନାରାୟଣଙ୍କୁ ସମର୍ପଣ କରି ଦେଉଛି । ଏହି ପୂଜାରେ ଶ୍ରୀମନ୍ନାରାୟଣ ବିଷ୍ଣୁ ଭଗବାନ ପ୍ରସନ୍ନ ହୁଅନ୍ତୁ ।

**ବିସର୍ଜନ :** ଯେଉଁ ଦେବତାଙ୍କୁ ଆବାହନ କରାଯାଏ, ବିଧିବତ୍ ପୂଜା କରିବାପରେ ତାଙ୍କୁ ବିଦାୟ କରିବାକୁ ହୁଏ । ଏହା ବିଦାୟ ଦେବା ବିଧିକୁ ବିସର୍ଜନ କୁହାଯାଏ । ପ୍ରତିଦିନ ପୂଜା କରୁଥିବା ଛାୟାଚିତ୍ର, ଶାଳଗ୍ରାମ, ପ୍ରତିଷ୍ଠା କରିଥିବା ମୂର୍ତ୍ତିରେ ଆବାହନ କରାଯାଏ ନାହିଁ । ତେଣୁ ବିସର୍ଜନ କରାହୁଏ ନାହିଁ । କାରଣ ତାହା ଅର୍ଚ୍ଚା ବିଗ୍ରହାବତାର ରୂପରେ ସର୍ବଦା ବିରାଜମାନ କରୁଥା'ନ୍ତି । ତାଙ୍କୁ ଡକାଯାଏ ନାହିଁ କି ବିଦା କରାହୁଏ ନାହିଁ । ନିତ୍ୟ ପ୍ରତିଷ୍ଠିତ ହେତୁ ତାଙ୍କୁ ପୂଜା କରାହୁଏ । ଯାହାଙ୍କୁ ବିସର୍ଜନ କରିବାକୁ ହୋଇଥାଏ ତାଙ୍କୁ ଗନ୍ଧ, ଅକ୍ଷତ, ଧୂପ, ଦୀପ, ନୈବେଦ୍ୟ ଦ୍ୱାରା ଉତ୍ତର ପୂଜନ କରି ବିସର୍ଜନ କରିବାକୁ ହୁଏ । ଏବଂ ନିବେଦନ କରିବ :

*ଗଚ୍ଛ ଗଚ୍ଛ ସୁରଶ୍ରେଷ୍ଠ ସ୍ୱସ୍ଥାନେ ପରମେଶ୍ୱର ।*
*ଇଷ୍ଟକାମ ସମୃଦ୍ଧ୍ୟର୍ଥ ପୁନରାଗମନାୟ ଚ ॥*

---

✡ ଅନେନ ପୂଜନେନ ଶ୍ରୀମନ୍ନାରାୟଣ ବିଷ୍ଣୁ ଭଗବାନ୍ ଶ୍ରୀକୃଷ୍ଣଃ ପ୍ରୀୟତାମ୍ । ଇଦଂ ନ ମମ ॥ - ଏପରି ପରିଶେଷରେ କହିବ ।

ଅର୍ଥାତ୍, ''ହେ ସୁରଶ୍ରେଷ୍ଠ ! ହେ ପରମେଶ୍ୱର ! ଇଷ୍ଟକାମ ସମୃଦ୍ଧି ନିମିତ୍ତ ପୁନଃ ଆବହନ କରିବା ସମୟରେ ପୁଣି ଆସିବାପାଇଁ ଆପଣ ଆପଣଙ୍କ ଧାମକୁ ଯାଆନ୍ତୁ ।'' ଏପରି କହି ଅକ୍ଷତ ପକାଇବ । ଏଥର ଭଗବାନ ଚାଲିଗଲେ ।

## ନିର୍ମାଲ୍ୟ ଧାରଣ

ଠାକୁରଙ୍କୁ ଲାଗି ହୋଇଥିବା ମାଳା, ତାଙ୍କ ପାଦରେ ଲାଗିହୋଇଥିବା ତୁଳସୀ ତଥା ପୁଷ୍ପ ଆଣି ମୁଣ୍ଡରେ ଲଗାଇବା ଉଚିତ । ଚନ୍ଦନକୁ ମସ୍ତକରେ ଲଗାଇ ପ୍ରାର୍ଥନା କରି କହିବ :

*ତ୍ୱୟୋପଭୁକ୍ତ ସ୍ରଗ୍‌ଗନ୍ଧୋବାସୋଂଲଂକାର ଚର୍ଚ୍ଚିତା ।*
*ଉଚ୍ଛିଷ୍ଟ ଭୋଜିନୋ ଦାସାସ୍ତବ ମାୟାଂ ଜୟେମହି ॥*

ଅର୍ଥାତ୍, ''ହେ ଭଗବନ୍ ! ଆପଣଙ୍କୁ ଲାଗି ହୋଇଥିବା ମାଳା, ଆପଣଙ୍କ ଶ୍ରୀଅଙ୍ଗରେ ଲାଗି ହୋଇଥିବା ଚନ୍ଦନ ତଥା ଆପଣଙ୍କ ବସ୍ତ୍ର ଓ ଅଳଙ୍କାରକୁ ଧାରଣ କରିବା ଦ୍ୱାରା ଆଉ ଆପଣଙ୍କର ଅବଶିଷ୍ଟ ଉଚ୍ଛିଷ୍ଟ ପ୍ରସାଦ ଭୋଜନକରି ଆମେମାନେ, ଆପଣଙ୍କ ଦାସ, ଆପଣଙ୍କ ଦୁରତୟା ମାୟାକୁ ଅବଶ୍ୟ ଜିତି ପାରିବୁ ।'' ଏହିଭଳି ପ୍ରସାଦୀ ମାଳ, ଫୁଲ, ଚନ୍ଦନ ଗ୍ରହଣ କରିବ ।

## ତୁଳସୀ ଗ୍ରହଣ

ଠାକୁରଙ୍କ ଚରଣାରବିନ୍ଦରେ ଲାଗି ହୋଇଥିବା ତୁଳସୀକୁ ଗ୍ରହଣକରି ସେବା କରିବା ଉଚିତ । କାରଣ ପୂଜାପରେ ଯିଏ ଠାକୁରଙ୍କୁ ଲାଗିହୋଇଥିବା ତୁଳସୀଦଳ ଭକ୍ଷଣ କରେ, ଶତ ଚାନ୍ଦ୍ରାୟଣ ଠାରୁ ଅଧିକ ଫଳ ମିଳିଥାଏ ।

*ପୂଜାନନ୍ତର ବିଷ୍ଣୋରର୍ପିତ ତୁଳସୀ ଦଳମ୍ ।*
*ଭକ୍ଷନେ ଦେହ ଶୁଦ୍ଧ୍ୟର୍ଥ ଚନ୍ଦ୍ରାୟଣଶତାଧିକମ୍ ॥*

## ଚରଣାମୃତ

ଠାକୁରଙ୍କୁ ସ୍ନାନ କରିବା ପରେ ତାଙ୍କର ପଦଧୌତ ତୁଳସୀ ମିଶ୍ରିତ ଚରଣ ଉଦକ ଶ୍ରଦ୍ଧାର ସହିତ ଆଣି ଅତି ଆଦରର ସହିତ ଗ୍ରହଣ କରିବା ଉଚିତ । ପ୍ରତ୍ୟେକ କର୍ମରେ ଅତ୍ୟଧିକ ଶ୍ରଦ୍ଧା ଥିବା ଆବଶ୍ୟକ । ଚରଣାମୃତ ସେବନ କରିବାବେଳେ ଏହାର ମାହାତ୍ମ୍ୟ ଗାନ କରିବାକୁ ହୋଇଥାଏ :

*ଅକାଳ ମୃତ୍ୟୁହରଣ ସର୍ବବ୍ୟାଧିବିନାଶନମ୍ ।*
*ବିଷ୍ଣୁ ପାଦୋଦକ ପୀତ୍ୱା ପୁନର୍ଜନ୍ମ ନ ବିଦ୍ୟତେ ॥*

ଅର୍ଥାତ୍, ''ଠାକୁରଙ୍କର ଏହି ଚରଣାମୃତ ଅକାଳମୃତ୍ୟୁ ହରଣକାରୀ, ସର୍ବବ୍ୟାଧି

ବିନାଶକାରୀ- ଏପରି ମହାନ୍ ବିଷ୍ଣୁଙ୍କ ପାଦୋଦକ ଯିଏ ପାନ କରେ ସଂସାରରେ ତା'ର ପୁନର୍ଜନ୍ମ ହୁଏ ନାହିଁ।'' ଏପରି ଭାବନା କରି ତିନିଥର ଚରଣାମୃତ ସେବା କରିବା ଉଚିତ। ଚରଣାମୃତ ପାନ କରିବାବେଳେ ଯତ୍ନ ନେବାକୁ ହେବ ଯେପରି ସେଥିରୁ ଗୋଟିଏ ଟୋପା ବି ଭୂମିରେ, ତଳେ ନ ପଡ଼େ। ଠାକୁରଙ୍କ ଚରଣାମୃତରେ ଲୋକଙ୍କ ପାଦ ପଡ଼ିଲେ ଭୟଙ୍କର ପାପ ହୋଇଥାଏ। ଏଣୁ ହାତ ତଳେ ଲୁଗାରଖି ବାମ ହାତ ଉପରେ ଦକ୍ଷିଣ ହାତର ପାପୁଲିକୁ ଡଙ୍ଗାକୃତିରେ ମେଲାଇ ପାଦୋଦକ ଗ୍ରହଣ କରିବା ଉଚିତ। ଥର ଥର କରି ତିନିଥର ପାଦୋଦକ ପାନ କରିବାକୁ ହୋଇଥାଏ। ଏହା ପରେ ହାତ ପାପୁଲିକୁ ମୁଣ୍ଡରେ ବୋଳି ଦେବା ଉଚିତ। ଚରଣାମୃତର ଅବଶିଷ୍ଟାଂଶ ମସ୍ତକରେ ଧାରଣ କରିବା ଉଚିତ।

## ପଞ୍ଚାମୃତ ଗ୍ରହଣ

ଠାକୁରଙ୍କୁ ଲାଗି ହୋଇଥିବା ପଞ୍ଚାମୃତ ଗ୍ରହଣ କରି ବିନୀତ ନିବେଦନ କରିବ :

*ଦୁଃଖ ଦୌର୍ଭାଗ୍ୟ ନାଶାୟ ସର୍ବଂ ପାପକ୍ଷୟାୟ ଚ।*
*ବିଷ୍ଣୋଃ ପଞ୍ଚାମୃତ ପୀତ୍ୱା ପୁନର୍ଜନ୍ମ ନ ବିଦ୍ୟତେ॥*

ଅର୍ଥାତ୍, ''ଏହି ପଞ୍ଚାମୃତକୁ ଦୁଃଖ ଦୁର୍ଭାଗ୍ୟର ନାଶ କରିବା ନିମନ୍ତେ ଓ ସକଳ ପ୍ରକାର ପାପ କ୍ଷୟ ନିମନ୍ତେ ମୁଁ ପାନ କରୁଛି। ଏହାକୁ ପାନ କରିବାଦ୍ୱାରା ପୁନର୍ଜନ୍ମ ହେବନାହିଁ।'' ଏପରି ଭାବି ଭାବର ସହିତ ସୁସ୍ୱାଦୁ ପଞ୍ଚାମୃତ ଯେତେ ଅଧିକ ପାଇବ ତାହା ପାନ କରିବ।

## ନୈବେଦ୍ୟ ଗ୍ରହଣ

ଚରଣାମୃତ ଅଥବା ପଞ୍ଚାମୃତ ଗ୍ରହଣ କରିବା ପରେ ଭଗବାନଙ୍କୁ ଲାଗି ହୋଇଥିବା ନୈବେଦ୍ୟକୁ ଶ୍ରଦ୍ଧାର ସହିତ ଏହାର ମାହାତ୍ମ୍ୟ ସ୍ମରଣ କରି କରି ସେବା କରିବା ଉଚିତ :

*ନୈବେଦ୍ୟମନ୍ନ ତୁଳସୀ ବିମିଶ୍ରିତମ୍,*
*ବିଶେଷତଃ ପାଦଜଲେନ ବିଷ୍ଣୋଃ।*
*ଯୋଽଶ୍ନାତି ନିତ୍ୟଂ ପରତୋ ମୁରାରେଃ*
*ପ୍ରାପ୍ନୋତି ଯଜ୍ଞାୟୁତକୋଟି ପୁଣ୍ୟମ୍।*

ଅର୍ଥାତ୍, ''ନୈବେଦ୍ୟ ଅନ୍ନ ଯାହା ତୁଳସୀ ଜଳଯୁକ୍ତ, ବିଶେଷକରି ଠାକୁରଙ୍କର ଚରଣାମୃତ ଯୁକ୍ତ ହୋଇଥିବ ପ୍ରତିଦିନ ଯିଏ ଠାକୁରଙ୍କ ସମ୍ମୁଖରେ ତାହା ଭକ୍ଷଣକରି ସେ କୋଟି ଯଜ୍ଞରୁ ଅଧିକ ପୁଣ୍ୟଫଳ ପାଏ।'' ଏପରି ଭାବି ଭଗବାନଙ୍କ ପ୍ରସାଦ ପ୍ରେମପୂର୍ବକ ପୋଛିପାଛି ପାଇବା ଉଚିତ।

ମହାମୁନି ଆବିର୍ହୋତ୍ର କହିଲେ, ''ରାଜନ୍ ! ଭଗବାନଙ୍କର ଏହିପରି ପୂଜା କରାଯାଏ । ପ୍ରତିମାପୂଜା ତ ଏହିଭଳି କରାହୁଏ, କିନ୍ତୁ ଯେଉଁମାନେ ଭଗବାନଙ୍କୁ ଭାବନାକରି ଅଗ୍ନି, ସୂର୍ଯ୍ୟ, ଜଳ, ଅତିଥି ଅଥବା ନିଜ ହୃଦୟରେ ବିରାଜମାନ କରୁଥିବା ଈଶ୍ୱରଙ୍କୁ ପୂଜାକରନ୍ତି, ସେମାନେ ଅତି ଶୀଘ୍ର ସଂସାର ବନ୍ଧନରୁ ମୁକ୍ତ ହୋଇଯାଆନ୍ତି । ମୁଁ ଅତି ସଂକ୍ଷେପରେ କର୍ମଯୋଗ ବର୍ଣ୍ଣନା କଲି । ଆପଣ ଆଉ ଅଧିକ କ'ଣ ଶୁଣିବାକୁ ଚାହାନ୍ତି କୁହନ୍ତୁ । ଶ୍ରୀହରି ଭଗବାନ୍ ଅନେକ ରୂପ ଧାରଣ କରି ଲୋକ ହିତାର୍ଥ ଅତି ମଧୁର-ମଧୁର ଲୀଳା କରିଥା'ନ୍ତି । ଭଗବାନଙ୍କର ସେ ସମସ୍ତ ମୁନି-ମନ-ହାରିଣୀ ମନୋହର ମୂର୍ତ୍ତିଙ୍କୁ ସକଳ ଲୋକ ପୂଜା କରିଥା'ନ୍ତି ।

ମହାରାଜ ଜନକ କହିଲେ, ''ଆପଣଙ୍କ ଶ୍ରୀମୁଖରୁ ଭଗବାନଙ୍କର ପୂଜାବିଧି ଶୁଣିଲି । ଏବେ ମୁଁ ଭଗବାନଙ୍କର ଅବତାର ଚରିତ୍ର, ପ୍ରସଙ୍ଗ ଶୁଣିବାକୁ ଚାହୁଁଛି । ଭଗବାନ ଶ୍ରୀହରି ନିଜ ଇଚ୍ଛାନୁସାରେ ଯେପରି ଚାହାନ୍ତି ସେହିପରି ରୂପ ଗ୍ରହଣ କରନ୍ତି । ଇଚ୍ଛାନୁସାରେ ସେ ଆଜିପର୍ଯ୍ୟନ୍ତ ଯେତେ ସବୁ ଅବତାର ଧାରଣ କରିଛନ୍ତି ଅଥବା ଭବିଷ୍ୟତରେ ଯେଉଁ ଅବତାର ଧାରଣ କରିବେ, ଯେତେ ଲୀଳା କରିଯାଇଛନ୍ତି ଅଥବା ଯେଉଁ ସବୁ ଲୀଳା କରିବେ ଅଥବା କରୁଛନ୍ତି, ସେ ସମସ୍ତ ମୋତେ ଶୁଣାନ୍ତୁ ।''

ମହାମୁନି ଆବିର୍ହୋତ୍ର ରାଜାଙ୍କଠାରୁ ଏପରି କଥା ଶୁଣି ହସିବାରେ ଲାଗିଲେ, ଆଉ କହିଲେ, ''ରାଜନ୍ ! ଅନନ୍ତଙ୍କର ଅନନ୍ତ ଲୀଳା ପୁଣି କିଏ ବର୍ଣ୍ଣନା କରିପାରେ ? ତେବେ ବି ସଂକ୍ଷେପରେ ଯେତିକି ସମ୍ଭବ, ମୋ କନିଷ୍ଠଭ୍ରାତା ଦ୍ରୁମିଳ ତାହା କହିବେ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଏହାଶୁଣି ମହାରାଜ ଜନକ ମହାମୁନି ଦ୍ରୁମିଳଙ୍କ ଆଡ଼କୁ ଶ୍ରଦ୍ଧା ପୂର୍ବକ ଚାହିଁବାରେ ଲାଗିଲେ । ଏବେ ସେ ଭଗବତ୍ ଲୀଳା ଯେପରି କହିବେ ତାହା ମୁଁ ବର୍ଣ୍ଣନା କରିବି ।''

### ଛପ୍ପୟ

*ଶ୍ରୀ ହରି କୋ ନିରମାଲ୍ୟ ଗନ୍ଧ ମାଲା ସିର ଧାରେ ।*
*ପୂଜିତ ବିଗ୍ରହ ଯଥାଥାନ ଧରି ନାମ ଉଚାରେ ।।*
*ଯୋଂ ଜଳ, ଥଲ, ରବି, ଅନଲ, ଅତିଥି ପ୍ରତିମାକେ ମାହୀ ।*
*ଯଜନ କୃଷ୍ଣକୋ କରୈଂ ମୁକ୍ତି ପଦ ଦୁର୍ଲଭ ନାହିଁ ।।*
*ଅରଚନ, ପୂଜନ, କୀରତନ, ଅବତାରନିକୋ ନିତ କରୈ ।*
*ତ୍ରିଭୁବନକୁଁ ତାରୈ ସ୍ୱୟଂ, ଇକ୍କିସ୍ ପୀଢିନି ସଁଗ ତରୈ ।।*



# ଭଗବାନଙ୍କର ଲୀଳା ସମୂହର ବର୍ଣ୍ଣନା

**ଯୋ ବା ଅନନ୍ତସ୍ୟ ଗୁଣାନନନ୍ତାନ୍,**
**ଅନୁକ୍ରମିଷ୍ୟନ୍ ସ ତୁ ବାଲବୁଦ୍ଧିଃ ।**
**ରଜାଂସି ଭୂମେର୍ଗଣୟେଦ୍ କଥଞ୍ଚିତ୍,**
**କାଲେନ ନୈବାଖିଳଶକ୍ତିଧାମ୍ନଃ ।।☆**

(ଶ୍ରୀଭା. ୧୧ସ୍କ. ୪ଅ. ୨ୟ ଶ୍ଳୋକ)

**ଛପ୍ପୟ**

*ଭୂପ କହେଂ - ଅବତାର ଚରିତ ସବ ଦେବ ! ସୁନାଓ ।*
*ଦ୍ରୁମିଳ କହେଂ - ଅବ ଚିତ୍ତ ନୃପତି ମମ ଓର ଲଗାଓ ।।*
*ହୈଂ ଅବତାର ଅନନ୍ତ ଅନ୍ତ ବେଦହୁ ନହିଁ ପାବେଂ ।*
*ତୋଉ କଛୁ କଛୁ ଗୁନନି ସହିତ ହରି ଚରିତ ସୁନାବେଂ ।।*
*ପ୍ରଥମ ପୁରୁଷ ବେଇ ଭୟେ, ଅଜ, ହରି ହର ନର ନରାୟନ ।*
*ବଦରୀବନମହଁ ତପ କରତ, କାମ କ୍ରୋଧ ତେଂ ବିଗତ ମନ ।।*

ସଂସାରରେ ସମସ୍ତେ ଗୋଟିଏ କଥାକୁ ବାରମ୍ବାର କହୁଥା'ନ୍ତି, ଶ୍ରେଷ୍ଠ ପୁରୁଷ କନ୍ୟାଦାନ ଥରଟିଏ ମାତ୍ର କରିଥା'ନ୍ତି, ସତୀ ଥରେ ମାତ୍ର ପତି-ବରଣ କରିଥାଏ, ମଣିଷମାନେ ସେହି ଏକ ଭୋଜନ ସବୁଦିନ କରିଥା'ନ୍ତି, ବ୍ୟସନୀ ସେହି ଏକ ବ୍ୟସନକୁ ପ୍ରତିଦିନ ବାରମ୍ବାର କରିଥା'ନ୍ତି, ଗାୟକ ସେହି ଗୋଟିଏ ରାଗକୁ ବାରମ୍ବାର ଆଳାପ କରିଥା'ନ୍ତି, ଗୋଟିଏ ମାତ୍ର ପ୍ରକୃତ ମିତ୍ରକୁ ଦେଖି ବାରମ୍ବାର ଆନନ୍ଦ ଲାଗେ, ସେହି ଏକ ଦେବମୂର୍ତ୍ତିକୁ ଦର୍ଶନ କରିବାକୁ ଆମେ ବାରମ୍ବାର ଯାଉ, ଏକମାତ୍ର ଗଙ୍ଗାରେ ବାରମ୍ବାର

---

☆ ବୋଲଇ ଶୁଣ ନରନାଥ । ଅଶେଷ କୃଷ୍ଣର ଚରିତ ।।
କେ ତାହା ଅନୁମାନ କରି । ମୁଖେ କହିବ ଚିତ୍ତେ ଧରି ।।
ବାଳକ ସମ ବୁଦ୍ଧିହୀନ । ଜଗତେ ଅଛି କେବା ଜନ ।।
ପଣ୍ଡିତପଣେ ଗର୍ବ କରି । ହୃଦରେ ଅହଙ୍କାର ଭରି ।।
କଥନେ କୃଷ୍ଣଗୁଣ ବଳେ । କେ ଅଛି ଭୁବନମଣ୍ଡଳେ ।।
ମୃତ୍ତିକା ଖଣ୍ଡ ଚୂର୍ଣ୍ଣ କରି । କେ ଗଣିପାରେ ମନେ ଧରି ।।
ସେ କାହିଁ କୃଷ୍ଣର ମହିମା । ମୁଖେ କହିବ ଗୁଣ ସୀମା ।।

(ଭାଗବତ : ଜଗନ୍ନାଥ ଦାସ: ୧୧ଶ ସ୍କ. ୫ମ ଅ.)

ସ୍ନାନ କଲେ ସୁଦ୍ଧା ମନ ତୃପ୍ତ ହୁଏନାହିଁ । ଗୋଟିଏ ସ୍ତୁତିକୁ ଦିଅଁଙ୍କ ପାଖରେ ସବୁବେଳେ ବାରମ୍ବାର ହାତଯୋଡ଼ି ପାଠ କରୁ, ସେଇ ଏକ ଗୀତା, ଭାଗବତ, ରାମାୟଣକୁ ଥରକ ପରେ ଥରେ ପାଠ କରିବାରେ ଲାଗିଥାଉ, ତେବେ ବି ଆମକୁ ତୃପ୍ତି ଆସେନାହିଁ । ଏହାର କାରଣ କ'ଣ ହୋଇପାରେ ? କାରଣ ହେଉଛି, ବାସ୍ତବିକ ତତ୍ତ୍ୱ ହେଉଛି ଏକ । ତାକୁ ଯିଏ ଯେଉଁ ରୂପରେ ଭଜନ କଲା ସେହି ରୂପରେ ଆନନ୍ଦ ପାଇଥାଏ । ଅଫିମିଆ ସେହି ତତ୍ତ୍ୱକୁ ଅଫିମ ରୂପରେ ଦେଖେ । ଅଫିମ ବିନା ସେ କିପରି ଛଟପଟ ହେଉଥାଏ ତାହା ଆମେ ଜାଣିଛେ । ମଦ୍ୟପ ମଦ୍ୟ ରୂପରେ, କାମୀ କାମ ରୂପରେ, ବିଷୟୀ ବିଷୟ ରୂପରେ, ଭକ୍ତ କୃଷ୍ଣଙ୍କ ରୂପରେ ସେହି ଏକକୁ ଭଜନ କରିଥାଏ । ପୁରାଣମାନଙ୍କରେ ସେହି ଗୋଟିଏ କଥା ଥାଏ- ଅବତାରତତ୍ତ୍ୱ, ଅବତାର କଥାକୁ ବାରମ୍ବାର କହି ସୁଦ୍ଧା ପୁନରୁକ୍ତି ଦୋଷ ଅନୁଭବ କରିହୁଏ ନାହିଁ । ଯେପରି ଉପର୍ଯ୍ୟୁକ୍ତ ବ୍ୟକ୍ତି ନିଜ ନିଜ ବିଷୟ ଅନବରତ ସେବନ କରି ବି ବିରକ୍ତ ଅନୁଭବ କରନ୍ତି ନାହିଁ । ଭକ୍ତଙ୍କ ପାଇଁ ତ ଏକମାତ୍ର ଶ୍ରବଣୀୟ ବିଷୟ ଅଛି- ତାହା ହେଉଛି ଅବତାର ଚରିତ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ରାଜା ନିମି ଯେତେବେଳେ ଅବତାରଙ୍କ ଲୀଳା ସମ୍ବନ୍ଧରେ ପ୍ରଶ୍ନ କଲେ, ସେତେବେଳେ ମହାମୁନି ଦ୍ରୁମିଳ କହିଲେ, 'ହେ ରାଜନ୍ ! ଆପଣ ଏକାବେଳକେ ଏପରି ପ୍ରଶ୍ନ କରୁଛନ୍ତି ଯାହାକୁ ଉତ୍ତର ଦେବା ଅସମ୍ଭବ ହୋଇଯାଏ । ରାଜନ୍ ! ଭଗବାନ ଅନନ୍ତ, ତାଙ୍କର ପୁଣି ଗୁଣ ସମୂହର ଗଣନା କିପରି ହୋଇପାରିବ । ଯିଏ ସାନ୍ତ, ତାଙ୍କ ଚରିତ କୁହାଯାଇପାରେ, ବଖାଣି ହୋଇପାରେ, ତା'ର ମୃତ୍ୟୁ ବି ହୋଇଥାଏ, ଏପରି ଲୋକର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତର ଚରିତ୍ର କୁହାଯାଇପାରେ । କିନ୍ତୁ ଯେ ଅଜ, ଅମର, ଅବ୍ୟକ୍ତ, ଏହାଙ୍କ ଚରିତ୍ର କିପରି ବର୍ଣ୍ଣନା କରିବା ସମ୍ଭବ ! ଆକାଶର ତାରାଗଣଙ୍କୁ ଗଣିବା ହୁଏ ତ ସମ୍ଭବ ହୋଇପାରେ, ସମୁଦ୍ରର ଜଳକଣାର ସଂଖ୍ୟା ନିରୂପଣ କରିବା ବି ସମ୍ଭବ ହୋଇପାରେ, ଯତ୍ନ ଓ ଅଧିକ ପରିଶ୍ରମ କରି ଭୂମିର ରଜକଣା ଗଣନା ହୁଏତ ସମ୍ଭବ ହୋଇପାରେ, ହେଲେ ଭଗବାନଙ୍କର ଲୀଳା ସମୂହର ଗଣନା କରିବା ସର୍ବଦା ଅସମ୍ଭବ ।

ରାଜା କହିଲେ, ''ବ୍ରହ୍ମନ୍ ! ଭଗବାନ ନାନା ଅବତାର ଧାରଣକରି ଏଇଥିପାଇଁ ଲଳିତ ଲୀଳା କରନ୍ତି ଯାହା ଶ୍ରବଣ କରି ସଂସାରୀ ଲୋକମାନେ ଭବସାଗରରୁ ପାରି ହୋଇପାରନ୍ତି ।''

ମହାମୁନି ଦ୍ରୁମିଳ କହିଲେ, ''ରାଜନ୍ ! ଅବତାର ତ ଗୋଟିଏ ନୁହେଁ, ତାହା ବି ଅନନ୍ତ । କିନ୍ତୁ ତେବେ ବି ସେମାନଙ୍କ ମଧ୍ୟରୁ ମୁଁ କେତେକ ଅବତାରଙ୍କ କଥା କହିବି ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଆପଣମାନେ ବାରମ୍ବାର ଏହି ଅବତାର

କଥା ଶୁଣି ଯେପରି ଅତିଷ୍ଟ ନ ହୁଅନ୍ତି ! ଅତୀତରେ ମୁଁ ଆପଣମାନଙ୍କୁ କେତେକ ଅବତାର କଥା କହିଛି, କିନ୍ତୁ ବାରମ୍ବାର ଶୁଣିଲେ ହିଁ ପ୍ରକୃତ ରସ ମିଳେ । ଆଉ ମଧ, ମଧୁର ପାନୀୟ ବସ୍ତୁକୁ ବାରମ୍ବାର ପାନ କରିବା ପରେ ହିଁ ଉନ୍ମାଦ ପ୍ରାପ୍ତ ହୋଇଥାଏ । ବାରମ୍ବାର କୁହାଗଲେ ବି ପ୍ରତ୍ୟେକଥର କଥାରେ କିଛି ନୂତନତାର ଆଭାସ ମିଳିଥାଏ ।''

ମହର୍ଷି ଶୌନକ କହିଲେ, ''ନାଁ ନାଁ ହେ ମହାମନା ସୂତ ! ଆପଣ ନିଶ୍ଚିନ୍ତରେ ଆମକୁ ଅବତାର ଚରିତ୍ର ଶୁଣାନ୍ତୁ । ଆମେ ଆନ୍ତରିକତାର ସହିତ ଏହାହିଁ ଚାହୁଁଛୁ । ଏଇ ଯେଉଁ ରାଜାମାନଙ୍କର, ଅପସରାମାନଙ୍କ କଥା ମଝିରେ ମଝିରେ ଚାଲି ଆସୁଛି ତାହା ସବୁ ତ ଜିଭର ସୁଆଦ ପରିବର୍ତ୍ତନ କରିବା ପାଇଁ ଖଟା ଚଟଣି ଭଳି । କ୍ଷୀରି, ମାଲପୁଆ, ମହନଭୋଗ ତ ହେଉଛି ଭଗବାନଙ୍କର ଅବତାର ଲୀଳା ।

ମହାପ୍ରାଜ୍ଞ ସୂତ କହିଲେ, ''ହଁ ମହାରାଜ ! ଆପଣ ଠିକ୍ କହିଛନ୍ତି । ସେଥିପାଇଁ ମହାରାଜ ନିମି ପଚାରିବାରୁ ଯୋଗେଶ୍ୱର ଦ୍ରୁମିଳ କହୁଛନ୍ତି, 'ରାଜନ୍ ! ସର୍ବପ୍ରଥମ ସୃଷ୍ଟିର ଆଦ୍ୟରେ ପୁରୁଷାବତାର ହୋଇଥିଲା । ବେଦରେ ଯାହାର ମହିମା 'ପୁରୁଷସୂକ୍ତ'ରେ ଗାନ କରାଯାଇଛି ।''

ରାଜା ପଚାରିଲେ, ''ଭଗବନ୍ ! ଏହି ପ୍ରଥମ ଅବତାରଙ୍କ ନାମ ପୁରୁଷ ହେଲା କିପରି ?''

ମହାମୁନି ଦ୍ରୁମିଳ କହିଲେ, ''ରାଜନ୍ ! ପଞ୍ଚଭୂତାତ୍ମ ଏହି ବ୍ରହ୍ମାଣ୍ଡ ହେଉଛି ଗୋଟିଏ ପୁର । ଆଦିଦେବ ଭଗବାନ୍ ଶ୍ରୀମନ୍‌ନାରାୟଣ ଏହି ପୁର ରଚନା କରି ସ୍ୱୟଂ ନିଜର ଅଂଶଭୂତ ଜୀବ ରୂପରେ ଏଥିରେ ପ୍ରବେଶ କରିଗଲେ । ବ୍ରହ୍ମାଣ୍ଡ ରୂପୀ ପୁରରେ, ଅଥବା ଦେହ ରୂପୀ ପୁରରେ ଶୟନ କରିବାରୁ ଏହାର ନାମ ପୁରୁଷ ହୋଇଗଲା । ଏହାଙ୍କର ସହସ୍ର ଶିର, ସହସ୍ର ନେତ୍ର, ସହସ୍ର ପାଦ ଅଛି । ଏଠାରେ ସହସ୍ର ଶବ୍ଦ ଉପଲକ୍ଷଣ ମାତ୍ର । ସାରାଂଶ ହେଉଛି, ଯେତେ ଶିର, ହସ୍ତ, ପଦ, ନାକ, କାନ ଆଦି ଅଛି, ସମସ୍ତ ହେଉଛି ସେହି ବିରାଟ ଭଗବାନଙ୍କର । ତାଙ୍କରି ବ୍ରହ୍ମାଣ୍ଡ ରୂପୀ ଶରୀରରେ ସମସ୍ତ ସଂସାର ସମାବେଶିତ । ଭଗବାନଙ୍କର ସମଷ୍ଟି ଇନ୍ଦ୍ରିୟଙ୍କ ଦ୍ୱାରା ଜଗତ ଜୀବଙ୍କର ବ୍ୟଷ୍ଟି ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟଙ୍କ ଉତ୍ପତ୍ତି— ତାଙ୍କ ସ୍ୱରୂପରେ ସ୍ୱତଃସିଦ୍ଧ ଜାଣି ହୋଇଯାଉଛି । ତାଙ୍କର ଯେଉଁ ଶ୍ୱାସ ପ୍ରଶ୍ୱାସ, ସେଇଥିରେ ଦେହଧାରୀଙ୍କର ଦେହରେ ରହିଥିବା ଶକ୍ତି 'ବଳ', ଇନ୍ଦ୍ରିୟରେ ରହୁଥିବା ଶକ୍ତି 'ଓଜ'ର ତଥା କ୍ରିୟାକାରୀ ଶକ୍ତି 'ଇହା'ର ଉତ୍ପତ୍ତି । ଏହାଙ୍କର ରଜୋଗୁଣରେ ଉତ୍ପତ୍ତି, ସତ୍ୱଗୁଣରେ ସ୍ଥିତି ଆଉ ତମୋଗୁଣରେ ପ୍ରଳୟ ହୁଏ । କହିବାର ଅଭିପ୍ରାୟ ଏହା ଯେ ଏ ସମସ୍ତ ଦେହଧାରୀଙ୍କର ଆଦିକର୍ତ୍ତା ହେଉଛନ୍ତି ସେହି ଶ୍ରୀମନ୍ନାରାୟଣ । ସେ ପୁରୁଷ ରୂପରେ ଉତ୍ପନ୍ନ ହୋଇ ମନରେ ବ୍ରହ୍ମାଣ୍ଡର କଳ୍ପନା

କଲେ । ଯଦିଓ ସେ ନିର୍ଗୁଣ, କିନ୍ତୁ ଜଗତ ସୃଷ୍ଟି ଉଦ୍ଦେଶ୍ୟରେ ସେ ମାୟାର ଗୁଣକୁ ନିଜ ମଧ୍ୟରେ ସ୍ୱୀକାର କଲେ । କ୍ରିୟା ସବୁବେଳେ ରଜୋଗୁଣରେ ହିଁ ହୋଇଥାଏ । ସତ୍ତ୍ୱଗୁଣରେ ଶାନ୍ତ ରହିଥା'ନ୍ତି, ତମୋଗୁଣରେ ଶୂନ୍ୟତାର ଅନୁଭବ କରନ୍ତି, ଲୋପ ହୋଇଯାଆନ୍ତି, ଅଦର୍ଶନ ହୋଇଯାଆନ୍ତି । **ଏଣୁ ସୃଷ୍ଟି ରଚନା କରିବା ପାଇଁ ଯେତେବେଳେ ସେହି ପୁରୁଷ ପ୍ରଭୁଙ୍କର ଇଚ୍ଛା ହେଲା, ସେତେବେଳେ ତାଙ୍କର ରଜୋଗୁଣର ଅଂଶରୁ ବ୍ରହ୍ମା ଉତ୍ପନ୍ନ ହେଲେ । ଅର୍ଥାତ୍, ନିଜର ରଜୋଗୁଣକୁ ସେ ବ୍ରହ୍ମାଙ୍କ ରୂପରେ ବ୍ୟକ୍ତ କଲେ ।** ଏବେ ଯାହା ଉତ୍ପନ୍ନ ହୁଏ ତାହାକୁ ରକ୍ଷା ନକରାଗଲେ, ସେ ସମସ୍ତ ବ୍ୟର୍ଥ ହୋଇଥାଏ । ରଜୋଗୁଣର କାର୍ଯ୍ୟ ହେଉଛି କର୍ମ କରିଚାଲିବା । ଯେ ପର୍ଯ୍ୟନ୍ତ କେହି ତାକୁ ସଂଯମକୁ ନ ଆଣେ, ସେ ପର୍ଯ୍ୟନ୍ତ ତାହା ନିଜ ଫଳ ପ୍ରାପ୍ତି କରିପାରେ ନାହିଁ । ପାଣି ଓ ସାର ଦେବା ଦ୍ୱାରା ଅନେକ ଅରମା ଉଠିଥାଏ । ଏହି ଅନାବଶ୍ୟକ ଅରମାକୁ କାଟି ନ ପୋପାଡ଼ିଲେ ଉଦ୍ୟାନ ଜଙ୍ଗଲ ହୋଇଯାଏ । ସଘନବଣ ହୋଇଯାଏ । ସୁନ୍ଦର ଉପବନ ହୋଇପାରେ ନାହିଁ । ଏଣୁ ପୁରୁଷ ଭଗବାନ ନିଜର ସତ୍ତ୍ୱାଂଶରୁ ସଂସାର ପାଳନ ନିମିତ୍ତ ଧର୍ମ ଆଉ ଦ୍ୱିଜଙ୍କୁ ରକ୍ଷା କରିବା ନିମିତ୍ତ ସେତୁ ରୂପୀ ଯଜ୍ଞପତି ବିଷ୍ଣୁ ହୋଇଗଲେ । ଅର୍ଥାତ୍, **ପାଳନ କରିବା ନିମିତ୍ତ ସେ ହିଁ ବିଷ୍ଣୁ କୁହାଗଲେ ।**

ଯେଉଁ ବସ୍ତୁ ଉତ୍ପନ୍ନ ହୋଇଛି, ତାହାର ବିନାଶ ଅବଶ୍ୟମ୍ଭାବୀ । ତମୋଗୁଣରେ ନାଶ ହୋଇଥାଏ । ଏଣୁ ସେ ନିଜର ତମୋଗୁଣର ଅଂଶରେ ସର୍ବସଂହାରକ ରୁଦ୍ର ହୋଇଗଲେ । ଏହି ଗୁଣ ପ୍ରଭାବର ଆଦି ଉଦ୍‌ଗମ ସ୍ଥାନ ହେଉଛି ସେହି ଭଗବାନ । ଏହିଭଳି ପ୍ରଜାଙ୍କଠାରେ ତାଙ୍କରି ଦ୍ୱାରା ଅନବରତ ଉତ୍ପତ୍ତି, ପାଳନ ଆଉ ସଂହାର କାର୍ଯ୍ୟ ହୋଇ ଚାଲିଥାଏ । ଏହି ଆଦି ପୁରୁଷ ଶ୍ରୀମନ୍ନାରାୟଣଙ୍କ ପୁରୁଷାବତାର ମୁଁ ବର୍ଣ୍ଣନ କଲି । ସେ ତାଙ୍କର ତିନି ରୂପରେ ଏହି ସଂସାର ରୂପୀ ଶକଟକୁ ଟାଣିବାରେ ଲାଗିଛନ୍ତି ।''

ରାଜା କହିଲେ, ''ମହାରାଜ ! ଏହି ଅବତାରଙ୍କ ଠାରୁ ଆମେ କି ଶିକ୍ଷା ଗ୍ରହଣ କରିବା ?''

ମୁନି କହିଲେ, ''ରାଜନ୍ ! ଏହି ଅବତାର ହେଉଛି ପ୍ରବୃତ୍ତିର ଦ୍ୟୋତକ । ଅର୍ଥାତ୍, ଧର୍ମପୂର୍ବକ ନିଜର ପରିବାର କର, ସ୍ୱତଃ କର୍ତ୍ତବ୍ୟ ବୁଦ୍ଧିରେ ତାହାକୁ ପାଳନ କର, କିନ୍ତୁ ତାକୁ ସର୍ବସ୍ୱ ବୋଲି ମନେକରି ତହିଁରେ ଆସକ୍ତ ହୋଇଯାଅ ନାହିଁ । ପରିଶେଷରେ ତହିଁରୁ ଆସକ୍ତି ଦୂରକରି ନିଜର ପୂର୍ବ ଯଥାର୍ଥ ରୂପକୁ ଅନୁସନ୍ଧାନ କର । କିନ୍ତୁ ସମସ୍ତଙ୍କ ପାଇଁ ପ୍ରବୃତ୍ତି ମାର୍ଗ ଆବଶ୍ୟକ ନାହିଁ । ଏହା ଦେଖାଇବାକୁ ଯାଇ ଭଗବାନ ତପସ୍ୱୀ ରୂପରେ ଅବତାର ଧାରଣ କଲେ ।''

ରାଜା ପଚାରିଲେ, ''ଭଗବନ୍ ! ସେଇ ନିବୃତ୍ତି ମାର୍ଗର ଉପଦେଶ ଦାତା ତପସ୍ୱୀ ଅବତାର କେଉଁ ନାମରେ ସଂସାରରେ ପରିଚୟ ପାଇଲେ ?''

ମୁନି କହିଲେ, ''ନର-ନାରାୟଣ ନାମରେ ସେ ପ୍ରସିଦ୍ଧ ହେଲେ । ସେ ଧର୍ମର ମୂର୍ତ୍ତି ନାମକ ପତ୍ନୀଙ୍କଠାରେ ଦୁହେଁ ଏକାସାଙ୍ଗରେ ପ୍ରକଟ ହେଲେ । ସେ ଅତି ଶାନ୍ତ, ଦାନ୍ତ, ତେଜସ୍ୱୀ ମୁନି-ଶ୍ରେଷ୍ଠ ରୂପରେ ସଂସାର ସମ୍ମୁଖକୁ ଆସିଲେ । ସେ ଆତ୍ମତତ୍ତ୍ୱକୁ ଅନୁଭୂତ କରାଇ ପାରୁଥିବା କର୍ମତ୍ୟାଗ ରୂପୀ କର୍ମର, ଅର୍ଥାତ୍ ସାଂଖ୍ୟର ନିଷ୍ଠୁର ଉପଦେଶ ଦାତା ହେଲେ । ଆଜି ପର୍ଯ୍ୟନ୍ତ ବି ସେ ଅଲକ୍ଷିତ ଭାବରେ ବିଶାଳପୁରୀ ବଦରୀବଣରେ ଘୋର ତପ କରୁଛନ୍ତି, ଆଉ ଲୋକଙ୍କ ସମ୍ମୁଖରେ ନିଜେ ସେହି କର୍ମତ୍ୟାଗ ରୂପ କର୍ମର ଆଚରଣ କରି ଆଦର୍ଶ ଉପସ୍ଥାପନ କରିବାରେ ଲାଗିଛନ୍ତି । ମହାନ୍ ମହାନ୍ ମୁନି-ଋଷିମାନେ ଏହାଙ୍କର ଚରଣ ବନ୍ଦନା, ଅର୍ଚ୍ଚନା କରୁଛନ୍ତି । ଏହି ଅବତାର ତ୍ୟାଗର ଦ୍ୟୋତକ । ତ୍ୟାଗୀଙ୍କ ପାଇଁ ସଂସାରର ସବୁଠାରୁ ବଡ଼ ବିଘ୍ନ ହେଉଛି କାମ । ସର୍ବସାଧାରଣଙ୍କ ସମ୍ମୁଖରେ କାମକୁ କୌଣସି ପ୍ରକାରେ ଦବାଇ ରଖାଯାଇ ପାରେ; ମାତ୍ର ଘୋର ନିର୍ଜନ ବଣରେ କାମିନୀକୁ ଏକାକୀ ଦେଖି ଚିତ୍ତ ଚଞ୍ଚଳ ହୋଇଯିବା ସ୍ୱାଭାବିକ କଥା । କିନ୍ତୁ ଏହି ଅବତାରରେ କାମ ଉପରେ ବିଜୟ ଲାଭକରି ଏହା ଦେଖାଇ ଦିଆ ହୋଇଛି ଯେ, ମଣିଷଙ୍କ ପାଇଁ କିଛି ବି ଅସମ୍ଭବ ନୁହେଁ । ଯଦି ସେ ଦୃଢ଼ ପ୍ରତିଜ୍ଞ ହୁଏ ତେବେ କାମ ଉତ୍ପନ୍ନ କରୁଥିବା ସକଳ ବସ୍ତୁ ତାର ସାମାନ୍ୟମାତ୍ର କ୍ଷତି କରିପାରନ୍ତି ନାହିଁ । ସେ କାମ ଉପରେ ବିଜୟ ଲାଭ କରି ଇନ୍ଦ୍ରଙ୍କୁ ଲଜ୍ଜିତ କରି ଦେଇଥିଲେ ।''

ରାଜା କହିଲେ, ''ଭଗବନ୍ ! ଇନ୍ଦ୍ରଙ୍କୁ ଲଜ୍ଜା ହେଲା କାହିଁକି ? ସେ ନର-ନାରାୟଣ ଭଗବାନଙ୍କ ସହିତ କି ସ୍ପର୍ଦ୍ଧା କରିଥିଲେ ?''

ମୁନି କହିଲେ, ''କଥା କ'ଣକି, ନର-ନାରାୟଣଙ୍କର ଅତି ଘୋର ତପ ଦେଖି ବିଷୟ ଭୋଗକୁ ସର୍ବଶ୍ରେଷ୍ଠ ବୋଲି ମନେକରୁଥିବା ସୁରେଶଙ୍କ ହୃଦୟରେ ଆଶଙ୍କା ପୂରିଗଲା । ତପସ୍ୟା କରି ଆଉ ତାଙ୍କର ବୈଭବପୂର୍ଣ୍ଣ ଇନ୍ଦ୍ରପଦ ଯେପରି ନ ନିଅନ୍ତି । ହେ ରାଜେନ୍ଦ୍ର ! ଅନେକ ଲୋକ ତପ କରନ୍ତି, କିନ୍ତୁ ତାହା ବିଷୟ ସୁଖ ନିମନ୍ତେ । ଧନ ଦାନ କରୁଛନ୍ତି ଅଧିକ ଧନ ପାଇବା ଆଶାରେ । ଦୀପ ଦାନ କରୁଛନ୍ତି କାରଣ ଅଧିକ ଅଲୋକ ପାଇବା ଆଶାରେ । ବହାନ ଦାନ କରୁଛନ୍ତି ଅଧିକ ଉନ୍ନତ ଧରଣର ଯାନ ପାଇବା ଆଶାରେ । ପତ୍ନୀ ଦାନ କରୁଛନ୍ତି ଇଏ ପୁଣି ଅଧିକ ସୁନ୍ଦରୀ ରୂପରେ ତାଙ୍କ ପାଖକୁ ଆସିବା ପାଇଁ । ଦାସୀ ଦାନ କରୁଛନ୍ତି, ମହାରାଜ ! ସବୁ ହେଉଛି ବ୍ୟବସାୟ । ଯେଉଁମାନେ ଏପରି ବ୍ୟବସାୟ କରି ବଢ଼ିଯାଉଛନ୍ତି ସେମାନଙ୍କର ଅନ୍ୟଙ୍କଠାରେ ସେହିପରି ଶଙ୍କା କରିଥା'ନ୍ତି । ତାଙ୍କଠାରୁ ଯେ ଅଧିକ ଶ୍ରେଷ୍ଠ ବି ଅଛନ୍ତି, ଏପରି ଯେମାନେ

ଆଦୌ ଧାରଣା କରିପାରନ୍ତି ନାହିଁ । ମାୟାର ଅଧୀନରେ ରହି ଦେବେନ୍ଦ୍ର ଭଗବାନ୍‌ଙ୍କର ଅଭିମତ ଐଶ୍ୱର୍ଯ୍ୟ ଭୁଲିଗଲେ; ଆଉ ସାଧାରଣ ତପସ୍ୱୀ ବୋଲି ମନେକରି ସେ ତପୋଭ୍ରଷ୍ଟ କରିବାପାଇଁ ବିଶ୍ୱବିଜୟୀ କାମଦେବଙ୍କୁ ସଦଳବଳେ ତାଙ୍କ ପାଖକୁ ପଠାଇଲେ ।

''ସମସ୍ତ ଦେବତାଙ୍କର ରାଜା ଇନ୍ଦ୍ରଙ୍କ ବୁଦ୍ଧିବଣା ଯେତେବେଳେ ହୋଇଗଲା ସେତେବେଳେ କାମ, ବସନ୍ତ ଆଦି ସାଧାରଣ ଦେବଙ୍କ କଥା ଅଧିକ କ'ଣ କହିବା । ଏମାନେ ସମସ୍ତେ ବଦରୀବଣରେ ପହଞ୍ଚି ନିଜ ନିଜର ଚିରାଚରିତ ପୁରାତନ ଜାଲ ବିଛାଇବାରେ ଲାଗିଲେ । ଚତୁର୍ଦ୍ଦିଗରେ ବସନ୍ତ ବ୍ୟାପିଗଲା, ତା'ର ପ୍ରିୟ ସଖା ମଳୟାନିଳ ମନ୍ଦ ମନ୍ଦ ପ୍ରବାହିତ ହୋଇ ଚାରିଆଡ଼ ସୁଗନ୍ଧରେ ମହକାଇବାରେ ଲାଗିଲା । ସୁର ସୁନ୍ଦରୀମାନେ ମନମୁଗ୍ଧକର ସୁନ୍ଦର ସ୍ୱରରେ ଗାନ କରି କରି କଟାକ୍ଷ ବାଣରେ ବଦରୀଶଙ୍କୁ ବିଦ୍ଧ କରିବା ପାଇଁ ବ୍ୟର୍ଥ ଉଦ୍ୟମ କରିବାରେ ଲାଗିଲେ, ରୁଣୁଝୁଣୁ ରୁଣୁଝୁଣୁ ନୂପୁର ବାଜିବାରେ ଲାଗିଲା, କଙ୍କଣ ବଳୟ ଝଣ ଝଣ ହେଲା, ବୀଣା, ବେଣୁ ଓ ମୃଦଙ୍ଗ ସ୍ୱର ଲହରୀ ପ୍ରତିଧ୍ୱନିତ ହେଲା, ସୃଷ୍ଟି ସରସତା ବୃଷ୍ଟି ହେବାରେ ଲାଗିଲା, ପ୍ରକୃତି ସ୍ଥିର ହୋଇଗଲା, କାମ କଳାମାନେ କଳରବ ଦେବାରେ ଲାଗିଲେ; କିନ୍ତୁ ତପସ୍ୟାମଗ୍ନ ଋଷି-ପ୍ରବର ନରନାରାୟଣଙ୍କ ମନରେ ବିକାରର ସାମାନ୍ୟ ରେଖା ସୁଦ୍ଧା ଉତ୍ପନ୍ନ ହେଲାନାହିଁ । ସେତେବେଳେ ସେହି ସେବକମାନେ ବିଚଳିତ ହୋଇ ପାଖକୁ ଆସି କହିଲେ, 'ପ୍ରଭୁ ! ରକ୍ଷା କରନ୍ତୁ, ଅପରାଧ କ୍ଷମା କରନ୍ତୁ ।''

ସେତେବେଳେ ତପସ୍ୱୀମାନଙ୍କର ଚୂଡ଼ାମଣି ହସି ହସି କହିଲେ ''ମଦନ ! ତୁମକୁ ସ୍ୱାଗତ କରୁଛି । ମନ୍ଦ ମଳୟ ମରୁତ ! ଆସ....ଆସ.... ଭୟ କରନାହିଁ । ସୁସ୍ୱାଦୁ ବନ୍ୟ ଫଳ ଖାଅ । ହେ ଦେବାଙ୍ଗନାଗଣ ! ନୃତ୍ୟ କରି କରି ତୁମେମାନେ କ୍ଳାନ୍ତ ହୋଇଯାଇଥିବ । ମୋ ଆତିଥ୍ୟ ଗ୍ରହଣ କର ।''

ନରନାରାୟଣଙ୍କଠାରୁ ଏପରି କଥା ଶୁଣୁଥିବା କାମଦେବ ଓ ତା'ର ସଙ୍ଗୀମାନେ ସେତେବେଳେ ଥର ଥର ଥରୁଥିଲେ । ସେମାନେ କହିଲେ- ''ଦୀନବନ୍ଧୁ ! କୃପା କରିବା ହୁଅନ୍ତୁ । ଅପରାଧ କ୍ଷମା କରିବା ହୁଅନ୍ତୁ । ଅବିନୟ, ଅଶ୍ଳିଷ୍ଟତା ଆଉ ଧୃଷ୍ଟତା ନିମନ୍ତେ ଆମେ ସମସ୍ତେ ଲଜ୍ଜିତ ।''

''ତୁମେମାନେ ମୋର ଆତିଥ୍ୟ ଗ୍ରହଣ ନକରି ପ୍ରସ୍ଥାନ କରିବାକୁ ବସିଛ କି ? ନା ନା ! ସେପରି କରନାହିଁ । ମୋ ଆଶ୍ରମକୁ ଛାଡ଼ି ଯାଅ ନାହିଁ । ଏହି ଫଳ ପୁଷ୍ପ ଆଦି ଗ୍ରହଣ କରି ମୋତେ କୃତାର୍ଥ କର ।'' ତପସ୍ୱୀ ନାରାୟଣ ମୁନି ବୀଣାବିନିନ୍ଦିତ ସ୍ୱରରେ ଏପରି ଅପୂର୍ବ ସୁନ୍ଦର କଥା ଏକସ୍ୱରରେ କହିଗଲେ ।

ଭଗବାନଙ୍କର ଶ୍ରୁତିମଧୁର, ପରମ ପବିତ୍ର ଦିବ୍ୟ ସୁଖଦାୟୀ ମଧୁର ବଚନ ଶ୍ରବଣକରି ସମସ୍ତେ ପରମ ଆନନ୍ଦ ଲାଭକଲେ । ହୃଦୟରେ ଉତ୍ପନ୍ନ ହୋଇଥିବା ଭୟ ଦୂର ହୋଇଗଲା । ସେମାନେ ସମସ୍ତେ ଶୃଙ୍ଖଳାର ସହିତ ଧାଡ଼ିବାନ୍ଧି ଠିଆ ହୋଇଗଲେ ଓ ଦୁଇ ହାତକୁ ଅଞ୍ଜଳିବିଦ୍ଧ କରି ସ୍ତୁତି କରିବାରେ ଲାଗିଲେ ।

ମହାମୁନି ଦ୍ରୁମିଳ ରାଜା ନିମିଙ୍କୁ କହୁଛନ୍ତି, "ରାଜନ୍ ! କାମ, ବସନ୍ତ, ମଳୟାନିଳ, ତଥା ଅପସରାମାନଙ୍କର ବିନୟ ପୂର୍ଣ୍ଣ ସ୍ତୁତି ଶୁଣି ଭଗବାନ ହସିବାରେ ଲାଗିଲେ । ସେ ହସି ହସି ତାଙ୍କର ଉରୁକୁ ଧୀରେ ଏକ ଚପେଟାଘାତ କଲେ । ଏହି କ୍ଷୁଦ୍ର ଚପେଟାଘାତ ଶବ୍ଦରେ ସେତେବେଳେ କାମ ବସନ୍ତ ଆଦି ଇନ୍ଦ୍ରଗଣମାନେ ଚକିତ ସ୍ତମ୍ଭୀଭୂତ ହୋଇଗଲେ । ସେମାନେ ପଶ୍ଚାତ୍ ଭାଗରୁ ରୁଣୁ ଝୁଣୁ ଶବ୍ଦର ଲଳିତ ଝଙ୍କାର ଶୁଣିବାକୁ ପାଇଲେ । ଆଶ୍ଚର୍ଯ୍ୟାଭିଭୂତ ଇନ୍ଦ୍ରଗଣମାନେ ପଛକୁ ବୁଲି ଯାହା ଦେଖିଲେ ସେଥିରେ ସେମାନଙ୍କର ବାକ୍‌ରୁଦ୍ଧ ହୋଇଗଲା । ଦେଖିଲେ ଦିବ୍ୟ ବସ୍ତ୍ରାଳଙ୍କର ବିଭୂଷିତ ଅପୂର୍ବ ସୁନ୍ଦର ରୂପଲାବଣ୍ୟମୟୀ ଅସଂଖ୍ୟ ଦେବାଙ୍ଗନା ଆଶ୍ରମରେ ସ୍ୱଚ୍ଛନ୍ଦରେ ବିଚରଣ କରୁଛନ୍ତି । ସେହି ହାସ୍ୟମୟୀ ଲାସ୍ୟମୟୀ ଅପସରାଙ୍କ ମଧ୍ୟରୁ ସେତେବେଳେ କେହି ଝାଡୁରେ ଆଶ୍ରମ ପରିମଳ ନିର୍ମଳ କରୁଥାଏ, ତ ଆଉ କେହି ଲିପାପୋଛା କରୁଥାଏ, କେହି ଶୁଖିଲା ପତ୍ର ଗୋଟାଉ ଥାଏ, ତ ଆଉ କେହି ସମିଧ ସଂଗ୍ରହ କରୁଥାଏ । ସେମାନେ ସମସ୍ତେ ମୂର୍ତ୍ତିମତୀ କମଳାଙ୍କ ଭଳି ଦୃଶ୍ୟ ହେଉଥିଲେ । ସୂର୍ଯ୍ୟଙ୍କ ତେଜରେ ଦୀପର ଆଲୋକ ଯେପରି ଫିକା ପଡ଼ିଯାଏ, ଠିକ୍ ସେହିଭଳି ସେହି ଲଳନାମାନଙ୍କର ଲାବଣ୍ୟ ତେଜ ସମ୍ମୁଖରେ ସ୍ୱର୍ଗୀୟ ଅପ୍‌ସରାମାନଙ୍କର ସୌନ୍ଦର୍ଯ୍ୟ ଫିକା ପଡ଼ିଗଲା । ସେମାନେ ଏପରି ସର୍ବାଙ୍ଗ ସୁନ୍ଦରୀ ଲଳନାଙ୍କୁ ଏଥି ପୂର୍ବରୁ କେଉଁଠାରେ ହେଲେ ଦେଖିନଥିଲେ । ସେମାନେ ସମସ୍ତେ ଭାବିବାରେ ଲାଗିଲେ, "ଏପରି ଅପୂର୍ବ ସୁନ୍ଦରୀ କନ୍ୟା ସଦା ଏହାଙ୍କର ସେବାରେ ସଂଲଗ୍ନ ଅଛନ୍ତି, ଏମାନେ ଏହାଙ୍କ ମନରେ କୌଣସି ପ୍ରକାର ବିକାର ଉତ୍ପନ୍ନ କରିପାରୁ ନାହାନ୍ତି, ସେପରି ସ୍ଥଳରେ ଆମେ କିପରି ଏହାଙ୍କ ମନକୁ ବିଚଳିତ କରିପାରିବା । ଅପ୍‌ସରାଗଣ ଏପରି ଚିନ୍ତା କରୁଥିବା ସମୟରେ ଭଗବାନ ହସି ହସି କହିଲେ, "ତୁମେମାନେ ଦେବେନ୍ଦ୍ରଙ୍କ କଥାରେ ଆସିଛ ନା ?"

କାମ ଶଂକିତ ତଥା ଲଜ୍ଜିତ ହୋଇ କହିଲା, "ହଁ ପ୍ରଭୁ !"

"ତେବେ ତୁମେ ତାଙ୍କ ପାଖକୁ ମୋ'ଠାରୁ କିଛି ଉପହାର ନେଇ ପାରିବ ?" ମନ୍ଦ ମନ୍ଦ ହାସ୍ୟଛଟା ପ୍ରକାଶ କରି ନାରାୟଣ ଋଷି କହିଲେ ।

"ଆଜ୍ଞା ହେଉ ପ୍ରଭୁ," ନତମସ୍ତକ ଅବସ୍ଥାରେ ବସନ୍ତ ଉତ୍ତର ଦେଲା ।

ପ୍ରଭୁ ଅତି ପ୍ରସନ୍ନତାର ସହିତ କହିଲେ, "ଏଇ ସୁନ୍ଦରୀଙ୍କ ଭିତରୁ ଯିଏ ତୁମର

ଅନୁରୂପ ବୋଲି ତୁମେ ମନେକରୁଛ ସେପରି ଜଣଙ୍କୁ ତୁମେ ବାଛ ଏବଂ ତାକୁ ତୁମ ସହିତ ସ୍ୱର୍ଗକୁ ନେଇଯାଅ । ମୋ ତରଫରୁ ଦେବେନ୍ଦ୍ରଙ୍କୁ ଏହି ଉପହାର ଦେଇଦେବ । ଆଉ କହିବ, 'ନାରାୟଣ ମୁନି ଏହି ଉପହାର ଆପଣଙ୍କ ପାଖକୁ ପଠାଇଛନ୍ତି । ଏହି ସୁନ୍ଦରୀ ସ୍ୱର୍ଗଲୋକର ଭୂଷଣ ରୂପେ ସର୍ବଦା ସେଠାରେ ରହିଥାନ୍ତୁ ।'

ଏବେ ତ ସମସ୍ୟା ହୋଇଗଲା । ସେମାନେ ବାଛିବେ କାହାକୁ—ଜଣେ ଅନ୍ୟ ଜଣଙ୍କଠାରୁ ହେଲେ ଅଧିକ ସୁନ୍ଦରୀ । ଭଗବାନଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ସେହି ସୁନ୍ଦରୀଙ୍କ ଭିତରୁ ଉର୍ବଶୀ ନାମକ ଜଣେ ଅପ୍‌ସରାଙ୍କୁ ସ୍ୱର୍ଗୀୟ ଅପ୍‌ସରାମାନେ ସମ୍ମୁଖରେ ଧାରଣକରି, ସମସ୍ତଙ୍କର ଅଗ୍ରଣୀକରି, ପ୍ରଭୁଙ୍କୁ ପ୍ରଣାମକରିବା ପରେ ସ୍ୱର୍ଗଲୋକକୁ ପ୍ରତ୍ୟାବର୍ତ୍ତନ କଲେ । ସେମାନେ ଯାହା ଯାହା ଘଟିଲା ସମସ୍ତ କଥା ଅତି ପ୍ରାଞ୍ଜଳଭାବରେ ଗୋଟି ଗୋଟି ଦେବେନ୍ଦ୍ରଙ୍କ ସମ୍ମୁଖରେ ବଖାଣି ଦେଲେ । ସେହି ସମସ୍ତ କଥା ଶୁଣି ସୁରପତି ତଥା ସଭାରେ ଉପସ୍ଥିତ ଅନ୍ୟ ସୁରଗଣ ଅତି ବିସ୍ମିତ ତଥା ଭୟଭୀତ ହୋଇଗଲେ । ଏହିପରି ହେ ରାଜନ୍ ! ଏହି ନର-ନାରାୟଣ ଭଗବାନ୍ ତପସ୍ୱୀଙ୍କ ବେଶ ଧାରଣ କରି ଅବତାର ଗ୍ରହଣ ପୂର୍ବକ କର୍ମତ୍ୟାଗ ରୂପ ନିବୃତ୍ତି ମାର୍ଗର ଉପଦେଶ ଦେଇଛନ୍ତି ।

''ବ୍ରହ୍ମଲୋକରେ ଥରେ ହଂସାବତାର ହୋଇଥିଲା । ବ୍ରହ୍ମାଙ୍କୁ ଯେତେବେଳେ ସନକାଦି ମୁନିମାନେ ଥରେ ପ୍ରଶ୍ନ କରିଥିଲେ, ବ୍ରହ୍ମା ସେହି ପ୍ରଶ୍ନର ଉତ୍ତର ଦେଇ ପାରିନଥିଲେ, ସେତେବେଳେ ଯେଉଁ ମହାନ୍ ସଂକଟ ଉପସ୍ଥିତ ହୋଇଥିଲା, ତାହା ଦୂର କରିବାପାଇଁ ଭଗବାନ୍ ସ୍ୱଚ୍ଛ, ଶୁଭ୍ର ହଂସ ରୂପ ଧାରଣ କରି ସେଠାରେ ଆବିର୍ଭାବ ହୋଇଥିଲେ ଏବଂ ଯଥାର୍ଥ ଉତ୍ତର ପ୍ରଦାନ କରି ଅନ୍ତର୍ହିତ ହୋଇଯାଇଥିଲେ ।''

''ମହର୍ଷି ଅତ୍ରିଙ୍କ ପତ୍ନୀ ଅନୁସୂୟାଙ୍କ ଠାରେ ବି ଭଗବାନ ଦତ୍ତାତ୍ରେୟ ରୂପରେ ପ୍ରକଟ ହୋଇଥିଲେ, ଏବଂ ସେ ତ୍ୟାଗମାର୍ଗର ଉପଦେଶ ଦେଇଥିଲେ । ସନକ, ସନନ୍ଦନ, ସନାତନ ଆଉ ସନତକୁମାର, ଏହି ଚାରି କୁମାର ହେଉଛନ୍ତି ଭଗବାନଙ୍କର ଅବତାର । ମାୟାରେ ଅଲିପ୍ତ ରହି ସଂସାରରେ କିପରି ବିଚରଣ କରିବାକୁ ହୁଏ, ତାହା ଦର୍ଶାଇବାକୁ ଯାଇ ଭଗବାନ ଚାରି କୁମାରଙ୍କ ରୂପରେ ବ୍ରହ୍ମାଙ୍କର ମାନସ ପୁତ୍ର ହୋଇଥିଲେ ।''

''ରାଜନ୍ ! ଆମ ପିତା ଭଗବାନ୍ ଋଷଭଦେବ ବି ଭଗବାନ୍‌ଙ୍କର ଅବତାର ଥିଲେ । ସେ ପରମହଂସ ଧର୍ମର ଉପଦେଶ ଦେବା ଉଦ୍ଦେଶ୍ୟରେ ଅବତାର ହୋଇଥିଲେ ।''

''ଭଗବାନ୍ ହୟଗ୍ରୀବାବତାର ଧାରଣ କରି ବେଦକୁ ଉଦ୍ଧାର କରିଥିଲେ । ଏହି ଭଗବାନ୍ ହୟଗ୍ରୀବଙ୍କର ସମ୍ପୂର୍ଣ୍ଣ ଶରୀର ଥିଲା ମଣିଷଙ୍କ ଭଳି, କିନ୍ତୁ ଗ୍ରୀବାର ଉପର ଅଂଶ ହୟ ବା ଅଶ୍ୱ ଭଳି ଥିଲା । ଏଣୁ ସେ ହୟଗ୍ରୀବ ନାମରେ ପ୍ରସିଦ୍ଧ ହୋଇଥିଲେ ।''

''ପ୍ରଳୟ ସମୟରେ ଭଗବାନ ମତ୍ସ୍ୟାବତାର ଧାରଣ କରି ପ୍ରଳୟ ସମୁଦ୍ରରୁ ମନୁ, ପୃଥ୍ୱୀ ତଥା ଔଷଧିସମୂହକୁ ରକ୍ଷା କରିଥିଲେ ।''

''ଏହା ପରେ ଭଗବାନ ସୂକର ଅବତାର ଧାରଣ କରି ଦିତିନନ୍ଦନ ଆଦି ଅସୁର ହିରଣାକ୍ଷକୁ ବଧ କଲେ ।''

''ସେହି ଭଗବାନ୍ ପୁଣି କଚ୍ଛପ ରୂପ ଧାରଣକରି ସମୁଦ୍ର-ମନ୍ଥନ ସମୟରେ ବୁଡ଼ିଯାଉଥିବା ମନ୍ଦରାଚଳକୁ ଉଦ୍ଧାର କରିଥିଲେ ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାମୁନି ଦ୍ରୁମିଳ ଅନ୍ୟ ଅବତାର ପ୍ରସଙ୍ଗ ଯେପରି ବର୍ଣ୍ଣନା କରିଥିଲେ ତାହାକୁ ଅତି ସଂକ୍ଷେପରେ ମୁଁ ବର୍ଣ୍ଣନା କରୁଛି । ଏହା ପରର କଥା ଶୁଣନ୍ତୁ ।''

**ଛପ୍ପୟ**

*ହଂସ ଔର ସନକାଦି ଋଷଭ ହୟଗ୍ରୀବ ମତ୍ସ୍ୟ ହରି ।*
*କିୟୋ ଅବନି ଉଦ୍ଧାର ବେଦ ବାରାହ ରୂପ ଧରି ।।*
*ପୁନି ପ୍ରଭୁ କଚ୍ଛୁଆ ବନେ ପୀଠ ମନ୍ଦର ଗିରି ଧରେୟା ।*
*ବନି ହରି ଗଜକୂଁ ଗ୍ରାହ ବକ୍ରତୈଂ ଖୈଂଚି ଉବାରେୟା ।।*
*ବାଲଖିଲ୍ୟ ଉଦ୍ଧାର କରି, ଇନ୍ଦ୍ର ଶାପ ରକ୍ଷା କରୀ ।*
*ଅସୁର ବନ୍ଦିନୀ ବନୀଂ ବହୁ, ସୁରଲଲନନି ବିପଦା ହରୀ ।।*



# ଅନ୍ୟ ଅବତାର ଚରିତ

**ଏବଂବିଧାନି କର୍ମାଣି ଜନ୍ମାନି ଚ ଜଗତ୍ପତେଃ ।**
**ଭୂରୀଣି ଭୂରିୟଶସୋ ବର୍ଣ୍ଣିତାନି ମହାଭୁଜ ।।☆**

(ଶ୍ରୀ ଭା. ୧୧ ସ୍କନ୍ଧ. ୪ଅ. ୨୩ ଶ୍ଳୋକ)

☆ ଏମନ୍ତେ ନାନାରୂପ ଧରେ । ସେ ହରି ସଂସାରେ ବିହରେ ।।
କେ ତା'ର ଗୁଣ କର୍ମ ସୁଖେ । ସଂଖ୍ୟା କରିବ ସପ୍ତଲୋକେ ।।
(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୬ଅ.)

## ଛପ୍ପୟ

କଲପ କଲପ ମନୁ ଭୟେ ଲୟୋ ଅବତାର ସବନିମହଁ ।
ଲୟୋ ସୁରନିକୋ ପକ୍ଷ ସୁରାସୁର ସବହି ରନନିମହଁ ।।
ଜୈ ବାମନ ଅବତାର ଛଲେ ବଲି ତ୍ରିଭୁବନ ପାଲ୍ୟୋ ।
ପରଶୁରାମ ବନି ଗୟେ କ୍ଷତ୍ର କୁଲ ପାପୀ ମାରର୍‌ୟୋ ।।
ରାମ ରୂପ ତେଂ ଉଦଧି ପୈ, କରେ୍ୟା ସେତୁ ରାବନ ହନେ୍ୟା ।
ଜଗ ଉଦ୍ଧାରକ ମୁକ୍ତିପ୍ରଦ, ଚରିତସେତୁ ତାତେଂ ବନେ୍ୟା ।।

ସଂସାରରେ ଭଗବାନ୍ ଅବତାର ରୂପ ଧାରଣ କରି ଅଦ୍‌ଭୁତ ଏବଂ ମନୋହାରିଣୀ ଲୀଳା କରି ନଥିଲେ, ଏହି ସଂସାର ରୌରବ ନର୍କ ହୋଇଯାଇ ଥାଆନ୍ତା । ସଂସାରରେ ଯାହା କିଛି ସୌନ୍ଦର୍ଯ୍ୟ ଅଛି ବା ଦେଖାଯାଏ, ଯେତିକି ଲଳିତ ଚରିତ ଅଛି, ସବୁ ହେଉଛି ଭଗବାନଙ୍କର ଅବତାରମାନଙ୍କର । ତାଙ୍କର ଅଂଶାବତାର, କଳାବତାର ସଂସାରରେ ଶାନ୍ତି ସ୍ଥାପନକରି ମାୟା-ବଦ୍ଧ ପ୍ରାଣୀମାନଙ୍କୁ ନିଜ ଆଡ଼କୁ ଆକର୍ଷିତ କରିଥା'ନ୍ତି ।

ମହାପ୍ରାଜ୍ଞ ସୂତ କହୁଛନ୍ତି, "ହେ ମୁନିଗଣ ! ଅନେକ ଅବତାର ପ୍ରସଙ୍ଗ ମୁଁ ସଂକ୍ଷେପରେ ଓ କେତେକଙ୍କର ବିସ୍ତୃତ ଭାବରେ ପୂର୍ବରୁ କହି ସାରିଛି, ଆଗକୁ ଭଗବାନ ଓ ଉଦ୍ଧବଙ୍କ ସମ୍ବାଦରେ ହଂସାବତାର ଆଦିଙ୍କର ବିସ୍ତୃତ ବର୍ଣ୍ଣନା କରିବି । ଯୋଗେଶ୍ୱର ଦ୍ରୁମିଳ ଯେଉଁଭଳି ଅନ୍ୟ ଅବତାରଙ୍କ ପ୍ରସଙ୍ଗରେ ଅତି ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି, ମୁଁ କେବଳ ତାହାହିଁ ଏହିଠାରେ ଉପସ୍ଥାପନା କରୁଛି ।"

ମହାମୁନି ଦ୍ରୁମିଳ ରାଜା ଜନକଙ୍କୁ କହୁଛନ୍ତି, "ରାଜନ୍ ! ଭଗବାନ୍ ଥରେ ହରି ଅବତାର ଧାରଣ କରିଥିଲେ । ହରି ଅବତାର ଧାରଣ କରି ଭିନ୍ନ ଭିନ୍ନ ଭକ୍ତଙ୍କର ଭିନ୍ନ ଭିନ୍ନ ସ୍ଥାନରେ ବିପଦ ହରଣ କରିଥିଲେ ।"

ରାଜା ପଚାରିଲେ "ଭଗବନ୍ ! ହରି ଭଗବାନ୍ କେଉଁ କେଉଁ ଠାରେ କେଉଁ କେଉଁ ଭକ୍ତଙ୍କର ବିପଦ ହରଣ କରିଥିଲେ ସେମାନଙ୍କ ଭିତରୁ କେତେକ ଚରିତ କୁହନ୍ତୁ ।"

ମହାମୁନି ଦ୍ରୁମିଳ କହିଲେ, "ରାଜନ୍ ! ଭକ୍ତଙ୍କର ବିପଦ ହରଣ କରିବା ହେଉଛି ଭଗବାନଙ୍କର କାମ । ଜଣେ ଦୁଇ ଜଣଙ୍କର, ଅଥବା ଥରେ ବା ଦୁଇଥର ବିପଦ ହରଣ କରିଥିଲେ ସିନା କୁହନ୍ତି । ଗଜକୁ କୁମ୍ଭୀର ମାରି ଦେଉଥିଲା । ପ୍ରଥମେ ପ୍ରଥମେ ତ ଗଜ ତାର ପୁରୁଷାର୍ଥ ପ୍ରଦର୍ଶନ କରୁଥିଲା, କିନ୍ତୁ ଯେତେବେଳେ ତା'ର ପୁରୁଷାର୍ଥ ବିଫଳ ହୋଇଗଲା, ବୁଡ଼ିବାରେ ଲାଗିଲା, ସେତେବେଳେ ସେ ତା' ଶୁଣ୍ଢରେ ଏକ କମଳ ପୁଷ୍ପ ଟେକି ଧରି ଭଗବାନ୍‌ଙ୍କୁ ସ୍ତୁତି କରିବାରେ ଲାଗିଲା । ଭଗବାନ ହରି ତତ୍‌କାଳ ସେଠାରେ ପହଞ୍ଚି ତା'ର ବିପଦ ହରଣ କରିଥିଲେ ।"

''ବୁଢ଼ା ଆଙ୍ଗୁଠି ଟିପ ଭଳି ଏକ ଜଳପୂର୍ଣ୍ଣ ଗର୍ତ୍ତରେ ବାଳଖିଲ୍ୟ ମୁନିମାନେ ବୁଡ଼ିଯାଉଥିଲେ । ସେମାନେ ଥିଲେ ଅତି ଛୋଟ । ଗୋକ୍ଷୁରା କୃତି ଗର୍ତ୍ତ ମଧ୍ୟ ସେମାନଙ୍କ ପାଇଁ ସମୁଦ୍ର ସଦୃଶ ଥିଲା । ସେମାନେ ଯେତେବେଳେ ଅନ୍ୟ କେଉଁଠାରୁ ଶରଣ ପାଇଲେ ନାହିଁ, ଭଗବାନ ଶ୍ରୀହରିଙ୍କୁ ସ୍ତୁତି କଲେ । ସେତେବେଳେ ଭଗବାନ ହରି ସେମାନଙ୍କୁ ରକ୍ଷା କରିଥିଲେ । ସେମାନଙ୍କୁ ସମୁଦ୍ରରୂପୀ ସେହି ଗର୍ତ୍ତରୁ ଉଦ୍ଧାର କରିଥିଲେ ।''

''ଦେବେନ୍ଦ୍ର ବ୍ରାହ୍ମଣ ବୃତ୍ରାସୁରକୁ ବଧ କଲେ । ଫଳରେ ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଲା । ଭୟଭୀତ ଇନ୍ଦ୍ର ସେତେବେଳେ ମାନସରୋବରକୁ ଯାଇ ମୃଣାଳ ନାଡ଼ରେ ଆତ୍ମଗୋପନ କଲେ । ସେତେବେଳେ ବି ଭଗବାନ ହରି ଯଜ୍ଞରୂପରେ ତାଙ୍କୁ ରକ୍ଷା କରିଥିଲେ । ତାଙ୍କୁ ବ୍ରହ୍ମହତ୍ୟା ଭୟରୁ ବିମୁକ୍ତ କରିଥିଲେ ।''

''ଅସୁରମାନେ ଦେବତାଙ୍କଠାରୁ ଅଧିକ ବଳବାନ୍ ହୋଇଗଲେ । ଅସୁରମାନେ ଦେବତାଙ୍କର ସୁନ୍ଦର ସୁନ୍ଦର ଅପ୍‌ସରାଙ୍କୁ ପାତାଳକୁ ନେଇ ବନ୍ଦୀ କରି ରଖିଲେ । ସେମାନେ ଭଗବାନ୍‌ଙ୍କୁ ସ୍ତୁତି କଲେ । ଶରଣାଗତ ବତ୍ସଳ ଭଗବାନ୍ ଯାଇ ସେମାନଙ୍କୁ ରକ୍ଷା କଲେ । ଦାନବଙ୍କୁ ମାରି ବନ୍ଦିନୀ ଲଳନାଙ୍କୁ ମୁକ୍ତ କରିଥିଲେ ।''

''ହିରଣ୍ୟକଶିପୁ ଯେତେବେଳେ ତା' ପୁଅ ପ୍ରହ୍ଲାଦ ରାମ ନାମ ନେଉଥିବାରୁ ନାନା ପ୍ରକାର ଯାତନା ଦେବାରେ ଲାଗିଲା ସେତେବେଳେ ଭଗବାନ ନୃସିଂହ ରୂପ ଧାରଣ କରି ଅସୁରରାଜକୁ ମାରି ଭକ୍ତ ପ୍ରହ୍ଲାଦଙ୍କୁ ରକ୍ଷା କରିଥିଲେ । ଏହି ବିଚିତ୍ରାବତାର ନୃସିଂହ ସଜ୍ଜନଙ୍କୁ ସବୁବେଳେ ଅଭୟ ପ୍ରଦାନ କରୁଥା'ନ୍ତି ।''

''ଯେଉଁ ଯେଉଁ ସମୟରେ ଅସୁରମାନେ ସୁରଙ୍କ ସହିତ ଯୁଦ୍ଧ କରୁଥା'ନ୍ତି ସେହି ସେହି ସମୟରେ ଭଗବାନ ଆଶ୍ରିତ ସୁରଙ୍କ ପକ୍ଷ ନେଇ ଅସୁରଙ୍କ ସହିତ ଯୁଦ୍ଧ କରିଛନ୍ତି ଓ ସେହି ଆତତାୟୀ ଅସୁରଙ୍କୁ ବଧ କରି ଦେବତାଙ୍କୁ, ଯଥା ଇନ୍ଦ୍ରଙ୍କୁ ରକ୍ଷା କରିଛନ୍ତି । ଏହିଭଳି ପ୍ରତ୍ୟେକ ମନ୍ୱନ୍ତରରେ ଭଗବାନ ଅଜିତାଦି ଅବତାର ଧାରଣ କରି ସମସ୍ତ ଅବତାରଙ୍କୁ ପାଳନ କରିଥା'ନ୍ତି, ଦେବତାଙ୍କୁ ରକ୍ଷା କରିଥା'ନ୍ତି, ଧର୍ମର ପ୍ରଚାର ପ୍ରସାର କରନ୍ତି ।''

''ଏହି ମନ୍ୱନ୍ତରରେ ପରମ ଦାନୀ ଅସୁରରାଜ ବଳି ତ୍ରିଭୁବନକୁ ଅଧିକାର କରିଦେଇ ଥିଲା । ଇନ୍ଦ୍ରଙ୍କୁ ଇନ୍ଦ୍ରାସନରୁ ହଟାଇ ଦେଇଥିଲା । ବଳି ରାଜା ବଡ଼ ଧର୍ମାତ୍ମା ଥିଲା । ତେଣୁ ଯୁଦ୍ଧ କରି ତାକୁ ଭଗବାନ ତ ମାରିପାରି ନଥାନ୍ତେ; ଏଣୁ କ୍ଷୁଦ୍ରକାୟ ବାମନ ରୂପ ଧରି, ତା ଦୁଆରେ ଭିକ୍ଷୁକ ରୂପରେ ପହଞ୍ଚିଗଲେ । ବଳିରାଜାକୁ ତିନି ପାଦ ମାତ୍ର ଭୂମି ମାଗିଲେ । ଦାନ ସଂକଳ୍ପ ହୋଇଯିବା ପରେ ଛଳନା କରି ତ୍ରିବିକ୍ରମ ରୂପ ଧାରଣ କରି ତ୍ରିଭୁବନକୁ ମାପି ନେଇଗଲେ । ସେ ଛନ୍ଦକପଟରେ ଦେବତାଙ୍କର ଚାଲିଯାଇଥିବା ରାଜ୍ୟକୁ

ଅସୁରରାଜ ବଳିଠାରୁ ଛଡ଼ାଇ ଆଣି ସେମାନଙ୍କୁ ପୁଣି ପ୍ରଦାନ କଲେ ଏବଂ ନିଜେ ଉପେନ୍ଦ୍ର ହୋଇ ତାହାକୁ ପାଳନ କରିବାରେ ଲାଗିଲେ ।''

''ଯେତେବେଳେ ହୈହୟବଂଶୀ ରାଜା ଅନ୍ୟାୟୀ, ଅତ୍ୟାଚାରୀ, ଦୁରାଚାରୀ, ବ୍ରହ୍ମଦ୍ୱେଷୀ ହୋଇଗଲେ, ତଥା ଅନ୍ୟ ସମସ୍ତ କ୍ଷତ୍ରିୟ ବି ତାହାର ଅନୁଗାମୀ ହୋଇଗଲେ, ସେତେବେଳେ ଭଗବାନ୍ ଭୃଗୁକୁଳରେ ପରଶୁରାମ ଅବତାର ଧାରଣକରି ତୀକ୍ଷ୍ଣ ପରଶୁ ମାଧ୍ୟମରେ ଏକବିଂଶ ବାର ପୃଥିବୀକୁ କ୍ଷତ୍ରିୟହୀନ କରିଦେଇଥିଲେ ।''

''ସେହି ଭଗବାନ ଅଯୋଧ୍ୟାରେ ଅବତୀର୍ଣ୍ଣ ହୋଇ ପିତାଙ୍କ ଆଦେଶରେ ବଣକୁ ଗଲେ । ନିଜର ପ୍ରିୟାଙ୍କୁ ଦଶଶିର ହରଣ କରିନେଇଯିବାରୁ ସେ ସମୁଦ୍ର ଉପରେ ସେତୁ ବାନ୍ଧି, ପ୍ରିୟାଙ୍କୁ ହରଣ କରିଥିବା ରାକ୍ଷସରାଜକୁ ତା'ର ସୁବର୍ଣ୍ଣପୁରୀ ଲଙ୍କା ସହିତ ବିନାଶ କରିଥିଲେ । ସେହି ଅଯୋଧ୍ୟା କୁଳମଣ୍ଡନ ଦଶରଥ ନନ୍ଦନ, କୌଶଲ୍ୟା ଆନନ୍ଦବର୍ଦ୍ଧନ ଜାନକୀ-ଜୀବନ ଶ୍ରୀରଘୁନନ୍ଦନଙ୍କର ଜୟ ହେଉ, ସଦା ବିଜୟ ହେଉ ।''

ମହାମୁନି ଦ୍ରୁମିଳ କହୁଛନ୍ତି, ''ରାଜନ୍ ! ସୀତାପତିଙ୍କ ଅବତାର ଲୀଳା ତ ଆମେ ଦେଖିଛୁ । ଏହାପରେ ଭୂମିର ଭାର ହରଣ କରିବା ପାଇଁ ଭଗବାନ୍ ବାସୁଦେବ ଶ୍ରୀକୃଷ୍ଣ ରୂପରେ ଅବତରିତ ହୋଇ ବୃଦ୍ଧି ପାଉଥିବା ଭୂମିର ଭାରକୁ ଦୂର କରିବେ । ପୃଥିବୀରେ ପ୍ରକଟ ହୋଇ ଏପରି ଅକୃତ କାର୍ଯ୍ୟ କରିବେ ଯାହା ଦେବତାଙ୍କ ପାଇଁ ବି ଅତି ଦୁଷ୍କର ହୋଇଥିବ ।''

''ପୁଣି ସେ ହିଁ ବୁଦ୍ଧ ହୋଇ ସେହି ଅସୁରଙ୍କୁ ବିମୋହିତ କରିବେ, ଯିଏ ବ୍ରାହ୍ମଣ ବେଶରେ ଉତ୍ପନ୍ନ ହୋଇ ଯଜ୍ଞର ଅନଧିକାରୀ ହୋଇ ସୁଦ୍ଧା ମୃଷା ଯାଗ ଯଜ୍ଞ କରିବେ ଓ ତହିଁରେ ଜିହ୍ୱା ଲୋଲୁପତାର ବଶୀଭୂତ ହୋଇ ନାନା ପ୍ରକାର ଅବିହିତ କର୍ମ କରିବେ ।''

''ଏହାପରେ ସେ ହିଁ ବାସୁଦେବ କଲ୍କି ରୂପରେ ଅବତାର ଧାରଣ କରି ମ୍ଳେଛ ନାମ ମାତ୍ରକ ରାଜା ହୋଇ ଅନ୍ୟାୟ ଓ ଅଧର୍ମର ପ୍ରଚାର କରୁଥିବା ଦୁଷ୍ଟଙ୍କୁ ବଧ କରି ପୁନଃ ସତ୍ୟଯୁଗ ପ୍ରତିଷ୍ଠା କରିବେ ।''

ମହାମୁନି ଦ୍ରୁମିଳ କହୁଛନ୍ତି, ''ରାଜନ୍ ! ଏତିକି ଅବତାର ହୋଇଛନ୍ତି ବା ଆଉ ଏତିକି ଅବତାର ହେବେ ବୋଲି ଆପଣ ଜାଣନ୍ତୁ ନାହିଁ । ଅବତାର ଅସଂଖ୍ୟ । ସେମାନଙ୍କର ଗଣନା ନାହିଁ କି ସୀମା ନାହିଁ । ସେହି ଭୂମା ଭଗବାନଙ୍କର ଶ୍ରୀଅଙ୍ଗରୁ ଅନବରତ ଅବତାର ଆବିର୍ଭାବ ହେବାରେ ଲାଗିଥାଏ । ସଂସାରରେ ଯାହା ଯାହା ବିଭୂତିମାନ୍ ଶ୍ରୀମାନ୍ ଅଛି, ସେ ସବୁଥିରେ ଶ୍ରୀହରିଙ୍କର କଳା ଅଛି । କଳା ତ ସବୁଥିରେ ଅଛି । ସମସ୍ତ ହେଉଛି ତାଙ୍କର ଅଂଶ । କିନ୍ତୁ ଯେଉଁଠାରେ କଳା ଅଂଶର ପ୍ରବଳତା ହୋଇଯାଏ ସେତେବେଳେ

ଅବତାର ସଂଜ୍ଞା ହୋଇଯାଏ । ଋଷି ମହର୍ଷି ସମସ୍ତେ ଜ୍ଞାନାବତାର । ଏହି ଭକ୍ତବୃନ୍ଦ ହେଉଛନ୍ତି ପ୍ରେମାବତାର । ଏହି ପରୋପକାରୀ ମହାପୁରୁଷମାନେ ସମସ୍ତେ କ୍ରିୟାଶକ୍ତିର ଅବତାର । ଏହିଭଳି ହେ ବିଶାଳ ବାହୁବାନ୍ ରାଜନ୍ ! ଭଗବାନଙ୍କର ଅବତାର ପ୍ରସଙ୍ଗରେ ଅତି ସଂକ୍ଷେପରେ ଆପଣଙ୍କୁ କହିଲି । ସେହି ଅତୁଳ କୀର୍ତ୍ତି ଅଚ୍ୟୁତଙ୍କର ଏହି ଅବନୀରେ ଅନେକ ଅବର୍ଣନୀୟ ଅବତାର ହୋଇଛି, ସେଥିମଧ୍ୟରୁ କେତେକଙ୍କର ବର୍ଣ୍ଣନା କଲି । ସନ୍ଥପୁରୁଷ ଆଉରି ଅନେକ ଅବତାରଙ୍କ କଥା ଗାନ କରନ୍ତି । ଆପଣ ପଚାରିବାରୁ ମୁଁ ଅବତାରଙ୍କ କଥା କହିଲି, ଏବେ ଆପଣ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି ?''

ଏହା ଶୁଣି ରାଜା ନିମି କହିଲେ, ''ଭଗବନ୍ ! ଭଗବାନଙ୍କର ଭଜନ ସମସ୍ତେ କରିବା ଉଚିତ । କିନ୍ତୁ କ'ଣ କରିବା ଭଗବନ୍ ! କାମନା ରାଶି ଏହି ପ୍ରାଣୀଙ୍କୁ ବିବଶ କରିଦେଉଛି । ମନରେ ଯେଉଁ ବିଷୟ ଭୋଗ ନିମନ୍ତେ ପ୍ରବଳ ହେବାକ୍ଷଣି ଚିତ୍ତ ଚଞ୍ଚଳ ହୋଇଯାଉଛି, ଲୋକଲଜ୍ୟା ପ୍ରତି ଦୃଷ୍ଟି ରହୁନାହିଁ, ଗୁରୁଜନଙ୍କ ପ୍ରତି ଶିଷ୍ଟାଚାର ରହୁନାହିଁ । କାମନାରାଶି ମନକୁ ବ୍ୟାକୁଳ କରିଦେଉଛି, ଇନ୍ଦ୍ରିୟଙ୍କୁ ବିବଶ କରିଦେଉଛି । ଏପରି ଦଶା ସେହି ମାନଙ୍କର ହୋଇଥାଏ ଯେଉଁମାନେ ଇନ୍ଦ୍ରିୟଙ୍କୁ ବଶୀଭୂତ କରିନଥାନ୍ତି । ଯେଉଁମାନେ ଇନ୍ଦ୍ରିୟଙ୍କ ଉପରେ ବିଜୟ ଲାଭ କରିନଥାନ୍ତି । ସେପରି ଲୋକମାନେ ନିରନ୍ତର କାମ ଚିନ୍ତନ ହିଁ କରୁଥାଆନ୍ତି । ରାମଙ୍କ ରୂପକୁ ସେମାନେ ଭୁଲି ଯାଇଥା'ନ୍ତି । ଉପରେ ଉପରେ ବେଶ ଧାରଣ କରିଥାନ୍ତି, ମାଳା ଗଡାଉଥା'ନ୍ତି, କିନ୍ତୁ ଭିତରେ ଭିତରେ କାମ ହିଁ ଚିନ୍ତନ କରୁଥାନ୍ତି । ଏପରି ଇନ୍ଦ୍ରିୟଙ୍କ ଅଧୀନରେ ରହି ଭଗବାନଙ୍କର ଚିନ୍ତନରହିତ କାମୀଙ୍କର କି ଦଶା ହୋଇଥାଏ, ମୃତ୍ୟୁପରେ ସେମାନେ କେଉଁ ଗତି ପାଆନ୍ତି କୃପା କରି ତାହା କୁହନ୍ତୁ ।''

ଏପରି କଥା ଶୁଣି ଯୋଗେଶ୍ୱର ଦ୍ରୁମିଳ କହିଲେ, ''ରାଜନ୍ ! ଆପଣଙ୍କର ଏହା ଅତି ଗୂଢ଼ ପ୍ରଶ୍ନ । ହେ ନରେନ୍ଦ୍ର ! ମୋର ଏଇ ଭାଇ ଚମସ ଏହି ବିଷୟର ଜଣେ ବିଶେଷଜ୍ଞ । ସେ ଆପଣଙ୍କର ଏହି ପ୍ରଶ୍ନକୁ ଅତି ସୁନ୍ଦର ଭାବରେ ବୁଝାଇ ପାରିବେ । ଆପଣ ତେଣୁ ଏହି ପ୍ରଶ୍ନ ତାଙ୍କୁ ପଚାରନ୍ତୁ ।''

ରାଜା କହିଲେ, ''ଭଗବନ୍ ! ଆପଣଙ୍କ ଭିତରୁ ଯିଏ ହୁଅନ୍ତୁ, ମୋର ଏହି ପ୍ରଶ୍ନର ଉତ୍ତର ଦେଇପାରନ୍ତି । ମୋ ପାଇଁ ଆପଣମାନେ ସମସ୍ତେ ଏକାଭଳି । ଆପଣମାନେ ପ୍ରତ୍ୟେକେ ଆତ୍ମଜ୍ଞାନୀଙ୍କ ମଧ୍ୟରେ ବରିଷ୍ଠ ଏବଂ ମୁନିମାନଙ୍କ ମଧ୍ୟରେ ଶ୍ରେଷ୍ଠ ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଏପରି କହି ରାଜା ଯୋଗେଶ୍ୱର ଚମସଙ୍କ ଆଡ଼କୁ ଆଗ୍ରହର ସହିତ ଚାହିଁ ରହିଲେ । ଏବେ ଯେଉଁଭଳି ଯୋଗେଶ୍ୱର ଚମସ ମୁନି ରାଜାଙ୍କ ପ୍ରଶ୍ନର ଉତ୍ତର ଦେବେ ତାହା ମୁଁ ବର୍ଣ୍ଣନା କରୁଛି ।''

### ଛପ୍ପୟ

କୃଷ୍ଣ ରୂପ ଧରି କରେଂ କଲିତ୍ର କ୍ରୀଡ଼ା କଂସାରୀ ।
ବୁଦ୍ଧ ରୂପତେଂ ନିରଦୟ ହିଂସା ନାଥ ନିବାରୀ ।।
କଲ୍‌କି ଲେହିଁ ଅବତାର ଅନ୍ତ କରି କଲିକୋ କେଶବ ।
ସତୟୁଗକୋ ଆରମ୍ଭ କରେଂ କରି କ୍ରୂରନି ନିଜ ବଶ ।
ଅବତାରନିକୀ କଛୁ କଥା, କହୀ ଅଧିକ ସଂକ୍ଷେପମହଁ ।
ଝରି ଫିରିକେ ଯେ ହୀ ଚରିତ, ସବ ପୁରାନ ଅରୁ ବେଦମହଁ ।।



## ହରି-ବିମୁଖଙ୍କ ଗତି

**ଯ ଏଷାଂ ପୁରୁଷଂ ସାକ୍ଷାଦାତ୍ମପ୍ରଭବମୀଶ୍ୱରମ୍ ।**
**ନ ଭଜନ୍ତ୍ୟବଜାନନ୍ତି ସ୍ଥାନାଦ୍ ଭ୍ରଷ୍ଟାଃ ପତନ୍ତ୍ୟଧଃ ।।☆**

(ଶ୍ରୀ ଭା. ୧୧ସ୍କନ୍ଧ ୫ମ ଅ. ୩ୟ ଶ୍ଳୋକ)

### ଛପ୍ପୟ

ନିମି ପୂଛେଂ- "ପ୍ରଭୁ ! ଭକ୍ତିହୀନ ଗତି କୈସୀ ପାବେଂ ।
କହେଂ ଚମସମୁନି- "ନୃପତି ପ୍ରଶ୍ନକୋ ମରମ ବତାବେଂ ।।
ବର୍ଣ୍ଣାଶ୍ରମ ଉତ୍‌ପନ୍ନ କରେଂ ହରି ଜନକ କହାବେଂ ।
ଆଦର ତିନି ନହିଁ କରେଂ ଭଜୈଂ ନହିଁ ତେ ଗିର ଜାଵେଂ ।।
ଜୋ ଭୋରେ ଅନପଢ଼ ବିବଶ, ଭକ୍ତ ତିନହିଁ ଅପନାଇକେଂ ।
କଥା କୀରତନ ସୁଲଭ କରି, ତାରେଂ ନାମ ସୁନାଇକେଂ ।।

☆ ଏଣୁ ଏ ବିଷ୍ଣୁ ପିତାମାତା । ଗୁରୁ ବାନ୍ଧବ ଇଷ୍ଟଦାତା ।।
ଏମନ୍ତ ସ୍ୱାମୀ ସେବା ତେଜି । ଲୋଭେ ଯେ ଅନ୍ୟଦେବେ ଭଜି ।।
ସେ ପ୍ରାଣୀ ପତିତ ପାମର । ଅନ୍ତେ ପଡ଼ଇ ତମ ଘୋର ।।
(ଭାଗବତ : ଜଗନ୍ନାଥ ଦାସ : ୧୧ମ ଶ ସ୍କ. ୬ଷ୍ଠ ଅ.)

**ସଂସାରରେ ତିନି ପ୍ରକାରର ଲୋକ ଅଛନ୍ତି । ଅଜ୍ଞ, ବିଜ୍ଞ ଆଉ ଧୂର୍ତ୍ତ । ଯେଉଁମାନେ ସାଧନ ସାଧ୍ୟକୁ ଉତ୍ତମ ରୂପେ ବୁଝି ସାଧନା ଦ୍ୱାରା ସାଧ୍ୟକୁ ପାଇବା ପାଇଁ ପ୍ରଯତ୍ନଶୀଳ ଥାଆନ୍ତି ସେମାନଙ୍କୁ ବିଜ୍ଞ କୁହାଯାଏ । ଯେଉଁମାନେ ସାଧ୍ୟ ସାଧନରେ ଅନଭିଜ୍ଞ ଥାଆନ୍ତି, ଏବଂ ସେଥିରେ ସେମାନଙ୍କ କିଛି ଆଗ୍ରହ ନଥାଏ, ସେମାନଙ୍କୁ ଅଜ୍ଞ କୁହାଯାଏ ।** ସଜ୍ଜନମାନେ ଯେଉଁ ଉପଦେଶ ଦିଅନ୍ତି ତାକୁ ସରଳତାର ସହିତ ଯଥାଶକ୍ତି ପାଳନ କରୁଥାନ୍ତି । ଏପରି ପୁରୁଷ ସତ୍‌ସଙ୍ଗ ଲାଭକରି ସୁଧୁରି ଯାଆନ୍ତି । ଯେପରି ସ୍ୱତଃ ସୁନ୍ଦର ହେବାର ଶକ୍ତି ଲୁହାର ନଥାଏ, କିନ୍ତୁ ପରଶମଣି ସଂସର୍ଗରେ ତାହା ସୁନା ହୋଇଯାଏ ।

ତୃତୀୟ ପ୍ରକାର ହେଲେ ଧୂର୍ତ୍ତ । ଯେଉଁମାନଙ୍କର ପୂର୍ଣ୍ଣଜ୍ଞାନ ତ ନଥାଏ, ସାଧ୍ୟ ସାଧନ ବିଷୟରେ ତତ୍ତ୍ୱତଃ କିଛି ଜାଣି ନଥାନ୍ତି, କିନ୍ତୁ ନିଜ ସ୍ୱାର୍ଥ ସିଦ୍ଧି ନିମନ୍ତେ, ବିଷୟ ଭୋଗର ବୃଦ୍ଧି ନିମନ୍ତେ, କିଛି ଏପଟୁ ଶୁଣି, କିଛି ସେପଟୁ ଶୁଣି, କିଛି ଏହି ସ୍ଥାନରୁ ମନେପକାଇ କିଛି ସେ ସ୍ଥାନରୁ - ଏପରି କଥାମାନ କହି ବାକ୍‌ପଟୁ ହୋଇଯାଇଥା'ନ୍ତି, ସେମାନଙ୍କୁ ଧୂର୍ତ୍ତ କୁହାଯାଏ । ଏମାନେ ସରଳ ଲୋକଙ୍କୁ ଫସାଇ ଦେଇ ଏଣୁ ତେଣୁ ବୁଝାଇ ଦିଅନ୍ତି । ଶାସ୍ତ୍ରର ତାତ୍ପର୍ଯ୍ୟ ଗୋଟିଏ ପ୍ରକାର ହୋଇଥାଏ, ସେମାନେ ତା'ର ଅର୍ଥ ଅନ୍ୟପ୍ରକାର କରିଦିଅନ୍ତି । ଏପରି ଜ୍ଞାନଲବ୍‌ଧ ଦୁର୍ବିଦଗ୍‌ଧ ମୂର୍ଖଙ୍କୁ ବେଦଗର୍ଭ ଭଗବାନ୍, ଲୋକ ପିତାମହ ବ୍ରହ୍ମା ବି ବୁଝାଇ ପାରନ୍ତି ନାହିଁ । ସେମାନେ ବୁଝିବାକୁ ସିନା ଚେଷ୍ଟାକଲେ ବୁଝାଇ ଦେଇ ହୁଅନ୍ତା, ସେମାନଙ୍କର ତ ଏକମାତ୍ର ଇଷ୍ଟ ଥାଏ ଶାରୀରିକ ସୁଖ ନିମନ୍ତେ । ତାହା ଯେପରି ମିଳି ପାରିବ ସେପରି କାମକୁ ସେମାନେ କେବଳ କରିଥାଆନ୍ତି । ଏପରି ଲୋକଙ୍କୁ ଉପଦେଶ ଦେବା ଅର୍ଥ ଫଟାଭୂଇଁକୁ ଚାଷ କରିବା ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ନିମି ଯେତେବେଳେ 'ଭକ୍ତିହୀନ ଲୋକ କେଉଁ ଗତି ପାଇଥାଏ ବୋଲି ପ୍ରଶ୍ନ କଲେ, ସେତେବେଳେ ମହାଯୋଗଶ୍ୱେର ଚମସ କହିଲେ, ''ରାଜନ୍ ! **ଭଗବାନଙ୍କ ସହିତ ସମସ୍ତଙ୍କର ସମ୍ବନ୍ଧ କିପରି ତାହା ପ୍ରଥମେ ଆପଣ ଚିନ୍ତା କରନ୍ତୁ । ଏମିତି ଦେଖିବାକୁ ଗଲେ ଭଗବାନଙ୍କ ସହିତ ଯିଏ ଯେଉଁଭଳି ସମ୍ବନ୍ଧ ରଖେ ଭଗବାନ୍ ତା' ପାଖରେ ସେହିଭଳି ହୋଇ ଯାଇଥା'ନ୍ତି— କିନ୍ତୁ ସର୍ବସାଧାରଣଙ୍କର ତାଙ୍କ ସହିତ ସମ୍ବନ୍ଧ ତ ଜନ୍ୟ ଓ ଜନକଙ୍କର ହୋଇଥାଏ ।** ବର୍ଣ୍ଣାଶ୍ରମୀ କହିଲେ ଚାରିବର୍ଣ୍ଣ ଓ ଚାରି ଆଶ୍ରମକୁ ବୁଝାଏ । ଏକ ବର୍ଣ୍ଣାଶ୍ରମେତର ପୁରୁଷ ବି ହୋଇଥା'ନ୍ତି । ଆଦି ପୁରୁଷ ଶ୍ରୀମନ୍ନାରାୟଣଙ୍କର ସତ୍ତ୍ୱାଂଶରୁ ତାଙ୍କର ମୁଖ୍ୟ ଭାଗ ମୁଖରୁ ବ୍ରାହ୍ମଣ ବର୍ଣ୍ଣର ଉତ୍ପତ୍ତି ହୋଇଛି । ସତ୍ତ୍ୱ ଆଉ ରଜର ମିଶ୍ରଣରେ ତାଙ୍କର ବାହୁ ଦ୍ୱାରା କ୍ଷତ୍ରିୟ ବର୍ଣ୍ଣର ଉତ୍ପତ୍ତି ହୋଇଛି । ରଜ ଆଉ ତମର

ମିଶ୍ରଣରେ ତାଙ୍କର ଜଙ୍ଘରୁ ବୈଶ୍ୟ ବର୍ଣ୍ଣ ଉତ୍ପତ୍ତି ହୋଇଛି । ଆଉ ତମୋଗୁଣର ଅଂଶରୁ ତାଙ୍କର ଚରଣ ଦ୍ୱାରା ଶୂଦ୍ର ବର୍ଣ୍ଣର ଉତ୍ପତ୍ତି ହୋଇଛି । ପୃଷ୍ଠଭାଗରୁ ବର୍ଣ୍ଣେତର ଜନଙ୍କର ଉତ୍ପତ୍ତି ହୋଇଛି । ଏହିଭଳି ସେହି ଭଗବାନ୍‌ଙ୍କର ଶିରୋଭାଗରୁ ସନ୍ୟାସାଶ୍ରମ, ଆଉ ଜଘନ ପ୍ରଦେଶରୁ ଗୃହସ୍ଥାଶ୍ରମର ଉତ୍ପତ୍ତି ହୋଇଛି ।''

ରାଜା ପଚାରିଲେ, ''ମହାରାଜ ! ମୁଖରୁ କ'ଣ ଦଳ ଦଳ ବ୍ରାହ୍ମଣ ବାହାରି ଆସିଲେ । ମୁଖରୁ କିପରି ଉତ୍ପନ୍ନ ହେଲେ ? ମୁଖରୁ ଉତ୍ପନ୍ନ ହୋଇଥିଲେ ବ୍ରାହ୍ମଣ ତ ଗୋଲାକାର ହୋଇଥାଆନ୍ତେ ।''

ଏପରି କଥା ଶୁଣି ମହାମୁନି ଚମସ ହସି ହସି କହିଲେ, ''ରାଜନ୍ ! ଆପଣ ଏମିତି ଅଖାଡୁଆ ପ୍ରଶ୍ନ କ'ଣ କଲେଣି ! ଯିଏ ଯେଉଁଠାରୁ ଉତ୍ପନ୍ନ ହୁଏ ତାହା କ'ଣ ସେହି ଆକାର ବିଶିଷ୍ଟ ହୋଇଥାଏ ? ଶାମୁକାରୁ ମୋତି ଉତ୍ପନ୍ନ ହୁଏ, ଶାମୁକା ତିନିକୋଣିଆ ହୋଇଥାଏ, ମୋତି କିନ୍ତୁ ଗୋଲାକାର ହୋଇଥାଏ । କାଦୁଅା ଜଳରେ କମଳ ଉତ୍ପନ୍ନ ହୁଏ । କାଦୁଅ ଯାକିଯୁକି ହୋଇ ମାଡ଼ିଯାଇଥାଏ । କମଳ ପୁଷ୍ପ କିନ୍ତୁ ପ୍ରସ୍ଫୁଟିତ ହୋଇଥାଏ, ଏହାର ଅନେକ ପାଖୁଡ଼ା ଥାଏ । ପୁଣି, ଭଗବାନଙ୍କର ମୁଖରୁ ସତରେ କ'ଣ ବ୍ରାହ୍ମଣ ପୁରୁଷ ଉତ୍ପନ୍ନ ହୋଇଛନ୍ତି ? ବ୍ରାହ୍ମଣ ବର୍ଣ୍ଣ ନାମରେ ଏକ ବର୍ଣ୍ଣ ଉତ୍ପନ୍ନ ହୋଇଛି । ଯେଉଁଭଳି ଶରୀର ଏକ, ଏହାର ସମସ୍ତ ଅଙ୍ଗ ଉପଯୋଗୀ, କିନ୍ତୁ ଏମାନଙ୍କ ମଧ୍ୟରେ ମୁଖ ହେଉଛି ଶ୍ରେଷ୍ଠ । ମୁଖରେ ଖାଇଲେ ଶରୀରର ଅଙ୍ଗ ଗୁଡ଼ିକ ସନ୍ତୁଷ୍ଟ ହୁଅନ୍ତି । ଏଣୁ ଏହାକୁ ମୁଖ୍ୟ ଅଙ୍ଗ (ମୁଖ) କୁହାଯାଏ । ଏହିଭଳି ବର୍ଣ୍ଣରେ ବ୍ରାହ୍ମଣ ହେଉଛି ମୁଖ୍ୟ । ଯେପରି ମୁଖରେ ଆହାର ଦେଲେ ସମସ୍ତ ଅଙ୍ଗର ହୃଷ୍ଟ-ପୁଷ୍ଟ ହୋଇଥାଏ, ସେହିଭଳି ବ୍ରାହ୍ମଣଙ୍କୁ ଭୋଜନ କରାଇଲେ ସମ୍ପୂର୍ଣ୍ଣ ସମାଜର କଲ୍ୟାଣ ହୁଏ । ଯେପରି ମୁଖର ତିନୋଟି ମୁଖ୍ୟ କାର୍ଯ୍ୟ- ଭାବକୁ ବୁଝି ତାହା ପ୍ରକାଶ କରିବା ବା କହିବା, ଶରୀରପୋଷଣ ନିମନ୍ତେ ଭୋଜନ କରିବା, ଆଉ ଉଦ୍‌ଗାର କରି ସେହି ସ୍ୱାଦରେ ସମସ୍ତଙ୍କୁ ସୁଖ ଦେବା । ଠିକ୍ ସେହିଭଳି ବ୍ରାହ୍ମଣଙ୍କର ବି ତିନିଟି ମୁଖ୍ୟ କାର୍ଯ୍ୟ ଅଛି । ବେଦକୁ ସ୍ୱୟଂ ପାଠକରି ଅନ୍ୟଙ୍କୁ ପଢ଼ାଇବା; ଯଜ୍ଞ ସ୍ୱୟଂ କରିବା ଆଉ ଅନ୍ୟଙ୍କ ପାଇଁ କରାଇ ଦେବା, ଦାନ ଗ୍ରହଣ କରି ଅନ୍ୟଙ୍କୁ ଦାନ ଦେବା । ଏପରି ବିପ୍ରଧର୍ମ ଭଗବାନଙ୍କର ମୁଖରୁ ଉତ୍ପନ୍ନ ହୋଇଛି ।

''ଠିକ୍ ଏହିଭଳି ବାହୁଗୁଡ଼ିକର କାମ କ'ଣ ? ଯାହା ଅନ୍ନ ମିଳେ ତାକୁ ମୁଖରେ ପକାଇଦେବା, ତେଲ ମିଳିଲେ ତାକୁ କାନରେ ପକାଇ ଦେବା, କଜଳ ମିଳିଲେ ତାକୁ ଆଖିରେ ଲଗାଇ ଦେବା । ଅର୍ଥାତ୍, ନିଜେ ଯାହା ପାଇବା ତାକୁ ଶରୀରର ଯଥାଯୋଗ୍ୟ ସ୍ଥାନରେ ନିୟୋଜିତ କରିଦେବା । କୌଣସି ଅଙ୍ଗକୁ ଆଘାତ ହେଲେ, ଅତିଶୀଘ୍ର ସେଠାରେ ପହଞ୍ଚି ତାକୁ ରକ୍ଷା କରିବା । ପାଦରେ କଣ୍ଟାବୁଡ଼ିଲେ ଅତିଶୀଘ୍ର ହାତ

ପହଞ୍ଚିଯାଏ । ଜଙ୍ଘକୁ ଜନ୍ଦା କାମୁଡ଼ିଲେ, ଅତିଶୀଘ୍ର ସେଠାରେ ପହଞ୍ଚି ଜନ୍ଦାକୁ ହଟାଇ ଦେବା । କେହିଜଣେ ଗାଲକୁ ଚାପୁଡ଼ା ମାରିବାକୁ ଯାଉଛନ୍ତି, ହାତ ସହସା ତାର ପ୍ରତିରୋଧ କରିବା । ଆଖିରେ କିଛି ପଡ଼ିଗଲେ ସହସା ସେଠାରେ ପହଞ୍ଚି ଆଖିକୁ ରକ୍ଷା କରିବା ନିମନ୍ତେ ତତ୍ପର ହୋଇଯିବା । ଏହିଭଳି ବେଦାଧ୍ୟୟନ, ଯଜ୍ଞ ଆଉ ଦାନାଦି କରି ସୁଦ୍ଧା ସକଳ ପ୍ରଜାଙ୍କୁ ଦୁଃଖରୁ ରକ୍ଷା କରିବା ।

"ସକଳ ସ୍ତ୍ରୀ ଓ ପୁରୁଷଙ୍କର ଶରୀରରେ ଶ୍ରେଷ୍ଠ ଅଙ୍ଗ ଉରୁ ହିଁ ଆଦି ହୋଇଥାଏ । ପ୍ରଜା-ସୃଜନ ଓ ଉତ୍ପାଦନ ଏହିଠାରୁ ହୋଇଥାଏ । ଶ୍ରମ କରି ସତ୍ୟାନୃତ ଦ୍ୱାରା ଦ୍ରବ୍ୟୋପାର୍ଜନ କରି ପ୍ରଜାଙ୍କ ସମସ୍ତ ଆବଶ୍ୟକତା ପୂରଣ କରିଥାଏ । ଏଣୁ ପ୍ରଜାଙ୍କ ମଧ୍ୟରେ ବୈଶ୍ୟକୁ ଶ୍ରେଷ୍ଠ କୁହାଯାଏ । ଆଉ ବୈଶ୍ୟକୁ ଅନ୍ୟ-ପ୍ରକାରରେ ଶ୍ରେଷ୍ଠ ବା ସେଠ ବୋଲି କୁହନ୍ତି । ସେ କୃଷି, ଗୋରକ୍ଷା ତଥା ବାଣିଜ୍ୟ ଦ୍ୱାରା ପ୍ରଜାଙ୍କୁ ଅନ୍ନ, ଘୃତ ତଥା ସମସ୍ତ ଆବଶ୍ୟକ ବସ୍ତୁ ପ୍ରଦାନ କରିଥାଏ ।

ପାଦର କାମ ହେଉଛି ଶରୀରର ସମସ୍ତ ବୋଝ ଧାରଣ କରି ରଖିବା । ଶରୀର ରକ୍ଷା ନିମିତ୍ତ ଯେଉଁ ଆଡ଼କୁ ହେଉ ଦୌଡ଼ି ପଳାଇବା । ସବୁଠାରୁ ତଳେ, ଭୂମିରେ ରହିବା, ଶରୀର ପାଇଁ ସବୁ ସହ୍ୟ କରିବା । ଏପରି ସେବା ପ୍ରଧାନ ଶୂଦ୍ର-ଧର୍ମ ଭଗବାନଙ୍କର ଚରଣରୁ ଉତ୍ପନ୍ନ ହୋଇଛି । ଚରଣରୁ ଯେ ପଂକ୍ତି ପଂକ୍ତି ଶୂଦ୍ର ବାହାରି ଆସିଲେ, ସେପରି କଥା ନୁହେଁ । ସମାଜରୂପୀ ଶରୀରର ଅଙ୍ଗରୁ ତତ୍ତଦ୍‌ଗୁଣ ସମ୍ପନ୍ନ ଚାରି ଧର୍ମ ଉତ୍ପନ୍ନ ହୋଇଛି ।"

ରାଜା କହିଲେ, "ହଁ ଭଗବନ୍ ! ବର୍ଣ୍ଣ-ଧର୍ମର ଉତ୍ପତ୍ତି କଥା ତ ମୁଁ ଜାଣିଗଲି । ଏବେ ଆଶ୍ରମ-ଧର୍ମର ଉତ୍ପତ୍ତି କଥା କୁହନ୍ତୁ ।"

ମୁନି କହିଲେ, "ରାଜନ୍ ! ଯେଉଁଥିରେ ଚାରି ଆଡୁ ପରିଶ୍ରମ କରିବାକୁ ପଡ଼େ ଆଉ ପ୍ରସନ୍ନତା ମିଳେ, ତାହା ହିଁ ହେଉଛି ଆଶ୍ରମ ଧର୍ମ । ସନ୍ୟାସ ଧର୍ମର ଉତ୍ପତ୍ତି ଭଗବାନଙ୍କର ମସ୍ତକରୁ ହୋଇଛି । ଶରୀରରେ ମସ୍ତକ ହେଉଛି ମୁଖ୍ୟ । ହାତ, ଗୋଡ଼, ପାଦ, ଜଙ୍ଘ, ନାକ, କାନ କାଟିଦେଲେ ସେ ହୁଏତ ବଞ୍ଚିଯାଇ ପାରେ, କିନ୍ତୁ ଯଦି ମସ୍ତକ ଛେଦନ କରାଯାଏ ତେବେ ସେ କୌଣସି ପ୍ରକାରରେ ଜୀବିତ ରହିପାରିବ ନାହିଁ । ଏହିଭଳି **ସନ୍ୟାସୀର ମୂଳ ଧର୍ମ ହେଉଛି ତ୍ୟାଗ** । ଗ୍ରହଣ କରିବାର ପ୍ରବୃତ୍ତି ତ ସ୍ୱାଭାବିକ ଥାଏ, କିନ୍ତୁ ଶ୍ରମ କରି ତ୍ୟାଗ, ସନ୍ୟାସର ଦୀକ୍ଷା ନେବା ଉଚିତ । ତ୍ୟାଗ ହେଉଛି ମୁଖ୍ୟ । ସେହି ଧର୍ମ ଭଗବାନଙ୍କ ମସ୍ତକରୁ ସନ୍ୟାସ ଆଶ୍ରମ-ଧର୍ମ ରୂପରେ ଉତ୍ପନ୍ନ ହେଲା । **ସନ୍ୟାସୀ ଯେତେ ଅଧିକ ତ୍ୟାଗ କରିବ ସେତେ ଅଧିକ ସୁଖ ପ୍ରାପ୍ତ ହେବ** ।

ବାନପ୍ରସ୍ଥ-ଧର୍ମର ଉତ୍ପତ୍ତି ଭଗବାନଙ୍କର ବକ୍ଷଃସ୍ଥଳରୁ ହୋଇଛି । ବକ୍ଷଃସ୍ଥଳରେ ସୁଖ

ହୁଏ ସମ୍ମିଳନରେ । ସମ୍ମିଳନର ସୁଖ ତପରେ, ପ୍ରତୀକ୍ଷାରେ, ଅପେକ୍ଷାରେ ମିଳିଥାଏ । ସମ୍ମିଳନର ସୁଖ ଯେତେ ଅଧିକ ତପ ହେବ, ଦ୍ରବିତ ହେବ, ତାହା ସହିତ ମିଳନରେ ସେତେ ଅଧିକ ସୁଖ ହେବ । ଏଣୁ ବାନପ୍ରସ୍ଥର ମୁଖ୍ୟ ଧର୍ମ ହେଉଛି ତପ । **ଯେଉଁ ବାନପ୍ରସ୍ଥୀ ଯେତେ ଅଧିକ ଘୋର ତପ କରିବ ତାକୁ ସେତେ ଅଧିକ ସୁଖ ମିଳିଥାଏ ।**

ଗୃହସ୍ଥ-ଧର୍ମର ଉତ୍ପତ୍ତି ଭଗବାନଙ୍କର ଉରୁରୁ ହୋଇଛି । ଗୃହସ୍ଥ-ଧର୍ମ ହୁଏ ମିଥୁନରେ, ଦ୍ୱୟର ମିଶାଣରେ । ଯେପରି ଶରୀରରେ ଶିର ହେଉଛି ଏକ, ସେହିପରି ସନ୍ୟାସୀ ଏକାକୀ ରହିବା ଉଚିତ । ବକ୍ଷଃସ୍ଥଳ ଦେଖିବାକୁ ଗଲେ ତ ଏକ, କିନ୍ତୁ ଏହାର ପୃଥକ୍ ପୃଥକ୍ ଦୁଇଟି ଭାଗ ଅଛି । ଏହିଭଳି ବାନପ୍ରସ୍ଥୀ ବି ଏକାକୀ ରହିବା ଉଚିତ । ଯଦି ସପତ୍ନୀକ ରହେ ତେବେ ସବୁବେଳେ ପୃଥକ୍ ରହିବା ଆବଶ୍ୟକ । ସବୁବେଳେ ଉରୁ ହେଉଛି ଦୁଇ । ଏଣୁ ପତି-ପତ୍ନୀ ଦୁଇ ହୋଇଥିବା ଉଚିତ । ଦୁଇ ରହି ସୁଦ୍ଧା ଏହି ଦ୍ୱୟଙ୍କ ମଧ୍ୟରେ ଯେତେ ଅଧିକ ଏକତା ରହିବ ଗୃହସ୍ଥରେ ସେତେ ଅଧିକ ସୁଖ ହୁଏ । **ଯେପରି ପ୍ରାଣୀମାତ୍ରଙ୍କ ଉତ୍ପତ୍ତି ଶରୀରର ମଧ୍ୟ ଭାଗ ଉରୁରୁ ହୋଇଥାଏ, ସେହିଭଳି ସମସ୍ତ ଆଶ୍ରମର ଉତ୍ପତ୍ତି ଗୃହସ୍ଥାଶ୍ରମରୁ ହିଁ ହୋଇଥାଏ । ଗୃହସ୍ଥୀ ହିଁ ଅନ୍ୟ ତିନି ଆଶ୍ରମକୁ ଉତ୍ପନ୍ନ କରି ତାହାକୁ ଧର୍ମ ପୂର୍ବକ ପାଳନ ବି କରେ ।**

''ବ୍ରହ୍ମଚର୍ଯ୍ୟର ଉତ୍ପତ୍ତି ଭଗବାନଙ୍କର ହୃଦୟରୁ । ଯିଏ ଯେପରି ହୃଦୟର ହୋଇଥାଏ, ତା'ର ପୂରା ବ୍ୟବହାର ବି ସେହିଭଳି ହୋଇଥାଏ । ହୃଦୟ ହେଉଛି ମୁଖ୍ୟ । ହୃଦୟ-ହୀନ ହେଉଛି ଜଡ଼ । ତେଣୁ ଯେଉଁ ବ୍ରହ୍ମଚାରୀର ହୃଦୟ ଯେତେ ଅଧିକ ଶୁଦ୍ଧ ସେ ସେତେ ଅଧିକ ସୁଖୀ ହୋଇଥାଏ । ତେଣୁ ହେ ରାଜନ୍ ! ଏହି ଚାରି ବର୍ଣ୍ଣ, ଏହି ଚାରି ଆଶ୍ରମ ଭଗବାନଙ୍କର ଅଙ୍ଗରୁ ଏହିଭଳି ଉତ୍ପନ୍ନ ହୋଇଛି ଯେପରି ପିତାର ଅଙ୍ଗରୁ ପୁତ୍ରମାନେ ଉତ୍ପତ୍ତି ହୋଇଥା'ନ୍ତି । ଏବେ ଆପଣ ହିଁ କୁହନ୍ତୁ, ସମସ୍ତ ବର୍ଣ୍ଣ ତଥା ସମସ୍ତ ଆଶ୍ରମର ନରନାରୀଙ୍କର ପିତା ଭଗବାନ୍ ହେଲେ ନା ନାହିଁ ।''

ରାଜା କହିଲେ, ''ହଁ ମହାରାଜ ! ପିତା କାହିଁକି, ପରମପିତା ହେଲେ । ପିତା ମାତା ଉଭୟ ହେଲେ ।''

ମୁନି କହିଲେ, ''ରାଜନ୍ ! ଏବେ ଆଦି ନାରାୟଣ ଭଗବାନ୍ ସମସ୍ତଙ୍କର ହେଉଛନ୍ତି ଉତ୍ପତ୍ତି ସ୍ଥାନ, ପିତା, ତେଣୁ ଯେଉଁମାନେ ତାଙ୍କୁ ପୂଜା ନ କରିବେ ସେମାନଙ୍କର ଉନ୍ନତି ହେବ କିପରି ? ବୃଦ୍ଧି ତ ସେହିମାନଙ୍କର ହୋଇଥାଏ, ଯେଉଁମାନେ ସେମାନଙ୍କର ଉତ୍ପନ୍ନକାରୀଙ୍କ ପ୍ରତି ସବୁବେଳେ ଋଣୀ ରୁହନ୍ତି । ଯେଉଁମାନେ ଏହାକୁ ଅନାଦାର କରନ୍ତି, ଏହାକୁ ଭୁଲି ଯାଆନ୍ତି, ସେମାନଙ୍କର ପତନ ଅନିବାର୍ଯ୍ୟ । ଏଥର ଆପଣଙ୍କ ପ୍ରଶ୍ନର ଉତ୍ତର ହୋଇଗଲା । ଆପଣ ଏୟା ପଚାରିଥିଲେ ନା, **ଯେଉଁମାନେ ଭଗବାନଙ୍କୁ ଭଜନ କରନ୍ତି**

**ନାହିଁ ସେମାନଙ୍କର କି ଗତି ହୋଇଥାଏ । ରାଜନ୍ ! ସେମାନଙ୍କର କି ଗତି ହୋଇଥାଏ ? ଦୁର୍ଗତି ହୋଇଥାଏ । ସେମାନଙ୍କର ପତନ ହୋଇଥାଏ ।**

ରାଜା କହିଲେ, ''ଭଗବନ୍ ! ଆପଣ ତ ଶାସ୍ତ୍ରର କଥା କହୁଛନ୍ତି ! ଏପରି ବି ଅନେକ ପୁରୁଷ ଅଛନ୍ତି, ଯେଉଁମାନେ ଶାସ୍ତ୍ର ଶୁଣିନାହାନ୍ତି । ସେମାନଙ୍କର ଯେ ଶାସ୍ତ୍ର ପ୍ରତି ଶ୍ରଦ୍ଧାନାହିଁ, ଏପରି କୁହାଯାଇ ନ ପାରେ । କିନ୍ତୁ ସେମାନଙ୍କର ଶାସ୍ତ୍ର ଶୁଣିବାର, ଶାସ୍ତ୍ରୀୟ କର୍ମ କରିବାର ସୁବିଧା ନାହିଁ, ଅଧିକାର ନାହିଁ, ସେମାନଙ୍କର ଉଦ୍ଧାର କିପରି ହୋଇପାରିବ ? ଅନେକ ଶୂଦ୍ର ଅଛନ୍ତି, ବୈଦିକ କର୍ମ କରିବାକୁ ସେମାନଙ୍କର ଅଧିକାର ନାହିଁ । ସ୍ତ୍ରୀ ଅଛନ୍ତି, ପିଲାଙ୍କ ଲାଳନ ପାଳନରେ, ଗୃହକରଣାରେ ଲାଗି ରହିଥାନ୍ତି । ମାସିକ ଧର୍ମ ହୋଇଯିବା ପରେ ସମସ୍ତ ପ୍ରକାର ଶୁଭକର୍ମରୁ ବଞ୍ଚିତ ହୋଇଯାଆନ୍ତି । ଏପରି ଲୋକମାନଙ୍କ ପାଇଁ କି ଉପାୟ ଅଛି । ସେମାନେ କଥା କୀର୍ତ୍ତନରୁ ବି ଦୂରେଇ ରହିଥା'ନ୍ତି ।''

ମୁନି କହିଲେ, ''ରାଜନ୍ ! ଏପରି ଲୋକମାନଙ୍କର ଆପଣଙ୍କ ଭଳି ଭଗବଦ୍ ଭକ୍ତଙ୍କ ଦ୍ୱାରା ହିଁ ଉଦ୍ଧାର ସମ୍ଭବ ହୋଇଥାଏ । ଭଗବାନଙ୍କର ଭକ୍ତ ଅତି ଦୟାଳୁ ହୋଇଥା'ନ୍ତି । ସେମାନେ ଗାଁ ଗାଁ ବୁଲି ଭଗବାନଙ୍କର ଭଜନ କରନ୍ତି । ଭାଗବତୀ କଥା ଶୁଣାନ୍ତି । ଭଗବଦ୍‌ଭକ୍ତଙ୍କ ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ଅବଲମ୍ବ ନାହିଁ । ଏପରି ବୃକ୍ଷଙ୍କର ଉଦ୍ଧାର କିପରି ହୁଏ । ଭଗବଦ୍‌ଭକ୍ତ ତାଙ୍କ ପାଖରେ ବସି କୀର୍ତ୍ତନ କରନ୍ତି, ଭଗବାନଙ୍କର ନାମ ଶୁଣାନ୍ତି, ସେମାନଙ୍କର ଉଦ୍ଧାର ହୋଇଯାଏ । ଭକ୍ତଙ୍କ ଶରୀରର ଗନ୍ଧରେ ଜୀବମାନଙ୍କର ଉଦ୍ଧାର ହୋଇଥାଏ । ଭଗବଦ୍‌ଭକ୍ତ କୃପା କରି ଯାହାକୁ ଛୁଇଁ ଦେବେ ତେବେ ସେମାନଙ୍କର ସୁଖଦ ସ୍ପର୍ଶରେ ଜୀବଙ୍କୁ ଶାନ୍ତି ମିଳେ । ନିଷ୍କାମ ଭଗବଦ୍ ଭକ୍ତଙ୍କୁ ନିଜପାଇଁ ତ କିଛି କାମନା ନ ଥାଏ । ଏହି ଜୀବ ହିନସ୍ତା ହେଉଛି । ଅଶାନ୍ତ ଭାବରେ ଛଟପଟ ହେଉଛି । ସେମାନଙ୍କର ଛଟପଟ ଭାବକୁ ଦୂରକରିବା ପାଇଁ ସେମାନେ ବୁଲୁଥାଆନ୍ତି । ଏପରି ଲୋକଙ୍କ ଦ୍ୱାରା ସେମାନଙ୍କର ଉଦ୍ଧାର ହୋଇଥାଏ । ଏକଥା ହେଉଛି ଯେଉଁମାନେ ଅଜ୍ଞ ସେମାନଙ୍କ ପାଇଁ, ସ୍ୱୟଂ ଶାସ୍ତ୍ରୀୟ କର୍ମ କରିବାକୁ ଯେଉଁମାନେ ଅସମର୍ଥ । ଯେଉଁମାନେ ବିଜ୍ଞ ସେମାନଙ୍କ ପାଇଁ ଅଧିକ କ'ଣ କହିବା ? ସେମାନେ ଆତ୍ମବିଶ୍ୱାସର ସହିତ ଶାସ୍ତ୍ରୀୟ କଥା ଉପରେ ଶ୍ରଦ୍ଧା ରଖି ବେଦ ବିହିତ କର୍ମ କରିବା ଦ୍ୱାରା ମୁକ୍ତି ହୋଇଯାଆନ୍ତି । କିନ୍ତୁ ଯେଉଁମାନେ ଶାସ୍ତ୍ରର ପଠନ ପାଠନ କରିବାକୁ ଜନ୍ମରୁ ପୂର୍ଣ୍ଣ ଅଧିକାର ପାଇଛନ୍ତି, ସେହି ଦ୍ୱିଜାତି, ଯେଉଁମାନେ ଯଜ୍ଞୋପବୀତ ଆଦି ଶ୍ରୌତ ସ୍ମାର୍ତ୍ତ କର୍ମର ପୂର୍ଣ୍ଣ ଅଧିକାର ପାଇଛନ୍ତି, ତେବେ ବି ସେମାନେ ଯଦି ଭଗବଦ୍ ଭକ୍ତି ରହିତ ହୋଇ ବୁଲନ୍ତି ତେବେ ସେମାନେ ପ୍ରଭୁପ୍ରେମ ପ୍ରାପ୍ତ ହୁଅନ୍ତି ନାହିଁ ।''

ରାଜା ପଚାରିଲେ, ''ଭଗବନ୍ ! ଏପରି ଲୋକମାନଙ୍କର ଭଗବଦ୍ ଭକ୍ତି ହୁଏନାହିଁ କାହିଁକି ?''

ମୁନି କହିଲେ, ''ରାଜନ୍ ! କ'ଣ କରାଯିବ, ସେହି ଲୋକମାନେ ବେଦବାକ୍ୟର ମୁଖ୍ୟ ଅଭିପ୍ରାୟ ନ ବୁଝି କେବଳ ଅର୍ଥବାଦ ଘେରରେ ରହିଯାଇଥା'ନ୍ତି । ପ୍ରାଣୀମାନଙ୍କର କର୍ମ ପ୍ରତି ସ୍ୱାଭାବିକ ପ୍ରବୃତ୍ତି ରହିଥାଏ । ଏହାପରେ ସେମାନଙ୍କୁ ଅର୍ଥବାଦର ସହାୟତା ମିଳିଯାଏ । ଫଳରେ ସେମାନଙ୍କର କର୍ମରେ ଆଗ୍ରହ ହୋଇଯାଏ । କର୍ମର ରହସ୍ୟକୁ ସେମାନେ ତ ଉତ୍ତମରୂପେ ଜାଣନ୍ତି ନାହିଁ, କିନ୍ତୁ ନିଜର ପଣ୍ଡିତ ପଣିଆ ଦେଖାନ୍ତି । ସେମାନଙ୍କୁ କୌଣସି ହିତକଥା କହିଲେ ଉଦଣ୍ଡତା ଦେଖାନ୍ତି, ଲଢ଼େଇ କରିବାକୁ ବାହାରି ଆସନ୍ତି । ସେହି ପଣ୍ଡିତ ମୂର୍ଖମାନେ ଫଳଶ୍ରୁତି ପଛରେ ମଦୋନ୍ମତ୍ତ ହୋଇ ବିତଣ୍ଡାବାଦ କରିବାପାଇଁ ପ୍ରବୃତ୍ତ ହୋଇଯାଆନ୍ତି । ଲୋକଙ୍କୁ ଫସେଇବା ପାଇଁ ଶୁଣାଶୁଣି ଅସମ୍ବନ୍ଧ କଥା ଅତି ମଧୁର ଲାଗିବା ଭଳି କହିଥା'ନ୍ତି । ସେମାନେ ସେହି କଥାକୁ ଏପରି ଲୁଣ-ମରିଚ ଲଗାଇ କୁହନ୍ତି ଯେ ବେଦର ତାତ୍ପର୍ଯ୍ୟ ସକାମ କର୍ମ କରିବାରେ ହିଁ ଅଛି ବୋଲି ଶ୍ରୋତା ଗ୍ରହଣ କରିନିଅନ୍ତି ।''

ରାଜା ପଚାରିଲେ, ''ତାହାହେଲେ ହେ ମହାରାଜ ! **କର୍ମ କରିବା କ'ଣ ଉଚିତ କଥା ନୁହେଁ ?''**

ମୁନି କହିଲେ, ''କରିବା ଉଚିତ ନୁହେଁ କିପରି ? କର୍ମ କରିବା ନିହାତି ଆବଶ୍ୟକ, ମାତ୍ର ସେହି କର୍ମର କର୍ମ-ଫଳ ତ୍ୟାଗ ଭାବନାରେ କରିବା ଉଚିତ । ତ୍ୟାଗକୁ ଲକ୍ଷ୍ୟ ରୂପେ ଗ୍ରହଣ କରି ତାହା ପାଇବା ପାଇଁ କର୍ମ କରିବା ଉଚିତ । ଏହି କାମୀ ଲୋକମାନେ କର୍ମକୁ କାମ ପ୍ରାପ୍ତି ନିମିତ୍ତ ସକାମ ଭାବରେ କରନ୍ତି । ଏମାନଙ୍କର ସମସ୍ତ କର୍ମ ସଂକଳ୍ପ ପୂର୍ବକ ସକାମ ହୋଇଥାଏ । ଫଳ ଇଚ୍ଛାରେ କର୍ମ କରୁଥିବା ଲୋକ କୃପଣ ହୋଇଥାଏ । **କର୍ମକରିବା ରଜୋଗୁଣର କାମ । ଯେଉଁମାନେ ସକାମ କର୍ମ କରିବାପାଇଁ ଖୁବ୍ ବେଶୀ ଆଗ୍ରହ ରଖିଥା'ନ୍ତି ସେମାନେ ରଜୋଗୁଣୀ ହୋଇଥାଆନ୍ତି** । ସେମାନେ ନିଜ ନିଜର ସଂକଳ୍ପକୁ ସିଦ୍ଧ କରିବା ପାଇଁ ଅତି କ୍ରୂର କର୍ମ କରନ୍ତି । ସେମାନେ ଅତ୍ୟନ୍ତ କାମୀ । ସେମାନଙ୍କୁ ହିତ କଥା କହିଲେ ସେମାନେ କଳି କରନ୍ତି । ଶାସ୍ତ୍ରାର୍ଥରେ ଜିତି ନ ପାରିଲେ ଶସ୍ତ୍ର ବଳ ପ୍ରୟୋଗ କରିବାକୁ ଲାଗନ୍ତି । ଏମାନେ ସର୍ପ ଭଳି ନାଲି ନାଲି ଆଖିକରି ଭଗବଦ୍‌ଭକ୍ତଙ୍କୁ ଚାହାନ୍ତି । ସେମାନେ ଏପରି ବେଶ ଧରନ୍ତି ଯେ ଦେଖିବାକୁ ଖୁବ୍ ଆଚାରୀ ଜଣାଯା'ନ୍ତି । ଏମାନଙ୍କର ଶିରାପ୍ରଶିରାରେ ଅଭିମାନ ପୂରି ରହିଥାଏ । ହିଂସାଦି ପାପ କର୍ମରେ ଏମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ଥାଏ । ଦେବୀ ଦେବତାଙ୍କ ନାମରେ ଏମାନେ ମଇଁଷି ପୋଢ଼ୁଅ ଛେଳି ଆଦି ନିରୀହ ପଶୁଙ୍କୁ ନିର୍ଦ୍ଦୟରେ ବଧ କରନ୍ତି । ମୁଷ୍ଟି ପ୍ରହାର କରି

ପଶୁଙ୍କୁ ମାରିଦିଅନ୍ତି । ଭଗବଦ୍‌ଭକ୍ତଙ୍କୁ ଯେଉଁଠି ଦେଖନ୍ତି ସେଠାରେ ବ୍ୟଙ୍ଗ କରି କୁହନ୍ତି, 'ଲମ୍ବା ତିଳକ ମଧୁର କଥା ପୂରା ଠକଙ୍କ ଏହି ବ୍ୟବସ୍ଥା ।' ସାରାଂଶ ଏହା ଯେ ଭକ୍ତଙ୍କୁ ଏମାନେ ଠକ, ନକଲୀ ବାବା, ଦେଖା ସୁନ୍ଦର କଖାରୁ ଫୁଲ ଆଦି ନାମରେ ଡାକନ୍ତି ।''

ରାଜା କହିଲେ, ''ବ୍ରହ୍ମନ୍ ! ଗୃହସ୍ଥ ଧର୍ମ ତ ହେଉଛି ପ୍ରଧାନ ଧର୍ମ । ଗୃହସ୍ଥ ହୋଇ ପରମାର୍ଥ ସାଧନ କ'ଣ କରି ହୁଏ ?''

ମହାମୁନି ଚମସ କହିଲେ, ''ରାଜନ୍ ! କାହିଁକି ହୋଇପାରିବ ନାହିଁ ? ମୁଁ ବିଶୁଦ୍ଧ ଗୃହସ୍ଥ-ଧର୍ମର ଆଦୌ ନିନ୍ଦା କରୁନାହିଁ । ମୁଁ ସକାମ କର୍ମର ନିନ୍ଦା କରୁଛି । **ତ୍ୟାଗର ଭାବନା ରଖି, ସନ୍ୟାସ ଧର୍ମକୁ ଲକ୍ଷ୍ୟ ରଖି, କର୍ତ୍ତବ୍ୟ ବୁଦ୍ଧିରେ ଯିଏ କର୍ମ କରେ ସେ ହିଁ ମୋକ୍ଷର ଅଧିକାରୀ ହୋଇଥାଏ । ଅସ୍ତୁ ।** କିନ୍ତୁ ଏହି କର୍ମାସକ୍ତ ଲମ୍ପଟ ପୁରୁଷ କେବଳ ଶରୀର ସୁଖକୁ ହିଁ ସବୁ ବୋଲି ଭାବନ୍ତି । ଏହିମାନେ ସ୍ତ୍ରୀ-ଲମ୍ପଟ କାମୀ ଆଉ ବିଷୟ ଲୋଲୁପ ହୋଇଥା'ନ୍ତି । ଗୃହରେ ଅତ୍ୟନ୍ତ ଆସକ୍ତ ରହିଥା'ନ୍ତି । କର୍ମ କରନ୍ତି, କିନ୍ତୁ କେବଳ ଏହିଭାବନାରେ, ଯେ ସେମାନଙ୍କର ବିଷୟ ଭୋଗ ଦିବ୍ୟ ଓ ପ୍ରଚୁର ହୋଇଯାଇ ବିଶେଷ ମାତ୍ରାର ସେମାନଙ୍କୁ ସ୍ୱର୍ଗରେ ବି ପ୍ରାପ୍ତ ହେଉ । ସେମାନେ ନିଜ ନିଜ ଭିତରେ ଚର୍ଚ୍ଚା ବି କରନ୍ତି ଯେ ଏହି ସଂସାରୀ ବିଷୟ କେବଳ ଭୋଗ ନିମନ୍ତେ । ଆମକୁ ସେଠାରେ ଏତେ ମିଳିଲା, ଆମର ଆବଶ୍ୟକତା ଏତିକି, ଏହା ଯଦି ପ୍ରାପ୍ତ ନ ହୁଏ ତେବେ ଆମର ପ୍ରତିଷ୍ଠାର ପତନ ହୋଇଯିବ । ଏହିଭଳି ସଂସାରୀ ଭୋଗ ସମ୍ବନ୍ଧରେ ବାର୍ତ୍ତାଳାପ କରି କରି କାଳଯାପନ କରିଦିଅନ୍ତି ।''

ରାଜା କହିଲେ, ''ଏହି ଲୋକମାନେ ଯାଗଯଜ୍ଞାଦି ବି ତ କରନ୍ତି । ଆଉ ଯାଗଯଜ୍ଞ ତ ହେଉଛି ଶୁଭକର୍ମ ।''

ମହାଯୋଗେଶ୍ୱର ଚମସ କହିଲେ, ''ରାଜନ୍ ! ସେମାନେ ଯଜ୍ଞ କରନ୍ତି ନିଜର ବାସନା ଚରିତାର୍ଥ ହେବା ଉଦ୍ଦେଶ୍ୟରେ, ଏହା କେବଳ ଲୋକଙ୍କୁ ଠକିବା ଉଦ୍ଦେଶ୍ୟରେ ଦମ୍ଭ ମାତ୍ର । ଯଜ୍ଞ କରନ୍ତି ଲୋକଙ୍କୁ ଦେଖାଇ ହେବା ପାଇଁ । ନିଜର ଯଶ ଐଶ୍ୱର୍ଯ୍ୟ ପ୍ରଦର୍ଶନ ନିମନ୍ତେ । ସେମାନେ ଅନେକ କାରଣ ଦର୍ଶାଇ ଅନ୍ନ ପାନ କରନ୍ତି ନାହିଁ । ବିଧି ନିଷେଧ ଆଡ଼କୁ ଆଦୌ ଦୃଷ୍ଟି ଦିଅନ୍ତି ନାହିଁ । କିଛି ନା କିଛି କ୍ରିୟା କରାଇ ଦିଅନ୍ତି । ନିଜେ ନିଜେ ବସି ଯାଆନ୍ତି । ଅନ୍ୟ କାହାକୁ ଦକ୍ଷିଣା ଦିଅନ୍ତି ନାହିଁ । ଯଜ୍ଞୀୟ ହିଂସାକୁ ହିଂସା କୁହାଯାଏ ନାହିଁ । ଏପରି ଶାସ୍ତ୍ର ବଚନକୁ କିଛି ନା କିଛି ଅର୍ଥ କରି ସେମାନେ ଉଦର ପୂର୍ତ୍ତି ନିମନ୍ତେ, ଜିହ୍ୱାକୁ ତୃପ୍ତ କରିବା ପାଇଁ, ପଶୁମାଂସରେ ନିଜର ମାଂସକୁ ବଳିଷ୍ଠ କରିବା ପାଇଁ ଅନେକ ପଶୁଙ୍କୁ ମାରନ୍ତି ଓ ସେମାନଙ୍କ ମାଂସ ଆହାର କରନ୍ତି । ଏପରି ବଡ଼ ବଡ଼ [illegible]ଆ କହି ଧନ ଏକତ୍ରିତ କରନ୍ତି, [illegible] [illegible]ଭବ ବଢ଼ାନ୍ତି, କୁଳିନ ହୋଇଯାଉଥିବା ଭଳି

ଅଭିମାନ ତ ସେମାନଙ୍କର ପୂର୍ବରୁ ଥାଏ ! ଏଣୁ ତେଣୁ କିଛି ବିଦ୍ୟା ପଢ଼ିପକାଇ, ନିଜ ନିଜ ଭିତରେ ଦାନ ଦିଆ ନିଆ କରି, ତେଲ ଫୁଲ ଲଗାଇ ନିଜକୁ ନିଜେ ସୁନ୍ଦର ରୂପ କରି ରଖନ୍ତି । ମାଂସ ଆଉ ମଦ୍ୟ ଖାଇ ବଳ ବି ବଢ଼ାନ୍ତି, ଆଉ ଲୋକଙ୍କୁ ଦେଖାଇବା ପାଇଁ କର୍ମ ବି କରନ୍ତି । ଏ ସବୁ କାରଣରୁ ସେମାନଙ୍କର ଅଭିମାନ ପରାକାଷ୍ଠାରେ ପହଞ୍ଚିଯାଏ, ସେମାନଙ୍କର ବୁଦ୍ଧି ଭ୍ରଷ୍ଟ ହୋଇଯାଏ । ସେମାନେ ଲୋକପରଲୋକର ବିଚାର କରନ୍ତି ନାହିଁ । ନିଜର ସ୍ୱାର୍ଥ ସାଧନ ସେମାନଙ୍କର ପରମ ଲକ୍ଷ୍ୟ ହୋଇଯାଏ । ଏପରି ଅଭିମାନୀ ନିଜର ବଡ଼ ପଣିଆରେ ମିଥ୍ୟାଭିମାନ ପରିପୂର୍ଣ୍ଣ ହୋଇ ବଡ଼ ବଡ଼ ଭଗବଦ୍-ମହାତ୍ମାଙ୍କୁ ଅନେକ ଲୋକ ବସିଥିବା ସଭାରେ ତିରସ୍କାର କରନ୍ତି । ସେମାନେ ଜାଣିବାକୁ ଚେଷ୍ଟା କରନ୍ତି ନାହିଁ ଯେ, **ଭକ୍ତଙ୍କୁ ଅପମାନ କରିବା ଅର୍ଥ ଭଗବାନଙ୍କୁ ଅପମାନ କରିବା । ସେମାନେ ବସ୍ତୁତଃ ଭଗବାନଙ୍କୁ ବି ମାନନ୍ତି ନାହିଁ । ସେମାନେ ଦେହଙ୍କୁ ସର୍ବସ୍ୱ ବୋଲି ମନେକରନ୍ତି ।** ସେମାନେ ପ୍ରଚାର କରନ୍ତି, ଯେଉଁଠାରେ ରହିବା ଖାଇ ପିଇ ମସ୍ତ ହୋଇ ରହିବା, ମରିବା ପରେ ସ୍ୱର୍ଗସୁଖ ଭୋଗକରିବା ।

ସେମାନଙ୍କୁ ଭଗବାନଙ୍କର ଅଥବା ଭଗବଦ୍‌ଭକ୍ତି କଥା କହିଲେ ସେମାନେ ଶୁଣନ୍ତି ନାହିଁ । ସମସ୍ତ ଦେହଧାରୀଙ୍କ ଭିତରେ ଯେ ସର୍ବାନ୍ତର୍ଯ୍ୟାମୀ ହରି, ଯେ ଆକାଶ ଭଳି ବ୍ୟାପ୍ତ, ଯେ ସର୍ବଜ୍ଞ, ସର୍ବଶକ୍ତିମାନ, ଶାଶ୍ୱତ, ସତ୍ୟ ସନାତନ ତଥା ସର୍ବଭୂତ ସୁହୃଦ, ଯାହାଙ୍କର ବର୍ଣ୍ଣନା ଚାରିବେଦ କରୁଥାଏ, ତାଙ୍କର ଗୁଣାନୁବାଦ ନକରି କାମ୍ୟକର୍ମକୁ ହିଁ ପ୍ରଶଂସା କରିଥା'ନ୍ତି । ସକାମ କର୍ମର ଅନୁଷ୍ଠାନରେ ସବୁବେଳେ ଲାଗିରହିଥା'ନ୍ତି ।''

ରାଜା କହିଲେ, ''ଭଗବନ୍ ! ବେଦରେ ସବୁଆଡ଼େ ସକାମ କର୍ମ ବିଷୟରେ ବର୍ଣ୍ଣନା ହୋଇଥିବା ଆମେ ଦେଖିବାକୁ ପାଉଛୁ । ପୁତ୍ରେଷ୍ଟି ଯଜ୍ଞ କ'ଣ ? ପୁତ୍ର ପ୍ରାପ୍ତି ନିମନ୍ତେ ଯଜ୍ଞ । ବେଦମାନଙ୍କରେ ଏପରି ଅନେକ ବାକ୍ୟ ଅଛି ଯେପରି ଯାହାର ଶ୍ରେଷ୍ଠପୁତ୍ର ପ୍ରାପ୍ତି ନିମନ୍ତେ ଇଚ୍ଛା ଥିବ ସେ ଅମୁକରେ ଅମୁକ ଅମୁକ ବସ୍ତୁ ଖାଉ । ସ୍ୱର୍ଗ କାମନା କଲେ ଅଶ୍ୱମେଧ ଯଜ୍ଞ କରୁ । ସୋମ ପାନ କରି ଆମେ ଅମୃତତ୍ୱ ପ୍ରାପ୍ତି ହୋଇଯିବା । ଯେଉଁମାନେ ଚାତୁର୍ମାସ୍ୟ ଯଜ୍ଞ କରନ୍ତି ସେମାନେ ବି ଏପରି ସ୍ୱର୍ଗାଦି ପୁଣ୍ୟଲୋକକୁ ଯାଇଥାଆନ୍ତି, ଯେଉଁଠାରେ ଶୀତ କି କ୍ଲେଶ ହୁଏନାହିଁ, ଉଷ୍ଣତା କି ବ୍ୟାକୁଳତା ହୁଏନାହିଁ । ଯେଉଁ ଠାରେ ଗ୍ଳାନି କି ଅନ୍ୟ କୌଣସି ପ୍ରକାର ଅସୁବିଧା ନଥାଏ । ଏ ସମସ୍ତ କଥାରୁ ଏହାହିଁ ପ୍ରତୀତ ହେଉଛି ଯେ ସକଳ କର୍ମ ସକାମ ହିଁ ହୋଇଥାଏ । ଆପଣ ମାଂସ, ମଦିରା, ମୈଥୁନାଦିକୁ ନିଷେଧ କରୁଛନ୍ତି । କିନ୍ତୁ ବେଦରେ ଏ ସମସ୍ତର ସ୍ପଷ୍ଟ ଆଜ୍ଞା ଅଛି । ଋତୁକାଳରେ ଭାର୍ଯ୍ୟା ପାଖକୁ ଯିବା ହିଁ ଉଚିତ । ଯଜ୍ଞର ଶେଷରେ ବଳକା ଥିବା ମାଂସ ଖାଇବା ଉଚିତ । ଯେତେବେଳେ ବେଦ ଆମକୁ ଏ ସବୁ କାମପାଇଁ ଆଦେଶ ଦେଉଛି ସେତେବେଳେ ବଳପୂର୍ବକ ଆପଣ ଏପରି ଖଣ୍ଡନ କାହିଁକି କରୁଛନ୍ତି ?''

ଏପରି କଥା ଶୁଣି ମହାମୁନି ଚମସ ହସି ହସି କହିଲେ, ''ରାଜନ୍ ! ଏ ସବୁ କଥାର ତାତ୍ପର୍ଯ୍ୟ ଅଲଗା । ମୂର୍ଖମାନେ ଏ ସମସ୍ତର ଅଲଗା ପ୍ରକାର ଅର୍ଥ କରିଥାନ୍ତି । ମୁଁ ଏସବୁର ଭାବ ଆପଣଙ୍କୁ ବୁଝାଉଛି । ଏ ସମସ୍ତ ବେଦବାକ୍ୟର ଯଥାର୍ଥ ଅଭିପ୍ରାୟ ଆପଣଙ୍କୁ କହୁଛି, ଶୁଣନ୍ତୁ ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାମୁନି ଚମସ ଯେଉଁ ପ୍ରକାର ଭାବରେ ବେଦବାକ୍ୟ ଗୁଡ଼ିକର ଯଥାର୍ଥ ଅଭିପ୍ରାୟ କହିଲେ ସେ ସମସ୍ତ ବର୍ଣ୍ଣନା ଏହାପରେ କରୁଛି ।''

### ଛପ୍ପୟ

*କଛୁ ପାଖଣ୍ଡୀ ଅଜ୍ଞ ଅଂଟକୀ ସଂଟ ସୁନାବେ ।*
*ଫଲଶ୍ରୁତି ବାଣୀ ମଧୁର କହେଂ ବହୁ ବାତ ବନାବେ ।।*
*କାମୀ, କ୍ରୋଧୀ, କ୍ରୂର, କାମ୍ୟ କଛୁ କରମକରାବଂ ।*
*ଭକ୍ତି ଭକ୍ତ ଭଗବାନ୍ ସବକି କୂଁ ଢ଼ୋଂଗ ବତାବେଂ ।।*
*ଧନ ବୈଭବ, କୁଲ, ରୂପ, ବଲ, ବିଦ୍ୟା କେ ଅଭିମାନ ମେଁ ।*
*ଉରେଂ ରହେଂ ମନ ଦେହି ନହିଁ, ଭକ୍ତବଛଲ ଭଗବାନ ମେଁ ।।*



# ବେଦ ନିବୃତ୍ତି ପରଖ

**ଲୋକେ ବ୍ୟବାୟାମିଷମଦ୍ୟସେବା**
**ନିତ୍ୟାସ୍ତୁ ଜନ୍ତୋର୍ନ ହି ତତ୍ର ଚୋଦନା ।**
**ବ୍ୟବସ୍ଥିତିସ୍ତେଷୁ ବିବାହଯଜ୍ଞ-**
**ସୁରାଗ୍ରହୈରାସୁ ନିବୃତ୍ତିରିଷ୍ଟା ॥☆**

(ଶ୍ରୀ. ଭା. ୧୧ସ୍କନ୍ଧ ୫ଅ. ୧୧ ଶ୍ଳୋକ)

**ଛପ୍ପୟ**

*ମୈଥୁନ ମଦିରା ମାଂସ ବେଦ ବିଧି ମୂର୍ଖ ବତାବେ ।*
*ବେଦ ନିବୃତ୍ତି ହିତ କହେ ତାହି ବିଧି କହି ସମୁଝାବେଂ ॥*
*ଇଚ୍ଛା ନିୟମିତ କରନ ବ୍ୟାହ ମଖ ବିବିଧ ବତାୟେ ।*
*ସୂତ ହିତ କହେଂୟା ବିବାହ ଯଜ୍ଞ ଆଲଭନ ଜତାୟେ ॥*
*ସୌତ୍ରାମଣି ମଖମହଁ ସୁରା, ସୂଘିଂ ନିୟମ ପୂରୋ କରୈଂ ।*
*ଜୋ ବିଧାନ ଇନ କୂଁ କହେଂ, ସୋଂ ନର ନରକମହଁ ପରୈ ॥*

କେବଳ ବାକ୍ୟ ପଢ଼ିଦେଇ ଶାସ୍ତ୍ରର ଅର୍ଥ କରିଦେବା ଠିକ୍ ନୁହେଁ । ପୂର୍ବାତ୍‌ପରକୁ ବିଚାର କରି ଅର୍ଥ କରିବା ବିଧେୟ । ଯେଉଁମାନେ ସ୍ୱାର୍ଥପର, ସେମାନେ ଶାସ୍ତ୍ର ବାକ୍ୟର ଅର୍ଥକୁ ଏପଟ ସେପଟ କରି ନିଜକୁ ସୁହାଇଲା ଭଳି କରିଥା'ନ୍ତି । ଶାସ୍ତ୍ରର ଶବ୍ଦ କାମଧେନୁ ଭଳି । ଯେ ଯେପରି ଚାହେଁ ସେପରି ଅର୍ଥ କରିପାରିବେ । ନିଜକୁ ସୁହାଇବା ଭଳି ଅର୍ଥକୁ ଟାଣି ଆଣି ପାରନ୍ତି । ଜଣେ ଲୋକଥିଲା, ଚାହା ପିଇବା ନିମନ୍ତେ ତାର ଖୁବ୍ ବ୍ୟସନ

---

☆ ନାରୀ ସେବନ ମାଂସ ମଦ୍ୟେ । ଲୋକ ବେଭାର ଅନୁବାଦେ ॥
ବେଦ ନ କହେ ଯାହା ମୁଖେ । ପ୍ରାଣୀ ତା'କରେ ଆତ୍ମସୁଖେ ॥
ନାରୀ ନ ସେବି କାମ ସଧେ । ସେବ ବିବାହ ଅନୁବନ୍ଧେ ॥
ଛାଡ଼ି ନ ପାରି ହୀନ ଚିତ୍ତେ । ସେବନ୍ତି ମଦ ମାଂସ ନିତ୍ୟେ ॥
ପଶୁ ମାରନ୍ତି ଯଜ୍ଞ ଲକ୍ଷ୍ୟେ । ଯେ ବେଦବିଧି ପିତୃପକ୍ଷେ ॥
ଏ ନୋହେ ବେଦ ବିଧି ବାଣୀ । ନିତ୍ୟେ ଅସତ୍ୟ ପରିମାଣି ॥
କଲେ କରିବ ଧର୍ମମତେ । ଯେ ବେଦବିଧି ଅନୁମତେ ॥
ବିଧି ନିଷେଧ ଏ ପ୍ରସିଦ୍ଧି । ଏହା ନ ଜାଣେ ପଶୁବୁଦ୍ଧି ॥

(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୬ଅ.)

ଥିଲା । ଚାହା ବିନା ରହିବା ତା' ପକ୍ଷେ ଏକ ପ୍ରକାର ଅସମ୍ଭବ ଥିଲା । କେହି ଜଣେ କହିଲା, "ଚାହା ହେଉଛି ଅତି କ୍ଷତିକାରକ, ଚାହା ଆପଣ କାହିଁକି ପିଉଛନ୍ତି ?" ସେହି ଲୋକଟି କହିଲା, "ଆରେ ଭାଇ ! ଚାହା ପିଇବା ପାଇଁ ତ ଭଗବାନ୍ ଆଦେଶ ଦେଇଛନ୍ତି । ଶ୍ରୀମଦ୍ ଭଗବଦ୍ ଗୀତାରେ ଚାହାର ଖୁବ୍ ପ୍ରଶଂସା ହୋଇଛି । ଭଗବାନ ନିଜେ ଚାହାର ଖୁବ୍ ପ୍ରଶଂସା କରିଛନ୍ତି ।

ଲୋକଟି ଆଶ୍ଚର୍ଯ୍ୟ ହୋଇଗଲା, ଆଉ କହିଲା, "ଆରେ ! ଏପରି ଅସତ୍ୟ କଥା କାହିଁକି କହୁଛ କହିଲ । ଶ୍ରୀମଦ୍ ଭଗବଦ୍ ଗୀତା କ'ଣ ମୁଁ ପଢ଼ିନାହିଁ ! ଗୀତାରେ ଚାହାର ପ୍ରଶଂସା ତ ଦୂରର କଥା, ଚାହାର ନାମ ଗନ୍ଧ ହିଁ ନାହିଁ ।"

ଚାହା ପ୍ରିୟ ଲୋକ ଜଣକ କହିଲା, "ଆପଣ ଶୁଣିଛନ୍ତି ? ଏବେ ମୁଁ ଆପଣଙ୍କୁ ସେହି ଶ୍ଳୋକଟି ଶୁଣାଇ ଦେଉଛି । ଗୀତାର ୧୫ଶ ଅଧ୍ୟାୟରେ ଅଛି :

*ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ*
*ମତ୍ତଃ ସ୍ମୃତିର୍ଜ୍ଞାନମପୋହନଂ ଚ ।*
*ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ*
*ବେଦାନ୍ତ କୃଦ୍ ବେଦବିଦେମ ଚାହମ୍ ।*

ଏଠାରେ 'ଚ' ଆଉ 'ଅହମ୍' ଦୁଇଟି ପଦ । ଏଠାରେ ଚାହା ଅର୍ଥ କରିବା ଅନ୍ୟାୟ । କିନ୍ତୁ ବ୍ୟସନୀ ତା' ମନକୁ ସୁହାଇବା ଭଳି ଅର୍ଥ କରିଛି । ଏହା ଆଦୌ ଗ୍ରହଣ ଯୋଗ୍ୟ ନୁହେଁ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, "ହେ ମୁନିଗଣ ! ରାଜା ନିମିଙ୍କ ମନରେ ସନ୍ଦେହ ହେବାରୁ- 'ଯଥା ବିବାହ, ମାଂସ ଆଉ ମଦ୍ୟ ନିମନ୍ତେ ବେଦରେ ତ ଆଦେଶ ଦିଆ ହୋଇଛି'- ସେତେବେଳେ ମହାମୁନି ଚମସ କହିଲେ, "ରାଜନ୍ ! ବେଦରେ ତିନି ପ୍ରକାର କଥା ଲେଖା ହୋଇଛି । ତାହା ହେଉଛି ବିଧି-ବଚନ, ନିଷେଧ-ବଚନ, ଆଉ ସାମାନ୍ୟ-ବଚନ । ଯେଉଁ କର୍ମରେ ପୁରୁଷର ରୁଚି ନଥାଏ କିନ୍ତୁ ପରମାର୍ଥ ପାଇଁ ତାହାର ଆବଶ୍ୟକତା ଥାଏ, ତାହାକୁ ବେଦ ବିଧାନ କରିଥାଏ ଯେ ଅମୁକ କାମ କରିବା ଉଚିତ । ଯେପରି ସଂଧ୍ୟା କରିବା ନିମନ୍ତେ ସ୍ୱାଭାବିକ ରୁଚି ନଥାଏ, ମାତ୍ର ବେଦ ଆଦେଶ ଦେଇ କହେ, 'ପ୍ରତିଦିନ ଦ୍ୱିଜ ସଂଧ୍ୟା କରିବା ଏକାନ୍ତ ବିଧେୟ । ଇଚ୍ଛା ହେଉ ନଥିଲେ ବି ବେଦକୁ ଶ୍ରଦ୍ଧା କରୁଥିବା ଲୋକମାନଙ୍କୁ ସଂଧ୍ୟା କରିବାକୁ ପଡ଼େ । ଯେଉଁ କାର୍ଯ୍ୟ ପ୍ରତି

---

☆ ଗୀତା ୨ୟ ଅଧ୍ୟାୟ : ୬୬ ଶ୍ଳୋକ :

ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା ।
ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ ।।

ଅଧିକ ସ୍ୱାଭାବିକ ପ୍ରବୃତ୍ତି ଥାଏ, ବେଦ ତାହାକୁ ନିଷେଧ କରେ, ଯେପରି ପରସ୍ତ୍ରୀ ଗମନ। ଯାହାର ମନ ବିଚଳିତ ହୋଇଯାଇଥାଏ, ସେମାନେ ବେଦର ଆଦେଶ ଉଲ୍ଲଙ୍ଘନ ହୋଇଯିବା ଭୟରେ ପାପ କର୍ମରେ ପ୍ରବୃତ୍ତ ହୁଅନ୍ତି ନାହିଁ। ସାମାନ୍ୟ ତଥା ସାଧାରଣ କଥା ଯେପରି କର୍ମକାଣ୍ଡରେ ଅଛି, ଅମୁକ ଯଜ୍ଞରେ ଏତିକି ଆହୁତି, ଶ୍ରଦ୍ଧାରେ ପିତାଙ୍କ ନିମିତ୍ତ ଏତିକି ଜଣ ବ୍ରାହ୍ମଣଙ୍କୁ ଭୋଜନ ଦେବା ଉଚିତ। ଏ ସବୁ ସାମାନ୍ୟ କଥା। ଭଲ କର୍ମରେ ପ୍ରବୃତ୍ତି କରାଇବା ପାଇଁ ଅନେକ ରୁଚିପୂର୍ଣ୍ଣ ବାକ୍ୟ କୁହାଯାଇଛି, ତାହାକୁ ଫଳଶ୍ରୁତି କୁହାଯାଏ। ଯେପରି ଅମୁକ ପାଇଲେ ସ୍ୱର୍ଗଗତି ମିଳେ। ଅମୁକ ତାହା ଅଜାଣତରେ ଖାଇ ସୁଦ୍ଧା ସ୍ୱର୍ଗଗତି ପାଇଥିଲା। ଏ ସବୁ ଆଗ୍ରହ ସୃଷ୍ଟିକାରୀ ରୁଚିପୂର୍ଣ୍ଣ କଥା। ଏପରି କହିବାର ତାତ୍ପର୍ଯ୍ୟ ହେଉଛି, ସେହି ଅମୁକ ଭକ୍ଷଣ କରିବା ଏକ ପୁଣ୍ୟ କର୍ମ, ଲାଭପ୍ରଦ। ଖରାପ ବା ଦୁଷ୍କର୍ମରୁ ଦୂରେଇ ନେବା ପାଇଁ ଭୟାନକ ଶବ୍ଦ ପ୍ରୟୋଗ କରାହୁଏ। ଯେପରି ଅଇଁଠା ପାଣି ଯିଏ ପିଏ ସେ ଶ୍ୱାନର ମୂତ୍ର ପିଇଥାଏ। ଶୁଦ୍ଧା ଶୁଦ୍ଧି ନିମନ୍ତେ ସେ ଚାନ୍ଦ୍ରାୟଣ ବ୍ରତ କରିବା ବିଧେୟ। ଏଠାରେ କହିବା ତାତ୍ପର୍ଯ୍ୟ ଏହିଯେ, ପିଉଥିବା ବଳକା ପାଣିକୁ ଆଉଥରେ ପିଇବା ଉଚିତ ନୁହେଁ। ଯଥାର୍ଥ ବଚନ ସାମାନ୍ୟ ରୂପରେ କୁହାଯାଏ। ଯେପରି ସଂଧ୍ୟା କରିବା ଉଚିତ, ଇତ୍ୟାଦି ଇତ୍ୟାଦି। ଏବେ ହେ ରାଜନ୍ ! ଆପଣ ହିଁ ଚିନ୍ତାକରନ୍ତୁ, ବେଦ ସେହି ସେହି କର୍ମର ବିଧାନ କରିଥାଏ ଯେଉଁ ଆଡ଼େ ସ୍ୱାଭାବିକ ପ୍ରବୃତ୍ତି ଥାଏ। ସ୍ତ୍ରୀ ପ୍ରସଙ୍ଗ, ମାଂସ, ମଦ୍ୟ ଭକ୍ଷଣ- ଏ ସବୁ ପ୍ରତି ଲୋକଙ୍କର ସ୍ୱାଭାବିକ ପ୍ରବୃତ୍ତି ଥାଏ। ସଂଧ୍ୟାର ପ୍ରଚାର ପାଇଁ କେତେ ଉଦ୍ୟମ ନ ହେଉଛି, କେତେ ସଂଗଠନ ନ ହେଉଛି, ସତ୍ୟ-ଭାଷଣ, ବ୍ରହ୍ମଚର୍ଯ୍ୟବ୍ରତ, ତଥା ଅନ୍ୟ ତପସ୍ୟା ବୈରାଗୀ ଆଦି ନିମନ୍ତେ ଲୋକମାନେ ତଣ୍ଟିଫଟା ଚିତ୍କାର କରିବାରେ ଲାଗିଛନ୍ତି। କେହି ବି ଶୁଣନ୍ତି ନାହିଁ, କିନ୍ତୁ ବିବାହ, ମଦ୍ୟ-ମାଂସର ପ୍ରଚାର ନିମନ୍ତେ କୌଣସି ସଂଗଠନ କି ସମିତି ନାହିଁ; କେହି ଉପଦେଶକ କି ପ୍ରଚାରକ ନାହାନ୍ତି- ତେବେ ଗାଁ ଗାଁରେ ଘରେ ଘରେ ଏ ସବୁ ପ୍ରଚଳିତ। ଅପ୍ରାପ୍ୟ ବସ୍ତୁ ନିମନ୍ତେ ବୈଲକ୍ଷଣ ହେବା ପରେ ବିଧାନ କରାଯାଏ। ଏଣୁ ଯେଉଁଠାରେ ସ୍ତ୍ରୀ ପ୍ରସଙ୍ଗ, ମଦ୍ୟ-ମାଂସର ଆଦେଶ ଦିଆ ହୋଇଥାଏ ସେଠାରେ ଏହାର ତାତ୍ପର୍ଯ୍ୟ ସେମାନଙ୍କର ଚିତ୍ତର ବୃତ୍ତି ଦୂର କରିବା ପାଇଁ ବୋଲି ବୁଝିବାକୁ ହେବ। ଏହି ସବୁ ସ୍ୱାଭାବିକ ପ୍ରବୃତ୍ତିକୁ ନିୟମନ କରିବା ପାଇଁ ଏପରି ଅଭିପ୍ରାୟ ଥାଏ ବୋଲି ବୁଝିବାକୁ ହେବ। ଏ ପ୍ରସଙ୍ଗରେ ଗୋଟିଏ ଉଦାହରଣ-

ଜଣେ ମହାନ ଭାଗବଦ୍‌ଭକ୍ତ ମହାତ୍ମା ଥିଲେ। ସେ ଏପରି ଜାତିର ଥିଲେ ଯେଉଁ ଜାତିରେ ମଦିରାର ବହୁଳ ବ୍ୟବହାର କରାହେଉଥିଲା। ସେହି ଜାତିର ଜଣେ ଆସିଲା ଆଉ ବିନୀତ ଭାବରେ କହିଲା, ''ମହାରାଜ ! ସୁରାପାନ ନିମନ୍ତେ ମୋର ଅଭ୍ୟାସ

ହୋଇଗଲାଣି । ଅନେକ ଚେଷ୍ଟା କରି ସୁଦ୍ଧା ମୁଁ ଛାଡ଼ି ପାରୁନାହିଁ । ଏବେ କ'ଣ କରିବି ?''

ମହାତ୍ମା କହିଲେ, ''ହଉ ! ମୁଁ ତୁମକୁ ଗୋଟିଏ ନିୟମ କହୁଛି, ତୁମେ ସେହି ନିୟମ ଅନୁସାରେ ପାନ କର ।''

ମଦ୍ୟପ କହିଲା, ''ହଁ ଆଜ୍ଞା ! କୁହନ୍ତୁ ।''

ମହାତ୍ମା କହିଲେ, ''ଦେଖ ! ବାହାରେ ଅନ୍ୟ କେଉଁଠାରେ ପିଅ ନାହିଁ । କେବଳ ଘରେ ପିଇବ । ପିଇବା ପୂର୍ବରୁ ଭଗବାନଙ୍କୁ ଭୋଗ ଲଗାଇ ପିଇବ । ଆଉ ଅତି ବେଶୀରେ ଦୁଇଥର ମାତ୍ର ପିଇବ ।''

ମଦ୍ୟପ କହିଲା, ''ମହାରାଜ ! ଭଗବାନଙ୍କୁ ମଦ କିପରି ଭୋଗ କରାଯାଏ ?''

ମହାତ୍ମା କହିଲେ, ''ସେଥିରେ କିଛି ଯାଏ ଆସେ ନାହିଁ । ଯେଉଁ ପୁରୁଷ ଯେପରି ଅନ୍ନ ଖାଏ ତା' ଠାକୁର ବି ସେହି ଅନ୍ନ ଖାଆନ୍ତି ।''

ଏପରି କଥା ଶୁଣି ମଦ୍ୟପ ମହାତ୍ମାଙ୍କ ପାଖରେ ପ୍ରତିଜ୍ଞାବଦ୍ଧ ହୋଇଗଲା । ବାହାରକୁ ବାହାରିବା କ୍ଷଣି ତା' ମନରେ ଉତ୍କଣ୍ଠା ହେଲା । ମାତ୍ର ସେ ପ୍ରତିଜ୍ଞାବଦ୍ଧ ହୋଇଥିବାରୁ ପିଇଲା ନାହିଁ । ଘରକୁ ଆସିବା ବେଳକୁ କ୍ଳାନ୍ତ ହୋଇଯାଇ ଥିଲା । ଏହାପରେ ସ୍ନାନ କରି, ଭଗବାନଙ୍କଠାରେ ଭୋଗ ଲଗାଇ ସୁରା ପାନ କରିବାକୁ ଲାଗିଲା । କେତେ ଦିନ ପରେ ଏ ସବୁ ତାକୁ ବଡ଼ ଝଂଝଟିଆ ଲାଗିଲା । ଧୀରେ ଧୀରେ ମନ ଗ୍ଲାନିପୂର୍ଣ୍ଣ ହୋଇଗଲା । ଅଳ୍ପଦିନ ପରେ ସେ ସୁରାପାନ କରିବା ଛାଡ଼ିଦେଲା ।

''ରାଜନ୍ ! ଏବେ ଆପଣ ଭାବନ୍ତୁ, ମହାତ୍ମା ତାକୁ ସୁରାପାନ କରିବା ପାଇଁ ଅବଶ୍ୟ କହିଥିଲେ, କିନ୍ତୁ ତାକୁ ଗୋଟିଏ ଶୃଙ୍ଖଳାରେ ପ୍ରତିଜ୍ଞାବଦ୍ଧ କରାଇବାର ତାତ୍ପର୍ଯ୍ୟ ତାକୁ ସୁରାପାନ ଅଭ୍ୟାସରୁ ନିବୃତ୍ତ କରିବା ଥିଲା । କିନ୍ତୁ ଯଦି ଅନ୍ୟ ମଣିଷମାନେ କୁହନ୍ତି ଯେ ଗୁରୁଦେବ ଆମ ଉପସ୍ଥିତିରେ ଭଗବାନଙ୍କୁ ଭୋଗ କରି ସୁରାପାନ ନିମନ୍ତେ ନିର୍ଦ୍ଦେଶ ଦେଲେ, ଏଣୁ ଆମର ଏଠାରେ ପ୍ରତିଦିନ ଭୋଗରେ ସୁରା ରଖାଯାଉ ଓ ସମସ୍ତଙ୍କୁ ବଣ୍ଟାଯାଉ, ତେବେ ଏପରି କରିବା ଅର୍ଥ ଗୁରୁଙ୍କ ସହିତ ଅନ୍ୟାୟ କରିବା । ଠିକ୍ ଏହିଭଳି ବେଦର ତାତ୍ପର୍ଯ୍ୟ ସ୍ତ୍ରୀ ପ୍ରସଙ୍ଗାଦିରୁ ଦୂରରେ ରହିବା ପାଇଁ; କିନ୍ତୁ ଆଦେଶ ରୂପରେ କୁହାଯାଇଛି ଯେ ଋତୁକାଳରେ ଭାର୍ଯ୍ୟା-ଗମନ କରିବା ଉଚିତ । ଏଠାରେ ମଣିଷର ସ୍ୱାଭାବିକ ପ୍ରବୃତ୍ତିକୁ ନିୟମ-ବଦ୍ଧ କରାହୋଇଛି । ନିଜ ଭାର୍ଯ୍ୟା ସହିତ ସମାଗମ କରିବା ନିମନ୍ତେ ଶୃଙ୍ଖଳାବଦ୍ଧ କରାହୋଇଛି । ସନ୍ତାନ କାମନାକରି ଗମନ କରିବା ପାଇଁ କୁହାହୋଇଛି, ବିଷୟ ସୁଖ ନିମନ୍ତେ ନୁହେଁ । ଯେଉଁମାନଙ୍କର ପ୍ରବୃତ୍ତି ଏ ଆଡ଼କୁ ନଥାଏ, ସେମାନେ ନୈଷ୍ଠିକ ବ୍ରତ ଗ୍ରହଣ କରିବା ଉଚିତ । ସେହିଭଳି, ଯେଉଁମାନଙ୍କର ମାଂସ

ଭକ୍ଷଣ ନିମନ୍ତେ ପ୍ରବୃତ୍ତି ଅଛି ସେମାନେ ଯଜ୍ଞ କରି ଯଜ୍ଞର ଅବଶିଷ୍ଟ ମାଂସକୁ ଭକ୍ଷଣ କରିବା ଉଚିତ । ମିଥ୍ୟା ହିଂସା ନ କରିବା ଉଚିତ । ସୁରାପାନ କେବଳ ସୌତ୍ରାମଣି ନାମକ ଯଜ୍ଞରେ ହିଁ କରାଯାଇପାରେ । କେବଳ ସୁରାପାନ ନିମନ୍ତେ ଯେଉଁମାନେ ସୌତ୍ରାମଣି ଯଜ୍ଞ କରିପାରିବେ ସେମାନଙ୍କ ନିମନ୍ତେ ଏହା ଏକ ପ୍ରକାର ପ୍ରତିବନ୍ଧକ । ଏପରି କରିବା ଦ୍ୱାରା ସେମାନଙ୍କ ଚିତ୍ତ ସୁରାପାନରୁ ଦୂରେଇ ଯିବ ।

ଏହିଭଳି **ଧନ ଉପାର୍ଜନ ନିମନ୍ତେ ଯେଉଁଠାରେ ଆଦେଶ ଦିଆହୋଇଛି ସେଠାରେ ଧନ ସଂଗ୍ରହ କରି, ମହଜୁଦ କରି ତହିଁରେ ବିବିଧ ପ୍ରକାରର ଶରୀର ସୁଖ ଦେଇ ପାରୁଥିବା ସାମଗ୍ରୀ ସଂଗ୍ରହ କରିବା ଉଦ୍ଦେଶ୍ୟରେ କୁହାଯାଇନାହିଁ । ଧନର ଏକମାତ୍ର ଫଳ ହେଉଛି ଧର୍ମ** । ଯେଉଁ ଧର୍ମକୁ ପାଳନ କରିବା ଦ୍ୱାରା ଆତ୍ମସାକ୍ଷାତ୍‌କାର ସମ୍ଭବ ହୋଇପାରେ, ମୋକ୍ଷ ହୋଇପାରେ, ଧର୍ମରେ ଜ୍ଞାନ-ବିଜ୍ଞାନ ପ୍ରାପ୍ତି ହୋଇପାରେ ଆଉ ସେହିଥିରେ ପରମଶାନ୍ତି ପ୍ରାପ୍ତି ହୋଇଥାଏ । କିନ୍ତୁ ଅଜ୍ଞମାନେ ଏହି ରହସ୍ୟକୁ ବୁଝନ୍ତି ନାହିଁ । ସେମାନେ ଧନ ଉପାର୍ଜନକୁ ହିଁ ମୁଖ୍ୟ କର୍ତ୍ତବ୍ୟ ବୋଲି ବୁଝିଥା'ନ୍ତି । ଧନ ଉପାର୍ଜନ କରିବା, ନିଜକୁ ସୁନ୍ଦର ରୂପରେ ସଜାଇବା, ସ୍ତ୍ରୀକୁ ସଜାଇବା, ଅଧିକରୁ ଅଧିକ ସଂଚୟ କରିବା, ସେଥିରେ ଧର୍ମ କରିବା ନାହିଁ, ତାହାର ସଦୁପଯୋଗ କରିବା ନାହିଁ, ତେବେ ପରିଶେଷରେ ନର୍କକୁ ହିଁ ଯିବା । ତାହାକୁ ଅନ୍ୟ ଲୋକମାନେ ଉପଭୋଗ କରିବେ । ଆଜି ରଥ ନାହିଁ, ଘୋଡ଼ା ନାହିଁ, ଗଦି ନାହିଁ, ପଲଙ୍କ ନାହିଁ; ଏ ସବୁ ସଂଗ୍ରହ କରିବାରେ ଲାଗିଥା'ନ୍ତି । ମୁଣ୍ଡ ଉପରେ ମୃତ୍ୟୁ ନୃତ୍ୟକରୁଥିବା ଦେଖି ପାରନ୍ତି ନାହିଁ । ବେଦ ବାକ୍ୟର ବିପରୀତ ଅର୍ଥ କରୁଛନ୍ତି ।''

ରାଜା କହିଲେ, ''ଭଗବନ୍ ! ମୋତେ କ୍ଷମା କରନ୍ତୁ । ଆପଣଙ୍କ କଥା ଶୁଣି ହିଁ ମୋ ମନରେ ସନ୍ଦେହ ଉପୁଜୁଛି । ବେଦର ତାତ୍ପର୍ଯ୍ୟ ନିବୃତ୍ତିରେ ଅଥବା ପ୍ରବୃତ୍ତିରେ ଅଛି, ସେ କଥା ଆମେ ଏବେ ବିଚାରକୁ ନେବା ନାହିଁ । ଏହାର ପ୍ରକୃତ ତାତ୍ପର୍ଯ୍ୟ କେଉଁଥିରେ ତାହା ତ ସନ୍ଦେହାସ୍ପଦ କଥା । କିନ୍ତୁ ସେ ଯାହା ବି ହେଉ, ସ୍ତ୍ରୀ ପ୍ରସଙ୍ଗ, ମାଂସ ଭକ୍ଷଣ ଆଉ ସୁରାପାନର ଆଦେଶ ଅଛି । ସେ ସବୁ ବିବାହ, ଯଜ୍ଞ ଆଉ ସୌତ୍ରାମଣି ସମୟରେ ହେଉ ପଛେ । ଆମର କହିବା କଥା ଯେ ଏ ସମସ୍ତ କାର୍ଯ୍ୟ ମଧ୍ୟ ବିହିତ କାର୍ଯ୍ୟ ।''

ମହାମୁନି ଚମସ ତତ୍‌କ୍ଷଣାତ୍ କହିଲେ, ''ନା ରାଜନ୍ ! ନା ! ବେଦ ଏଥିପାଇଁ କଦାପି ଆଦେଶ ଦେଇନାହିଁ । ବିବାହ ନିମନ୍ତେ ଯେଉଁଠାରେ ଆଦେଶ ଦିଆହୋଇଛି ସେଠାରେ ବିଷୟ ସୁଖ ନିମନ୍ତେ ନୁହେଁ, କେବଳ ସନ୍ତାନୋତ୍ପତ୍ତି ନିମନ୍ତେ ହିଁ କୁହାଯାଇଛି । ଯେଉଁ ଯଜ୍ଞରେ ପଶୁବଳିର ବିଧାନ ଅଛି ସେଠାରେ ସାକ୍ଷାତ୍ (ସତରେ) ତାକୁ ବଧ କରିବା ଅଭିପ୍ରାୟରେ କୁହାଯାଇନାହିଁ । ସେଠାରେ ଯେଉଁ ଶବ୍ଦ ବ୍ୟବହାର କରାହୋଇଛି

ତାହା ହେଉଛି 'ପଶୁ ଅଲଭନ'। ଅଲଭନ ଅର୍ଥ ଛୁଇଁବା ବା ସ୍ପର୍ଶ କରିବା। ଯଜ୍ଞରେ ପଶୁକୁ ଉତ୍ତମ ରୂପେ ଆଣି ଉପସ୍ଥିତ କରାଇ ତାକୁ ଛୁଇଁ, ଛାଡ଼ିଦେବା। ମାରିବା ବା ବଧ କରିବା ନୁହେଁ। ସୌତ୍ରାମଣି ଯଜ୍ଞରେ ଯେଉଁଠାରେ ସୁରାପାନର ବ୍ୟବସ୍ଥା ଅଛି ସେଠାରେ ସୁରାକୁ ପ୍ରକୃତରେ ପିଇବା ଅଭିପ୍ରାୟରେ କୁହାଯାଇନାହିଁ। କେବଳ ଆଘ୍ରାଣ କରିବା ଅର୍ଥରେ କୁହାଯାଇଛି। ଆଘ୍ରାଣରେ ଅର୍ଦ୍ଧଭୋଜନ ହୋଇଥାଏ। 'ଘ୍ରାଣଂ ଅର୍ଦ୍ଧ ଭୋଜନମ୍'। ଦୁଇଥର ଆଘ୍ରାଣ କରି ରଖିଦେବା କଥା। ଏପରି କଲେ ବେଦ ବିଧି ପୂରା ହୋଇଯାଏ। ପୁଣି ହେ ରାଜନ୍! **ଏ ସବୁ କଥା ତ୍ରେତୟା, ଦ୍ୱାପର ଆଦି ଯୁଗର କଥା। କଳି ଯୁଗରେ ଏପରି ଯଜ୍ଞର ବିଧାନ ତ ଆଦୌ ନାହିଁ।** ତଥା ଅଲଭନ, ଘ୍ରାଣ ଆଦିର ପ୍ରଶ୍ନ ହିଁ ଉଠୁ ନାହିଁ। କିନ୍ତୁ ସ୍ୱାର୍ଥପର ମୂର୍ଖ ଲୋକମାନେ ଏପରି ବିଶୁଦ୍ଧ ଧର୍ମକୁ ବୁଝନ୍ତି ନାହିଁ। ଏପରି ଲୋକମାନେ ଧୂର୍ତ୍ତ। ସେମାନଙ୍କର ଜିହ୍ୱାକୁ ମାଂସର ବ୍ୟସନ ଲାଗିଯାଇଛି। ଏମାନେ ଦେବା-ଦେବୀଙ୍କ ନାମରେ ପଶୁଙ୍କୁ କାଟି କାଟି ସେମାନଙ୍କର ମାଂସକୁ ଅତି ସ୍ୱାଦର ସହିତ ଖାଆନ୍ତି। ଏପରି ଲୋକମାନେ ବି ନର୍କକୁ ଯିବେ। ଯେଉଁମାନେ ଦେବାଦେବୀଙ୍କୁ ନ ମାନି କେବଳ ଉଦର ପୋଷଣ ନିମନ୍ତେ, ସ୍ୱାଦ ନିମନ୍ତେ, ନିଜପାଇଁ କେବଳ ମାଂସ ରାନ୍ଧି ଖାଆନ୍ତି ସେମାନେ ନର୍କକୁ ଯିବାରେ କୌଣସି ବାଧା ନ ଥାଏ। ଯାହାର ମାଂସ ଖାଆନ୍ତି ସେମାନେ ମରିବା ପରେ ମାଂସ ଭକ୍ଷଣକାରୀ ରୂପେ ଜନ୍ମ ହୁଅନ୍ତି ଆଉ ଏହି ଖାଇଥିବା ଲୋକର ମାଂସ ଭକ୍ଷଣ କରନ୍ତି। ଯେଉଁମାନେ ଯାହାର ଯାହାର ମାଂସ ଖାଇଥିବେ ସେହି ସେହିମାନେ ଜନ୍ମାନ୍ତରରେ ନିଜର ହିଁ ମାଂସ ସେମାନଙ୍କୁ ଖୁଆଇବାକୁ ପଡ଼େ।''

ରାଜା କହିଲେ, **''ତେବେ ହେ ଭଗବନ୍! ମାଂସ ଭକ୍ଷଣକାରୀ ତ କଦାପି ମୁକ୍ତି ପାଇ ପାରିବେ ନାହିଁ।''**

ମୁନି କହିଲେ ''ତାହା ତ ଅତି ସତ୍ୟ କଥା। ଏହି ଶରୀର ହେଉଛି ନାଶବାନ୍। ନାନା ପାପକରି ଯେଉଁ ଧନ ସଂଚୟ କରାଯାଏ ତାହା ଏହିଠାରେ ହିଁ ରହିଯାଏ। ଏହି ନାଶବାନ୍ ଶରୀର ପାଇଁ ଅନ୍ୟଙ୍କୁ ହିଂସା କରିବା, ଅନ୍ୟଙ୍କୁ ଦୁଃଖ ଦେବା, ଅନ୍ୟ ଶରୀରରେ ଅବସ୍ଥିତ ଆପଣାର ଆତ୍ମା ଶ୍ରୀହରିଙ୍କ ସହିତ ଦ୍ୱେଷ କରିବା- ଏସବୁ କ'ଣ ଠିକ୍ କଥା! ଏପରି କରୁଥିବା ଲୋକର ଅଧୋଗତି ଅବଶ୍ୟ ହିଁ ହୋଇଥାଏ।''

ରାଜା କହିଲେ, ''ଭଗବନ୍! ଆମେ ଅନେକ ଲୋକଙ୍କୁ ଦେଖୁଛୁ, ସେମାନେ ପଣ୍ଡିତ, ସନ୍ଧ୍ୟାବନ୍ଦନ କରନ୍ତି, ବେଦ ବିଧି ଅନୁସାରେ କର୍ମ କରନ୍ତି। ଏମାନଙ୍କର କେଉଁ ଗତି ହୋଇଥାଏ ?''

ମହାମୁନି ଚମସ କହିଲେ, ''ରାଜନ୍! ଦେଖନ୍ତୁ, **ଜ୍ଞାନ ବିନା ମୁକ୍ତି ନାହିଁ,** ତ୍ୟାଗ

**ବିନା ଶାନ୍ତି ନାହିଁ । ଯେ ପର୍ଯ୍ୟନ୍ତ କୈବଲ୍ୟ ପଦ ପ୍ରାପ୍ତି ହୋଇନଥାଏ, ସେ ଭିତରେ ଆପଣ ହୁଏତ ମୂଢ଼ତାକୁ ଅତିକ୍ରମ କରିଦେଇ ପାରିଥାଆନ୍ତି, କିନ୍ତୁ ପରମ ଶାନ୍ତି ପ୍ରାପ୍ତି ହୋଇ ପାରିବେ ନାହିଁ ।** ଧର୍ମ, ଅର୍ଥ ଆଉ କାମ ରୂପ ଯେଉଁ ତ୍ରିବର୍ଗ ଅଛି, ଏଥିରେ ସଂସାରର ଆବାଗମନ ଛାଡ଼େ ନାହିଁ । ଧର୍ମର ଗତି ସ୍ୱର୍ଗ ପର୍ଯ୍ୟନ୍ତ । ଧର୍ମ କଲେ ସ୍ୱର୍ଗରେ ପହଞ୍ଚିଯିବେ । ପୁଣ୍ୟ କ୍ଷୀଣ ହୋଇଯିବା ପରେ ପୁଣି ପତନୋନ୍ମୁଖୀ ହେବେ । ଏହିପରି ଯିବା ଆସିବା ସବୁବେଳେ ଲାଗି ରହିଥାଏ । କ୍ଷଣକ ପାଇଁ ବି ଶାନ୍ତି ମିଳେ ନାହିଁ । ଏହା ନିଜ ଗୋଡ଼ରେ ନିଜେ କୁରାଢ଼ୀ ମାରିବା ନ୍ୟାୟ । ଜାଣି ଜାଣି ନିଜର ସର୍ବସ୍ୱ ନଷ୍ଟ କରିଦେବା ନ୍ୟାୟ । ରାଜନ୍ ! ଆପଣଙ୍କ ପ୍ରଶ୍ନ ଥିଲା; **'ଭକ୍ତି ହୀନ ପୁରୁଷ କେଉଁ ଗତି ପାଇଥାଏ ?'** ମୁଁ ଏହାର ଉତ୍ତର ଅତି ସଂକ୍ଷେପରେ ଦେଲି ।

''ଏହି ଭକ୍ତିହୀନ ପୁରୁଷମାନେ ଅଜ୍ଞାନକୁ ହିଁ ଜ୍ଞାନ ବୋଲି ବୁଝିଥାଆନ୍ତି । ଏମାନେ କେବଳ ବିଷୟ ପାଇଁ ନାନା ମନୋରଥ କରିବାରେ ଲାଗିଥାଆନ୍ତି । ଏମାନଙ୍କୁ ଆତ୍ମଘାତୀ କୁହାଯାଏ । କାରଣ ଏମାନେ ଆତ୍ମଜ୍ଞାନରୁ ବଞ୍ଚିତ ରହିଥା'ନ୍ତି । ଆଉ ସେଇଥିପାଇଁ ସବୁବେଳେ ଅଶାନ୍ତ ରହିଥା'ନ୍ତି । ଭକ୍ତଙ୍କ ଭଳି ମୃତ୍ୟୁର ମସ୍ତକରେ ପାଦ ରଖି ଏମାନେ ତ୍ରିଲୋକର ବାହାରକୁ ଯାଇ ପାରନ୍ତି ନାହିଁ । ବିକରାଳ କାଳ ଏମାନଙ୍କର ମିଥ୍ୟା ମନୋରଥକୁ ମଝିରେ ନଷ୍ଟ ଭ୍ରଷ୍ଟ କରିଦିଏ । **ଭକ୍ତିହୀନ ପୁରୁଷମାନେ ପ୍ରତ୍ୟେକ କ୍ଷେତ୍ରରେ ଅକୃତକାର୍ଯ୍ୟ ହୋଇ ନାନା କ୍ଲେଶ ନିର୍ଯ୍ୟାତନାରେ ପଡ଼ି ଭଗବଦ୍‌ଭକ୍ତଙ୍କୁ ନିନ୍ଦା କରିବାରେ ହିଁ ଲାଗିଥା'ନ୍ତି । କଥା କୀର୍ତ୍ତନର ବିରୋଧ କରନ୍ତି । ପରମାର୍ଥଙ୍କ ସହିତ ଏମାନେ ଦ୍ୱେଷ କରନ୍ତି ।** କେବଳ ଘର କରିବାରେ, ପତ୍ନୀକୁ ସଜାଇବାରେ, ପୁତ୍ରଙ୍କୁ ପଢ଼ାଇବାରେ, ମିତ୍ରଙ୍କୁ ଖୋଇବାରେ, ଧନ ସଂଗ୍ରହ କରିବାରେ ହିଁ ଲାଗିଥା'ନ୍ତି । ସତ୍ୟରେ, ମିଥ୍ୟାରେ, ଦମ୍ଭରେ, ଛଳରେ, ଯେପରି ଉପାୟରେ ହେଉ, ପଇସା କମାଇବାରେ ଲାଗିଥା'ନ୍ତି । ରାଜଦ୍ୱାରରେ ମିଥ୍ୟା ସାକ୍ଷୀ ଦେଇ ଆସନ୍ତି । ଭଲ ଲୋକଙ୍କୁ କଳଙ୍କିତ କରିଥା'ନ୍ତି । ସାରକଥା ହେଉଛି, ଧନ ଓ କୁଟୁମ୍ବଙ୍କ ପାଇଁ ଏମାନେ ଯାହା ତାହା କରିଥାନ୍ତି ।

''ରାଜନ୍ ! ଏମାନେ ଖୁବ୍ ବଡ଼ ବଡ଼ ଯୋଜନା ପ୍ରସ୍ତୁତ କରନ୍ତି, ଆସନ୍ତା ବର୍ଷ ଏକ ବିରାଟ ଘର କରିବେ, ପୁଅ ଝିଅଙ୍କୁ, ବିବାହ କରାଇବେ, ଯାନ କିଣିବେ, ଏୟା କରିବେ ସେୟା କରିବେ- ଏପରି କରୁ କରୁ କାଳ ବିତି ଯିବ । ମନୋରଥ ମନରେ ହିଁ ରହିଯିବ । ଧନ ଯେଉଁଠାରେ ଜମା ରଖିଥିବେ ସେହିଠାରେ ରହିଯିବ । ସ୍ତ୍ରୀ, ପୁତ୍ର, ମିତ୍ର, କୁଟୁମ୍ବୀ ସମସ୍ତେ ହାୟ ହାୟ କରି ରହିଯିବେ । ଆଉ ମୃତ୍ୟୁମୁଖରେ ପଡ଼ି ଘୋର ନରକକୁ ଗମନ କରିବେ । ଏହା ହିଁ ହୋଇଥାଏ ଭକ୍ତିହୀନ ପୁରୁଷଙ୍କର ଗତି । ଭଗବାନଙ୍କୁ ପୂଜା କରୁ ନଥିବା ଲୋକର ଗତି ଏହିପରି ହୋଇଥାଏ । ଏବେ ହେ ରାଜନ୍ ! ଆପଣ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି କୁହନ୍ତୁ ।''

ରାଜା କହିଲେ, ''ବ୍ରହ୍ମନ୍ ! ଏ ସବୁ କଥା ତ ମୁଁ ଶୁଣିଲି । ଭଗବାନ ବିମୁଖୀଙ୍କ ଗତି ଶୁଣି ମୋର ବୈରାଗ୍ୟ ଆସିଯାଇଛି । ଏବେ ମୋତେ କୁହନ୍ତୁ କେଉଁ କେଉଁ ନାମରେ ଆଉ କେଉଁ ଉପାୟରେ ଭଗବାନଙ୍କର ପୂଜା କରାଯାଏ । ସତ୍ୟ, ତ୍ରେତୟା, ଦ୍ୱାପର ଆଉ କଳି, ଏପରି ଚାରିଯୁଗ । କେଉଁ ଯୁଗରେ ଭଗବାନଙ୍କର କେଉଁ ରୂପ ହୋଇଥାଏ ? ବର୍ଣ୍ଣ କିପରି ହୋଇଥାଏ ? ସକଳ ଗୁଣ ମଧ୍ୟରୁ ଭକ୍ତମାନେ ଏକ ରୂପକୁ ହିଁ ଧ୍ୟାନ କରନ୍ତି ନା ପୃଥକ୍ ପୃଥକ୍ ଯୁଗରେ ପୃଥକ୍ ପୃଥକ୍ ରୂପକୁ । ଯଦି ପୃଥକ୍ ପୃଥକ୍ ରୂପକୁ ଧ୍ୟାନ କରୁଥା'ନ୍ତି ତେବେ କେଉଁ ଯୁଗରେ କେଉଁ ରୂପକୁ ଧ୍ୟାନ କରିବା ଉଚିତ, ଏବିଷୟରେ ଉତ୍ତମ ରୂପରେ ମୋତେ କୁହନ୍ତୁ ।''

ଏପରି କଥା ଶୁଣି ମହାମୁନି ଚମସ କହିଲେ, ''ରାଜନ୍ ! ତୁମର ଏହି ପ୍ରଶ୍ନର ଉତ୍ତର ମୋର କନିଷ୍ଠ ଭ୍ରାତା କରଭାଜନ ଦେବେ । ସେ ଜଣେ ମହାନ୍ ତ୍ୟାଗୀ, ସେ ତାଙ୍କ ସହିତ ଗୋଟିଏ ସାମାନ୍ୟ ପାତ୍ର ବି ରଖନ୍ତି ନାହିଁ । କର ହେଉଛି ତାଙ୍କର ଏକମାତ୍ର ପାତ୍ର ।''

ମହାପ୍ରାଜ୍ଞ ସୂତ ଶୌନକାଦି ଋଷିମାନଙ୍କୁ କହୁଛନ୍ତି, ''ହେ ମୁନିଗଣ ! ଏହା ଶୁଣିବାକ୍ଷଣି ମହାରାଜ ନିମି ମହାଯୋଗେଶ୍ୱରଙ୍କ ଭିତରୁ ସର୍ବକନିଷ୍ଠ ମହାଯୋଗେଶ୍ୱର ଶ୍ରୀକରଭାଜନଙ୍କୁ ଉତ୍ସୁକତାର ସହିତ ଚାହିଁବାରେ ଲାଗିଲେ । ଏବେ ମହାମୁନି କରଭାଜନ ଯେଉଁଭଳି ମହାରାଜ ନିମିଙ୍କ ପ୍ରଶ୍ନର ଉତ୍ତର ଦେଲେ ତାହା ବର୍ଣ୍ଣନା କରୁଛି, ଆପଣମାନେ ସମାହିତ ଚିତ୍ତରେ ଶୁଣନ୍ତୁ ।''

## ଛପ୍ପୟ

*ଧରମ ଅରଥ ଔର କାମ ନରକ ଭୂ ନାକ ଘୁମାବେଁ ।*
*ପାୟେ ବିନୁ ପଦ ପରମ ଶାନ୍ତି ନର କବହୁଁ ନ ପାବେଁ ॥*
*ନିତ ପ୍ରତି ନବ ନବ ମନୋରଥ ମହଲ ବନାବେଂ ।*
*ତଜି ଘର, ସୁତ, ଧନ ସୁହୃଦ୍ ମୃତ୍ୟୁ କେ ମୁଖ ମହଁ ଜାବେଂ ॥*
*ହୋବେଁ ଦୁରଗତି ଭକ୍ତି ବିନୁ, ଉଭୟ ଲୋକମହଁ ନରନି କୀ ।*
*ଭକ୍ତି ଭବନମହଁ ପ୍ରବିସି କେଂ, ହୋଇ ସୁଗତି ଇନ ସବନି କୀ ॥*



# ଯୁଗାନୁସାରେ ପୂଜାର ବିଧି

**କୃତଂ ତ୍ରେତା ଦ୍ୱାପରଂ ଚ କଲିରିତ୍ୟେଷୁ କେଶବଃ ।**
**ମାନବର୍ଣାଭିଧାକାରୋ ନାନୈବ ବିଧିନେଜ୍ୟତେ ।।☆**

(ଶ୍ରୀ ଭା. ୧୧ ସ୍କନ୍ଧ, ୫ଅ. ୨୦ ଶ୍ଳୋକ)

**ଛପ୍‌ପୟ**

*ନିମି ପୂଛେଂ- 'ଯୁଗ ଧରମ ସବିଧି ମୁନିବର ସମୁଝାବେଂ ।*
*ଯୁଗ ଯୁଗମହଁ ହରି ରୂପ, ନାମ ଅରୁ ବରନ ବତାବେଂ ।।*
*କରଭାନମୁନି କହେଂ- ଚାରି ଯୁଗ ଚାରି ରୂପ ଧରି ।*
*ସତଯୁଗମହଁ ବଟୁ ବନୈଂ ଚତୁରଭୁଜ ଶୁକ୍ଳ ବରନି ହରି ।।*
*ତପତେଂ ତବ ତିନକୁଁ ଭଜୈଂ, ପ୍ରେମ କରୈଂ ତପ ଧାମ ତେଂ ।*
*କରେଂ କୀରତନ ହଂସ ମନୁ, ଈଶ୍ୱର ଆଦି ନାମ ତେଂ ।।*

ସବୁ ସମୟରେ ଗୋଟିଏ ପ୍ରକାର ରାଗ ଗାନ କରାଯାଏ ନାହିଁ । ଭୈରବରାଗ ତଥା ତା'ର ଭୈରବୀ ଆଦି ରାଗିଣୀ ସୂର୍ଯ୍ୟୋଦୟ ପୂର୍ବରୁ ଗାନ କରାଯାଏ । ଏହିଭଳି ପ୍ରହରେ ଦିନ ହେବାପରେ ହିଣ୍ଡୋଲ, ଦ୍ୱିପ୍ରହରରେ ଦୀପକ ରାଗ, ଚତୁର୍ଥ ପ୍ରହରରେ ଶ୍ରୀରାଗ, ମେଘ ରାଗକୁ ମେଘ ସମୟରେ ଗାନ କରାଯାଏ । ଫଗୁଣରେ ସମସ୍ତ ରାଗକୁ ସବୁସମୟରେ ଗାନ କରାଯାଇ ପାରେ । ସାରକଥା ହେଉଛି ପ୍ରତ୍ୟେକ ରାଗ ପାଇଁ ନିର୍ଦ୍ଦିଷ୍ଟ ସମୟ ବନ୍ଧା ହୋଇଛି । ଯଥାସମୟରେ ରାଗ ଉତ୍ତମ ହୋଇଥାଏ । ସବୁ ସମୟରେ ଏକାଭଳି ବସ୍ତ୍ର ପରିଧାନ କରାଯାଏ ନାହିଁ । ବିବାହ, ଉତ୍ସବ ସମୟରେ ନୂତନ ବସ୍ତ୍ର ପିନ୍ଧାଯାଏ । ଅନ୍ୟ ଦିନମାନଙ୍କରେ ସାଧାରଣ ବସ୍ତ୍ର । ଶୀତ ଦିନରେ ପଶମ ମୋଟା ବସ୍ତ୍ର ପିନ୍ଧାଯାଏ । ଗରମ ଦିନରେ ପତଳା, ଶୀତଳ ବସ୍ତ୍ର ପିନ୍ଧା ଯାଏ । ବର୍ଷାଦିନରେ ଏପରି ବସ୍ତ୍ର ପିନ୍ଧାଯାଏ ଯାହା ଶୀତ, ଗରମ ତଥା ବର୍ଷାଜଳରୁ ରକ୍ଷା କରିପାରେ । ଭୋଜନ ବି ସବୁ ସମୟରେ ଏକାଭଳି ହୁଏନାହିଁ । ଗରମ ଦିନରେ ଶୀତଳ, ପଖାଳ, ମିଠା ତଥା କମ୍

---

☆ କଳି କଳୁଷ ନିବାରଣ । ଯେ କରେ ଶ୍ରବଣ କୀର୍ତ୍ତନ ।।
ଯେ ରୂପ ବହେ ସତ୍ୟଯୁଗେ । ତ୍ରେତା ଦ୍ୱାପର କଳିଯୁଗେ ।।
ଇଚ୍ଛା ବିହାରେ ଅବତରେ । ସ୍ୱଭାବେ ନାନାରୂପ ଧରେ ।।
ବିଧି-ବିଧାନ ନାନାମତେ । ଯେ ରୂପ ପୂଜନ୍ତି ଜଗତେ ।।

(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୬ ଅ.)

ଲୁଣ ଥିବା ଭୋଜନ କରାଯାଏ । ଶୀତ ଦିନରେ ଉଷ୍ଣମ ଗରିଷ୍ଠ, ପୌଷ୍ଟିକ, ଖଟା ଆଦି ଖିଆଯାଏ । ବର୍ଷା ଦିନରେ ଶୁଖିଲା, ଖଟା, ଶୀତୋଷ୍ଣ ଖିଆଯାଏ । ଜଳ ବି ସବୁ ସମୟରେ ଏକ ପ୍ରକାର ପିଆ ହୁଏ ନାହିଁ । ଖରା ଦିନରେ ମାଠିଆ ପାଣିରେ ବରଫ ପକାଇ ପିଇବାକୁ ଭଲ ଲାଗେ । ଶୀତ ଦିନରେ ବାମ୍ପ ଉଠୁଥିବା ଉଷ୍ଣ ପାଣି ପିଇବାକୁ ଭଲଲାଗେ । ଅଥଚ କ୍ଷୀରରେ ଚିନି, ତୁଳସୀ, ଅଦା, ଗୋଲମରିଚ ପକାଇ ଗରମ ଗରମ ପିଇବା ଅତି ହିତକର ହୋଇଥାଏ । ମଣିଷଙ୍କର ଚିତ୍ତବୃତ୍ତି ବି ସବୁ ସମୟରେ ଏକାଭଳି ହୋଇ ନଥାଏ । କେତେବେଳେ ସତ୍ତ୍ୱଗୁଣ ବଢ଼ିଯାଏ ତ କେତେବେଳେ ରଜୋଗୁଣ ତ ଆଉ କେତେବେଳେ ତମୋଗୁଣ । ଶରୀର ବି ସବୁବେଳେ ଏକା ଭଳି ରହେନାହିଁ । କେତେବେଳେ ଛୋଟ ହୋଇଥାଏ, କେତେବେଳେ ବଡ଼ ହୋଇଥାଏ, କେତେବେଳେ ପତଳା ତ ଆଉ କେତେବେଳେ ମୋଟା, କେତେବେଳେ ସୁସ୍ଥ ଥାଏ ତ ଆଉ କେତେବେଳେ ଅସୁସ୍ଥ । ସାରକଥା ହେଉଛି ସଂସାର ପରିବର୍ତ୍ତନଶୀଳ । ଯେତେବେଳେ ଯେଉଁ ସମୟ ହୋଇଥାଏ ସେତେବେଳେ ତଦନୁରୂପ, ସେହିଭଳି ଯଥାର୍ଥ ଉପକରଣ ଏକତ୍ରିତ କରା ହୁଏ ।

ମହର୍ଷି ସୂତ କହୁଛନ୍ତି - ‘‘ହେ ମୁନିଗଣ ! ରାଜା ନିମି ଯେତେବେଳେ ମୁନିମାନଙ୍କୁ ଯୁଗଧର୍ମ ବିଷୟରେ ପ୍ରଶ୍ନକଲେ ସେତେବେଳେ ସେହି ନବଯୋଗେଶ୍ୱରଙ୍କ ମଧ୍ୟରେ ଯିଏ ସର୍ବକନିଷ୍ଠ, କରଭାଜନ ମୁନି, ଉତ୍ତର ଦେଇ କହିଲେ- ‘‘ଯୁଗ ଯେପରି ଯେପରି ପରିବର୍ତ୍ତନ ହେଉଥାଏ, ସେପରି ସେପରି ପ୍ରଭୁ-ପୂଜା-ପଦ୍ଧତିରେ ବି ପରିବର୍ତ୍ତନ ହୋଇଯାଏ । ଅରୂପ ଭଗବାନ ଯୁଗାନୁରୂପ ରୂପଧାରଣ କରନ୍ତି । ଅନାମ ଭଗବାନଙ୍କର ଯୁଗାନୁସାର ହିଁ ପ୍ରଧାନ ନାମ ପ୍ରସିଦ୍ଧ ହୋଇଯାଏ । ଅବର୍ଣ୍ଣ ଭଗବାନ ଯୁଗ ଅନୁସାରେ ବର୍ଣ୍ଣ ବି ଧାରଣ କରି ଦିଅନ୍ତି । ପ୍ରଥମେ ଆପଣ ଯୁଗ ସମ୍ବନ୍ଧରେ ବୁଝନ୍ତୁ । **ଯୁଗ ଯେତେବେଳେ ଯେଉଁଭଳି ହୁଏ, ଲୋକଙ୍କର ଚିତ୍ତବୃତ୍ତି ସେହି ଭଳି (ତଦନୁରୂପ) ହୋଇଯାଏ ।** ସତ୍ତ୍ୱଗୁଣ ପ୍ରଧାନ ସମୟ ଯେତେବେଳେ ହୁଏ, ସେହି ଯୁଗର ନାମ ସତ୍ୟଯୁଗ ହୁଏ । ଭଗବାନ ହେଉଛନ୍ତି ଏକ, ତାଙ୍କୁ ପାଇବାର ଉପାୟ ମଧ୍ୟ ଏକ, ତାଙ୍କର ନାମ କୀର୍ତ୍ତନ କରିବା । କିନ୍ତୁ ସମୟ-ସମୟାନୁସାରେ ତାଙ୍କର ନାମ, ରୂପ, ବର୍ଣ୍ଣ ଆଉ ସାଧନାରେ କିଛି ଦେଖାଇବା ପାଇଁ ପରିବର୍ତ୍ତନ-ଭଳି ହୋଇଯାଏ । ସେ ଯୁଗଧର୍ମର ମହିମା ଦେଖାଇବାକୁ ହିଁ ହୋଇଥାଏ । **ଜଗତ ହେଉଛି ତ୍ରିଗୁଣାତ୍ମକ । ଏହି ତ୍ରିଗୁଣାତ୍ମକ ଜଗତକୁ ଚାରିଯୁଗରେ ବିଭକ୍ତ କରିଦିଆ ହୋଇଛି ।** ସତ୍ତ୍ୱପ୍ରଧାନ ଯୁଗକୁ ସତ୍ୟଯୁଗ । ସତ୍ତ୍ୱ ଆଉ ରଜୋପ୍ରଧାନ ଯୁଗକୁ ତ୍ରେତାଯୁଗ । ରଜୋଗୁଣ ଆଉ ତମୋଗୁଣ ମିଶ୍ରିତ ଯୁଗକୁ ଦ୍ୱାପର, ଆଉ ତମପ୍ରଧାନ ଯୁଗକୁ କଳିଯୁଗ କୁହାଯାଏ । ସମୟ ବା ଯୁଗ

ଅନୁସାରେ ଲୋକମାନଙ୍କର ପ୍ରବୃତ୍ତି ସମୂହ ମଧ୍ୟ ଏହିଭଳି ଯୁଗାନୁରୂପ ହୋଇଥାଏ । ଯୁଗମାନଙ୍କର କୌଣସି ଆକାର ଅଛି ବୋଲି କୁହାଯାଇପାରେ ନାହିଁ । ବସନ୍ତ ଆସିଲେ ଯେପରି ବୃକ୍ଷମାନଙ୍କରେ ପତ୍ରଝଡ଼ି ପଡ଼ି ନୂତନ କଳିକାର ଅଭ୍ୟୁଦୟ ହେବାରେ ଲାଗେ, ଫୁଲ ଫୁଟେ; ଯେପରି ସମୟ ହୋଇଗଲେ ସ୍ତ୍ରୀମାନେ ଗର୍ଭଧାରଣ ଯୋଗ୍ୟା ହୋଇ ଯାଆନ୍ତି, ଯେପରି ସମୟ ହୋଇଗଲେ ଦାଢ଼ି ନିଶ, ଦାନ୍ତ ଆଦି ଉଠେ ଓ ସମୟ ହୋଇଗଲେ ବାଳ ପାଚେ, ଦାନ୍ତ ପଡ଼େ ଇତ୍ୟାଦି, ଯେପରି ସମୟ ହୋଇଗଲେ ଦିନ ହୋଇଯାଏ, ଆଉ ରାତି ବି ହୋଇଯାଏ- ଠିକ୍ ସେହିଭଳି ଗୋଟିଏ ଯୁଗ ବିତିଯିବା ପରେ ଅନ୍ୟ ଯୁଗଟି ଆପଣା ଛାଏଁ ଆସିଯାଏ । ଯେପରି ଯୁଗ ଆସିଥାଏ ତଦନୁରୂପ କାର୍ଯ୍ୟ ଲୋକମାନେ କରିଥା'ନ୍ତି । ପ୍ରଭୁଙ୍କର ପୂଜାବିଧି ବି ବଦଳି ଯାଏ । ଯୁଗାବତାର ଭଗବାନଙ୍କ ରୂପର ଧ୍ୟାନ ବି ବଦଳି ଯାଏ । ଆଉ ତାଙ୍କର କୀର୍ତ୍ତନର ନାମ ବି ବଦଳି ଯାଏ । **କୀର୍ତ୍ତନର ଶ୍ରେଷ୍ଠତା ତ ସବୁ ଯୁଗରେ ଥାଏ, କାରଣ ବିନା କୀର୍ତ୍ତନରେ କେଶବ ପ୍ରାପ୍ତି ଅସମ୍ଭବ । କେବଳ ତାହାର ପ୍ରକାର ଭେଦ ହୋଇଯାଏ ।''**

ମହାରାଜ ନିମି ପଚାରିଲେ, ''ଭଗବନ୍ ! ଏହି ବିଷୟକୁ ଟିକିଏ ପ୍ରାଞ୍ଜଳ ଭାବରେ ବୁଝାଇ ଦିଅନ୍ତୁ । ସତ୍ୟଯୁଗରେ ଭଗବାନଙ୍କ ପୂଜା କିପରି କରା ହୁଏ ।''

ମହାମୁନି କରଭାଜନ କହିଲେ, ''ରାଜନ୍ ! ସତ୍ୟଯୁଗରେ ଲୋକମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ସତ୍ତ୍ୱଗୁଣମୟ ହୋଇଥାଏ । ସତ୍ତ୍ୱଗୁଣରେ ଜ୍ଞାନ ବର୍ଦ୍ଧନ ହୋଇଥାଏ । ସତ୍ୟଯୁଗର ଲୋକମାନେ ସ୍ୱଭାବତଃ ଜ୍ଞାନୀ ହୋଇଥା'ନ୍ତି । ଯିଏ ଯେତେ ବଡ଼ ଜ୍ଞାନୀ ହୋଇଥାଏ ସେ ସେତେ ସ୍ୱଳ୍ପ ଦ୍ରବ୍ୟ ସଂଗ୍ରହ କରିଥାଏ । ଯିଏ ଯେତେ ଅଜ୍ଞାନୀ ହୋଇଥାଏ, ସେ ସେତେ ଅଧିକରୁ ଅଧିକ ସଂଗ୍ରହ କରିଥାଏ । **ତ୍ୟାଗ ହେଉଛି ଜ୍ଞାନର ଲକ୍ଷଣ । ତ୍ୟାଗର ଫଳ ହେଉଛି ଶାନ୍ତି, ସଂଗ୍ରହର ଫଳ ହେଉଛି ଅଶାନ୍ତି । ଯାହାଙ୍କ ପାଖରେ ଯେତେ ଅଧିକ ଦ୍ରବ୍ୟ ଥିବ, ସେ ସେତେବେଶୀ ଅଶାନ୍ତ ହୋଇଥିବେ ।** ସତ୍ୟଯୁଗରେ କେହି କେବେ ଘର ତିଆରି କରୁନଥିଲେ । ଆଉ ଏଇଥିପାଇଁ ସେମାନଙ୍କୁ ଖରା, ବର୍ଷା କି ଶୀତ ହେଉ ନଥିଲା । ସେତେବେଳେ ଲୋକମାନେ ଅନ୍ନ ସଂଗ୍ରହ ବି କରୁ ନଥିଲେ । ଆଉ ଏଇଥିପାଇଁ ସେମାନଙ୍କୁ ଅନ୍ନର ଅଭାବ ହେଉ ନଥିଲା । ଯେଉଁଆଡ଼େ ଯାଉଥିଲେ ସେଠାରେ ଭୋଜନ ମିଳିଯାଉଥିଲା । ଯେତେବେଳେ ସେମାନେ ସଂଗ୍ରହ କରୁନଥିଲେ, ଅଶାନ୍ତ ହୁଅନ୍ତେ ଅବା କାହିଁକି ? ଯେତେବେଳେ ଅଶାନ୍ତିର କାରଣ 'ସଂଗ୍ରହ' ନଥିଲା, ସେତେବେଳେ ଅଶାନ୍ତି ହେବେ କାହିଁକି ? ଏଣୁ ସେତେବେଳେ ଲୋକମାନେ ଶାନ୍ତ ସ୍ୱଭାବର ହୋଇଥା'ନ୍ତି ।

''ଯେତେବେଳେ ଆମେ ଆବଶ୍ୟକତାରୁ ଅଧିକ ବସ୍ତୁ ସଂଗ୍ରହ କରୁ

**ସେତେବେଳେ ଆମେ ଅନ୍ୟର ଅଧିକାର ଛଡ଼ାଇ ନେଇଥାଉ ।** ଭଗବାନ୍ ତ ଯେତେ ପ୍ରାଣୀ ସୃଷ୍ଟି କରନ୍ତି, ସେମାନଙ୍କ ଅନୁରୂପ ଉପଯୋଗୀ ବସ୍ତୁ ତିଆରି କରିଥା'ନ୍ତି । ଜଣେ ଲୋକ ଅଛି, ଦୁଇ ଶହ ଗ୍ରାମ ଅନ୍ନରେ ତା' ପେଟ ପୂରିଯାଏ । ଯଦି ସେ ଅଧିକିଲୋ ଅନ୍ନ ସଂଗ୍ରହ କରେ ତେବେ ସେ ତିନିଶହ ଗ୍ରାମ ଅନ୍ନ ଚୋରି କରିଛି ବୋଲି ଜାଣିବାକୁ ହେବ । ଅନ୍ୟର ଭାଗ ସେ ଛଡ଼ାଇ ଆଣିଲା । ଯିଏ ଯାହାର ଭାଗ ଛଡ଼ାଇ ଆଣିଥାଏ, ସେ ବା ତା'ର ସମ୍ବନ୍ଧୀମାନେ ଭାଗ ଛଡ଼ାଇ ନେଇଥିବା ଲୋକର ବୈର କରନ୍ତି । **ଏଣୁ ବୈର ଭାବ ସବୁବେଳେ ବସ୍ତୁ ସଂଗ୍ରହରେ ହିଁ ହୋଇଥାଏ । ଯିଏ ଯେଡ଼େ ଧନୀ ହୋଇଥାଏ ତାର ସେତେ ଅଧିକ ଶତ୍ରୁ ହୋଇଥା'ନ୍ତି ।** ଧନିକ ଲୋକକୁ ସମସ୍ତେ ଶୋଷଣ କରିବାକୁ ଚାହାନ୍ତି । ନିର୍ଦ୍ଧନ ଲୋକମାନେ ଧନୀଙ୍କ ଉପରେ ମନେ ମନେ ଖୁବ୍ ଦ୍ୱେଷ କରନ୍ତି । ଯିଏ ଅତ୍ୟଧିକ ପ୍ରତିଷ୍ଠା ସଂଗ୍ରହ କରିଥାଏ, କମ୍ ପ୍ରତିଷ୍ଠିତ ଲୋକମାନେ ତା' ପ୍ରତି ମନେମନେ ଖୁବ୍ ଦ୍ୱେଷ କରନ୍ତି । ଏହିଭଳି ବୈରର କାରଣ ହେଉଛି ସଂଗ୍ରହ । ସତ୍ୟଯୁଗରେ କେହି ସଂଗ୍ରହ କରୁନଥିଲେ । ତେଣୁ ସମସ୍ତେ ନିର୍ବୈର ଥିଲେ । ଯେ ଯେତେ ଅଧିକ ସଂଗ୍ରହୀ ହୋଇଥାଏ ସେ ସେତେ ଅଧିକ ହୃଦୟହୀନ ହୋଇଥାଏ । ଧନ ସଂଗ୍ରହକାରୀ କେତେବେଳେ ବି ସୁହୃଦ ହୋଇପାରେ ନାହିଁ । କେବଳ ଜଣେ, ସେଇ ଏକ ଭଗବାନ୍ ବିଷ୍ଣୁଙ୍କୁ ଛାଡ଼ିଦେଲେ ସଂଗ୍ରହୀ ସର୍ବଦା ସନ୍ଦେହୀ ହିଁ ହୋଇଥାଏ । କାଳେ କେହି ତାକୁ ମାଗି ନେବେ । ସବୁବେଳେ ଯିଏ ଶଙ୍କିତ ଥାଏ ତାକୁ କିପରି ସୁହୃଦ କୁହାଯାଇ ପାରିବ ? ସତ୍ୟଯୁଗରେ ଶଙ୍କାର ସାମାନ୍ୟମାତ୍ର ସ୍ଥାନ ନଥିଲା । ଏଣୁ ସମସ୍ତେ ସହୃଦୟ ହୋଇଥା'ନ୍ତି । ମନରେ ଯେବେଠାରୁ ବସ୍ତୁ ପ୍ରତି ମୋହ ହେବାରେ ଲାଗେ ସେତେବେଳେ କେତେକ ଲୋକଙ୍କ ଠାରେ ରାଗ ହୋଇଯାଏ । ସେମାନେ ଅଧିକରୁ ଅଧିକ ଉତ୍ତମ ବସ୍ତୁ ପାଇବା ପାଇଁ ଇଚ୍ଛା କରନ୍ତି । ଉଦାସୀନମାନଙ୍କୁ ସାଧାରଣ ବସ୍ତୁ ଦିଆଯାଏ ଆଉ ଦ୍ୱେଷୀମାନଙ୍କୁ ଦେବାକୁ ଇ ଚାହାନ୍ତି ନାହିଁ । ଏହିଭଳି ଅସମ ବ୍ୟବହାର କରିବାରେ ଲାଗନ୍ତି । ସତ୍ୟଯୁଗରେ ସମସ୍ତେ ଏକାଭଳି ହୋଇଥା'ନ୍ତି । ଏଣୁ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ସମାନ ଭାବରେ ଦେଖୁଥା'ନ୍ତି । ସମସ୍ତେ ସମଦର୍ଶୀ ହୋଇଥା'ନ୍ତି । ଏପରି ହୋଇ ସୁଦ୍ଧା ମନ ଆଉ ଇନ୍ଦ୍ରିୟଙ୍କ ସ୍ୱଭାବ ବିଷୟ ଆଡକୁ ଦୌଡ଼େ । ଏମାନଙ୍କୁ ସଂସାର ଉଦ୍ଦେଶ୍ୟରେ ଯିବାକୁ ନ ଦେଇ ଭଗବାନଙ୍କ ଉଦ୍ଦେଶ୍ୟରେ ଲଗାଇଦେବା ଉଚିତ- ଆଉ ଏହାର ନାମ ହିଁ ସାଧନା । ଏଣୁ **ଶମ, ଦମ, ଆଉ ତପସ୍ୟା ଦ୍ୱାରା ସତ୍ୟଯୁଗର ଲୋକମାନେ ଭଗବାନଙ୍କର ଉପାସନା କରୁଥା'ନ୍ତି ।''**

ରାଜା ପଚାରିଲେ, ''ଭଗବନ୍ ! ସତ୍ୟଯୁଗର ଲୋକମାନେ ଉପାସନା କିପରି କରନ୍ତି ? ସେମାନେ କେଉଁ ରୂପକୁ ଧ୍ୟାନ କରନ୍ତି ?''

ମହାଯୋଗେଶ୍ୱର କରଭାଜନ କହିଲେ, ''ରାଜନ୍ ! ସତ୍ୟଯୁଗର ଲୋକମାନେ ସୂକ୍ଷ୍ମଦର୍ଶୀ ଥିଲେ । ସେମାନେ ବାହ୍ୟ ବସ୍ତୁ ଉପରେ ଗୁରୁତ୍ୱ କି ମହତ୍ତ୍ୱ ଆଦୌ ଦେଉ ନଥିଲେ । ସେମାନେ ମନ, ବାଣୀ ଆଉ ଶରୀର ଦ୍ୱାରା ତପସ୍ୟା କରୁଥିଲେ । ଭଗବାନଙ୍କର ତପସ୍ୱୀ ରୂପକୁ ଧ୍ୟାନକରି କୀର୍ତ୍ତନ କରୁଥିଲେ । **ଭଗବାନ୍‌ଙ୍କୁ ତ ଯିଏ ଯେପରି ଭଜନ କରେ ସେ ସେହିଭଳି ହିଁ ଭଜନ କରନ୍ତି । ସତ୍ୟଯୁଗର ଲୋକଙ୍କର କଲ୍ୟାଣ ନିମନ୍ତେ ଭଗବାନ୍ ବି ତପୋମୟ ରୂପ ଧାରଣ କରନ୍ତି ।** ଶୁକ୍ଳବର୍ଣ୍ଣ ହେଉଛି ସତ୍ତ୍ୱଗୁଣର ଦ୍ୟୋତକ । ସତ୍ତ୍ୱ ପ୍ରଧାନ ସତ୍ୟଯୁଗରେ ଭଗବାନଙ୍କର ବର୍ଣ୍ଣ ହୋଇଥାଏ ଶୁକ୍ଳ । ସେ ଚତୁର୍ଭୁଜ ରୂପ ଧାରଣ କରନ୍ତି । ମସ୍ତକରେ ଜଟା ଧାରଣ ପୂର୍ବକ ବଲ୍‌କଳ ବସ୍ତ୍ର ପରିଧାନ କରି, ସ୍କନ୍ଧରେ ଯଜ୍ଞୋପବିତ ଓ କଣ୍ଠରେ ରୁଦ୍ରାକ୍ଷମାଳ ପିନ୍ଧି, କୃଷ୍ଣ ମୃଗଚର୍ମ, ଦଣ୍ଡ, କମଣ୍ଡଳୁ ସହିତ ସାକ୍ଷାତ ତାପସ ରୂପରେ ହୋଇଥା'ନ୍ତି । ଏପରି ରୂପକୁ ସତ୍ୟଯୁଗର ଲୋକମାନେ ଅନବରତ ଧ୍ୟାନ କରି କରି ହଂସ, ସୁପର୍ଣ୍ଣ ବୈକୁଣ୍ଠ, ଧର୍ମ, ଯୋଗେଶ୍ୱର, ମନୁ, ଈଶ୍ୱର, ପୁରୁଷ, ଅବ୍ୟକ୍ତ, ପରମାତ୍ମା ଆଦି ନାମର ସଂକୀର୍ତ୍ତନ କରନ୍ତି । ସେହି ଯୁଗର ଧ୍ୟାନ ପୂର୍ବକ କୀର୍ତ୍ତନ ହୋଇଥାଏ ପ୍ରଧାନ ସାଧନ ।''

ରାଜା ପଚାରିଲେ, ''ଭଗବନ୍ ! ତ୍ରେତୟା ଯୁଗରେ ଭଗବାନଙ୍କୁ କିପରି ଉପାସନା କରାଯାଏ ?''

ମହାମୁନି କହିଲେ, ''ତ୍ରେତାଯୁଗରେ ସତ୍ତ୍ୱ ସହିତ ରଜୋଗୁଣ ପ୍ରବେଶ କଲା । ଏବେ ଲୋକମାନେ ଅପରିଗ୍ରହରେ କଷ୍ଟ ଅନୁଭବ କରିବାରେ ଲାଗିଲେ । ରଜୋଗୁଣର ଧର୍ମ ହେଉଛି ଲୋଭ । ଯିଏ ଯେତେ ରଜୋଗୁଣୀ ହୋଇଥାଏ, ସେ ସେତେ ଲୋଭୀ ହୋଇଥାଏ । ଲୋଭ ହୁଏ ଅବିଶ୍ୱାସ ଯୋଗୁ । କାଳେ ଆସନ୍ତାକାଲି ଭୋଜନ ମିଳିବ ନାହିଁ, ଆଜି ଠାରୁ କିଛି ସଂଗ୍ରହ କରି ରଖିଦେଲେ ଭଲ । ହୁଏତ ବର୍ଷାଦିନରେ ବର୍ଷା ନ ହୋଇପାରେ । ଏଥିପାଇଁ ଆଜିଠାରୁ ଜଳ ଭଣ୍ଡାର କରିଦେଇ ଥିବା । ପୁଣି ରଜୋଗୁଣରେ ଖୁବ୍ ଛନ୍‌ଛନିଆ ଦେଖାଇହେବା ସ୍ୱଭାବ ହୋଇଥାଏ । ସତ୍ତ୍ୱଗୁଣ ଯେପରି ଶୁକ୍ଳ, ସେହିଭଳି ରଜୋଗୁଣ ହେଉଛି ଶୁକ୍ଳବଣ୍ଡ ବିଶିଷ୍ଟ । ତ୍ରେତୟା ଯୁଗରେ ବିରାଟ ବିରାଟ ରାଜଧାନୀ ନିର୍ମିତ ହେବାରେ ଲାଗିଲା । ମହତ୍ ଦ୍ରବ୍ୟ ସଂଗ୍ରହ ହୋଇ ଏକତ୍ରିତ ହେବାରେ ଲାଗିଲା । ଭଗବାନ ବି ତଦନୁରୂପ ରୂପ ଧାରଣ କରିଦେଲେ । ସତ୍ୟଯୁଗରେ ଯେପରି ଧ୍ୟାନର ପ୍ରାଧାନ୍ୟ ଥିଲା, ଏବେ ତ୍ରେତୟାରେ ଅନ୍ତର ମଧ୍ୟରେ ଧ୍ୟାନର ସମ୍ଭାବନା କମ୍ ହୋଇଯିବାରୁ ରାଜସ ପ୍ରଧାନ ବୃହତ୍ ସାମଗ୍ରୀ ସଂଗୃହୀତ ହୋଇ ଯାଗଯଜ୍ଞ ପ୍ରଧାନ ହୋଇଗଲା । ଧର୍ମ ନିମନ୍ତେ ଲୋକମାନଙ୍କର ରୁଚି ଅଧିକ ହେଲା । କର୍ମକାଣ୍ଡ ଆଡ଼କୁ ଋଷିମାନେ ଅଧିକ ଆକର୍ଷିତ ହେବାରେ ଲାଗିଲେ । ଭଗବାନ ବି ଯଜ୍ଞ-ପୁରୁଷର ରୂପ

ଧାରଣ କରିନେଲେ । ଅଗ୍ନି ଯେଉଁଭଳି ରକ୍ତ-ବର୍ଣ୍ଣର ହୋଇଥାଏ, ଭଗବାନଙ୍କର ବର୍ଣ୍ଣ ସେହିଭଳି ହୋଇଗଲା । ପ୍ରାଜାପତ୍ୟ, ଗାର୍ହପତ୍ୟ ଆଉ ଆହବନୀୟ-ଏହିପରି ତିନୋଟି ଅଗ୍ନି । ବେଦତ୍ରୟୀ ଦ୍ୱାରା ଏହି ତିନି ଅଗ୍ନିରେ ହୋମ କରାହୁଏ । ଏହାର ପ୍ରତୀକ ସ୍ୱରୂପ ଭଗବାନ ତିନି ମେଖଳା ଧାରଣ କରିନେଲେ । ଭଗବାନଙ୍କର କେଶ ବି ସୁନ୍ଦର ହୋଇଗଲା । ସେ ହିରଣ୍ୟକେଶ, ଚତୁର୍ଭୁଜ ଭଗବାନ୍ ହାତରେ ସ୍ରୁକ୍ ଆଉ ସ୍ରୁବା ଆଦି ଯଜ୍ଞ ପାତ୍ର ଧାରଣ କରି କର୍ମକାଣ୍ଡୀ ଲୋକଙ୍କର ଇଚ୍ଛା ପୂରଣ କରିବାରେ ଲାଗିଲେ । ବ୍ରହ୍ମବାଦୀ ଧର୍ମନିଷ୍ଠ ଆର୍ଯ୍ୟ ପୁରୁଷ ସେହି ସର୍ବଦେବମୟ ଭଗବାନଙ୍କର ବିଧି ବିଧାନ ସହିତ ଯଜ୍ଞ ଦ୍ୱାରା ପୂଜା ପୂର୍ବକ ବିଷ୍ଣୁ, ଯଜ୍ଞପୁରୁଷ, ପୃଶ୍ନିଗର୍ଭ, ସର୍ବଦେବମୟ, ଉରୁକ୍ରମ, ବୃଷାକପି, ଜୟନ୍ତ, ଆଉ ଉରୁଗାୟ ଆଦି ନାମରେ କୀର୍ତ୍ତନ କରିବାରେ ଲାଗିଲେ । ତ୍ରେତୟା ଯୁଗର ଲୋକମାନେ ଯଜ୍ଞ କରି ବେଦମନ୍ତ୍ରରେ ଭଗବାନଙ୍କ ନାମ କୀର୍ତ୍ତନ କରୁଥିଲେ । ନାମକୀର୍ତ୍ତନ ବିନା ଯାଗଯଜ୍ଞାଦି ବ୍ୟର୍ଥ ଥିଲା, କିନ୍ତୁ ଯଦି ଯଜ୍ଞରେ ମନ୍ତ୍ର, ତନ୍ତ୍ର, ଦେଶ, କାଳ ଅଥବା ଅର୍ଥରେ କୌଣସି ତ୍ରୁଟି ରହିଯାଏ ଆଉ ଭଗବାନଙ୍କର ନାମ କୀର୍ତ୍ତନ କରାହୁଏ, ସେତେବେଳେ ସକଳ ପ୍ରକାର ତ୍ରୁଟି ଦୂର ହୋଇଯାଏ । ବେଦ, ଯଜ୍ଞାଦି ସମସ୍ତ କ୍ରିୟାର ନ୍ୟୂନତା ଭଗବାନଙ୍କର ନାମ ସ୍ମରଣରେ ଦୂର ହୋଇଯାଏ । ଏଣୁ ଯଜ୍ଞରେ ବୈଦିକ-ତାନ୍ତ୍ରିକ-ମନ୍ତ୍ରର କୀର୍ତ୍ତନ ହୋଇଥାଏ ।''

ରାଜା ପଚାରିଲେ, ''ଭଗବନ୍ ! ମୁଁ ସତ୍ୟ ଏବଂ ତ୍ରେତୟା ଏହି ଦୁଇ ଯୁଗର ଧର୍ମ, ଭଗବାନଙ୍କର ପୂଜା ସମ୍ବନ୍ଧୀୟ ସକଳ କଥା ଶୁଣିଲି । ଏବେ ମୁଁ ଦ୍ୱାପର ଯୁଗରେ ଭଗବାନଙ୍କର ବର୍ଣ୍ଣ ଆଉ ତାଙ୍କର ପୂଜା ସମ୍ବନ୍ଧରେ ଶୁଣିବାକୁ ଚାହୁଁଛି । ଦ୍ୱାପରରେ ଲୋକମାନେ ଭଗବାନଙ୍କର କେଉଁ ରୂପ ଓ କେଉଁ ରୀତିରେ ପୂଜା କରୁଥିଲେ ?

ଏହା ଶୁଣି ମହାମୁନି କରଭାଜନ କହିଲେ, ''ରାଜନ୍ ! ଦ୍ୱାପରରେ ସତ୍ତ୍ୱଗୁଣ ତ ଅତିମାତ୍ରାରେ ହ୍ରାସ (ନ୍ୟୂନ) ହୋଇଗଲା, ରଜୋଗୁଣ ସହିତ ତମୋଗୁଣ ବି ପ୍ରବେଶ କରିଗଲା । ତମୋଗୁଣର ବର୍ଣ୍ଣ ହେଉଛି କୃଷ୍ଣ । ଏଣୁ ଭଗବାନ କାଳିଆ ହୋଇଗଲେ । ତ୍ରେତୟା ଯୁଗରେ ହୋମର ପ୍ରାଧାନ୍ୟ ଥିଲା । କିନ୍ତୁ ଦ୍ୱାପରରେ ପୂଜାର ପ୍ରାଧାନ୍ୟ ଅଧିକ ହୋଇଗଲା । ହୋମ କରିବା ପୂର୍ବରୁ ଭଗବାନଙ୍କର ପୂଜା ଖୁବ୍ ଆଡ଼ମ୍ବର ସହିତ ବିସ୍ତାର ଭାବରେ କରାଗଲା । ଦ୍ୱାପର ଯୁଗର ପୁରୁଷମାନେ ଅତ୍ୟଧିକ ଲୋଭୀ ହୋଇଗଲେ । ରାଜ୍ୟ, ପାଟ, ଧନ, ବୈଭବ ପାଇଁ ଭାଇ ଭାଇକୁ, ପୁତ୍ର ପିତାକୁ ବଧ କରିବାରେ ଲାଗିଲେ । **ଲୋଭରୁ ରକ୍ଷା ପାଇବାର ଏକମାତ୍ର ଉପାୟ ହେଉଛି ଧନକୁ ଶୁଭକର୍ମରେ ବ୍ୟୟ କରିବା, ଦାନ କରିବା ।** ଏଣୁ ଦ୍ୱାପର ହୋଇଗଲା ପୂଜା ପ୍ରଧାନ ଯୁଗ । ଶ୍ୟାମବର୍ଣ୍ଣ ପୀତାମ୍ବରଧାରୀ ଭଗବାନଙ୍କର ପୂଜା କରାଗଲା । ସେହିଯୁଗରେ

ଭଗବାନ୍ ପାଞ୍ଚଜନ୍ୟ ଶଙ୍ଖ, ସୁଦର୍ଶନ ଚକ୍ର, କୌମୋଦକୀ ଗଦା, ଖଡ୍ଗ, ଧନୁର୍ବାଣ, ହଳ ତଥା ମୂଷଳ ଆଦି ଆୟୁଧକୁ ଧାରଣ କରିବାରେ ଲାଗିଲେ । କୌସ୍ତୁଭମଣି, ବୈଜୟନ୍ତୀମାଳା, ଆଦି ବାହ୍ୟ ଚିହ୍ନରେ ତଥା ଶ୍ରୀବତ୍ସାଦି ଶାରୀରିକ ଚିହ୍ନରେ ସୁଶୋଭିତ ହେବାରେ ଲାଗିଲେ । ତ୍ରେତୟାରେ ଯେପରି ହାତରେ ସ୍ରୁକ୍, ସ୍ରୁବା ଆଦି ଯଜ୍ଞପାତ୍ର ରଖୁଥିଲେ, କିନ୍ତୁ ଯୁଦ୍ଧପ୍ରଧାନ ଯୁଗ ହୋଇଥିବାରୁ ଦ୍ୱାପରରେ ବିଶେଷତଃ ଅସ୍ତ୍ର ଧାରଣ କରୁଥିଲେ । ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଆଉ ଅନିରୁଦ୍‌ଧ ଏହିଭଳି ଚତୁର୍ବ୍ୟୁହ ରୂପରେ ଷଡ଼ୈଶ୍ୱର୍ଯ୍ୟ-ସମ୍ପନ୍ନ ଭଗବାନଙ୍କର ଯେଉଁ ଛତ୍ର-ଚାମରାଦି ରାଜଚିହ୍ନ ଯୁକ୍ତ ଥିଲେ ସେଗୁଡ଼ିକର ବୈଦିକ ଆଉ ତାନ୍ତ୍ରିକ ବିଧିରେ ଅର୍ଚ୍ଚନ କରିବାରେ ଲୋକମାନେ ଲାଗିଥିଲେ । ପୂଜା ପରେ ମହାପୁରୁଷ ନର-ନାରାୟଣ, ମହାପୁରୁଷ ବିଶ୍ୱେଶ୍ୱର, ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ତଥା ସର୍ବଭୂତାତ୍ମା ଏହି ନାମ ସମସ୍ତଙ୍କୁ କୀର୍ତ୍ତନ କରିବାରେ ଲାଗିଥିଲେ । ଚତୁର୍ଥୀ ବିଭକ୍ତି ଯୋଗକରି ବାରମ୍ବାର ନମସ୍କାର କରୁଥିଲେ । ଦ୍ୱାପର ଯୁଗର ମୁଖ୍ୟଧର୍ମ ପୂଜା କରିବା ସହିତ ନାମକୀର୍ତ୍ତନ ଥିଲା ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାମୁନି କରଭାଜନ କଳିଯୁଗରେ ଭଗବାନଙ୍କ ରୂପ ଓ ତାଙ୍କୁ ପାଇବାର ମୁଖ୍ୟ ସାଧନ ଯେପରି ବର୍ଣ୍ଣନା ରାଜା ନିମିଙ୍କ ପାଖରେ କରିଥିଲେ ତାହା ମୁଁ ଏବେ କହୁଛି । ଆପଣମାନେ ସମାହିତ ଚିତ୍ତରେ ଶୁଣନ୍ତୁ ।''

## ଛପ୍‌ପୟ

*ତ୍ରେତମହଁ ମଖ ରୂପ ତ୍ରୟାମୟ ସ୍ରୁକ୍ ସ୍ରୁବ ଧାରୀ ।*
*ରକ୍ତବରନ ଭୁଜ ଚାରି ରୂପ ଧରି ରହେଂ ମୁରାରୀ ।।*
*ପୃଶ୍ନି ଗର୍ଭ ଉରୁଗାୟ, ବୃଷାକପି, ବିଷ୍ଣୁ, ଉରୁକ୍ରମ ।*
*ଯଜ୍ଞ ଆଦି ଲୈ ନାମ କରୈ କୀର୍ତ୍ତନ ନର ଅନୁପମ ।।*
*ଦ୍ୱାପରମହଁ କାରେ ବନେ, ପୀତାମ୍ବର ଆୟୁଧ ସହିତ ।*
*ତନ୍ତ୍ର ବେଦବିଧିତୈ ତିନହିଁ, ପୂଜୈଂ ନର ଚିତ ସମାହିତ ।।*



# କଳିକାଳର ଯୁଗ-ଧର୍ମ

**କୃଷ୍ଣବର୍ଣ୍ଣ ତ୍ୱିଷାକୃଷ୍ଣଂ ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦମ୍ ।**
**ଯଜ୍ଞୈଃ ସଙ୍କୀର୍ତନପ୍ରାୟୈର୍ଯଜନ୍ତି ହି ସୁମେଧସଃ ॥☆**

(ଶ୍ରୀ ଭା. ୧୧ସ୍କନ୍ଧ ୫ଅ. ୩୨ ଶ୍ଲୋକ)

**ଛପ୍ପୟ**

*ନର ନାରାୟଣ ବାସୁଦେବ ସଂକର୍ଷନ ଆଦିକ ।*
*ନାମ କୀରତନ କରୈଂ ପୂଜି ପ୍ରଭୁ ଶ୍ରେଷ୍ଠ ଉପାସକ ॥*
*କୃଷ୍ଣକାନ୍ତିମୟ କୃଷ୍ଣ ବରନ କଳିକାଲ ସପାର୍ଷଦ ।*
*କରି ସଂକୀର୍ତ୍ତନ ଯଜ୍ଞ ସହଜମହଁ ପାହିଁ ପରମପଦ ॥*
*ରାମ କୃଷ୍ଣ ଅବତାର ଗୁନ, ନାମନି କୋ କୀର୍ତ୍ତନ କରୈଂ ।*
*କେବଲ କୀର୍ତ୍ତନ ହୀ କରତ, ନର ଭବସାଗର ତେରିରୈଂ ॥*

ଯୁଗଧର୍ମକୁ ବୁଝି(ଜାଣି) ଯେଉଁମାନେ ଉପାସନା କରନ୍ତି ସେମାନଙ୍କୁ ଅତିଶୀଘ୍ର ସିଦ୍ଧି ପ୍ରାପ୍ତ ହୋଇଥାଏ । ଯେଉଁମାନେ ଯୁଗଧର୍ମର ବିପରୀତ ଆଚରଣ କରୁଥା'ନ୍ତି ସେମାନଙ୍କୁ ନାନା କ୍ଲେଶ ଉଠାଇବାକୁ ପଡ଼େ । ଭଗବାନଙ୍କର ନାମ ତ ବଙ୍କା ତେରଛା ଯେମିତି ଇଚ୍ଛା ସେହିଭଳି ନିଆଯାଇ ପାରେ, ତେବେ ବି ହିତକାରୀ ହୋଇଥାଏ, କିନ୍ତୁ ଯୁଗାନୁରୂପ ନେବା ଦ୍ୱାରା ସିଦ୍ଧି ପ୍ରାପ୍ତିରେ ସରଳ ସହଜ ହୋଇଥାଏ । ଯେଉଁମାନେ କେବଳ କୀର୍ତ୍ତନକୁ ଗୌଣ ବୋଲି ମନେକରି ଧ୍ୟାନ, ମଖ ତଥା ପୂଜା ଉପରେ ବିଶେଷ ଗୁରୁତ୍ୱ ଦିଅନ୍ତି ସେମାନଙ୍କର ସିଦ୍ଧି ପାଇବାରେ ସନ୍ଦେହ ଥାଏ । ସିଦ୍ଧି ପାଇବା ଅସମ୍ଭବ ମନେହୁଏ । ଯଦିଓ ଏପରି ସାଧନ ଅଛି ବା ଥିଲା, ଅସଂଖ୍ୟ ଲୋକ ଏପରି ସାଧନ ମାଧ୍ୟମରେ ଉଦ୍ଧାର ହୋଇଛନ୍ତି, କିନ୍ତୁ ସେତେବେଳର ସମୟ ଥିଲା ଅଲଗା- ସେହି ଯୁଗରେଁ ଏପରି ସାଧନ ପ୍ରତି ସ୍ୱାଭାବିକ ଅନୁରାଗ ହେଉଥିଲା । ଏପରି ପରମ ଶୁଭକର୍ମ ନା ଅନୁପଯୋଗୀ, ନା ବ୍ୟର୍ଥ ଥିଲା, କିନ୍ତୁ ପାତ୍ରତାର ପାର୍ଥକ୍ୟ ଥିଲା । ଯେଉଁମାନେ ଯୋଗ୍ୟ ପାତ୍ର ସେମାନେ

---

☆ କୃଷ୍ଣ ମୂରତି ଭଗବାନ । କେବଳ ନାମ ସଙ୍କୀର୍ତ୍ତନ ॥
କୃଷ୍ଣର ରୂପ ଗୁଣ ଯେତେ । ଧ୍ୟାନେ ନିରୋପି ଶୁଦ୍ଧଚିତ୍ତେ ॥
ଅଙ୍ଗ ଉପାଙ୍ଗ ଅସ୍ତ୍ର ଯେତେ । ବିଷ୍ଣୁର ପାର୍ଷଦ ସହିତେ ॥
ସକଳ ପୂଜି ସାବଧାନେ । ସ୍ତୁତି କରନ୍ତି ଏ ବଚନେ ॥
(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୬ଅ.)

**କରିପାରନ୍ତି । ସର୍ବ ସାଧାରଣଙ୍କ ପାଇଁ ତ ସଂକୀର୍ତ୍ତନ ପ୍ରଧାନ ଯଜ୍ଞର ଆଚରଣ ହେଉଛି ସର୍ବ ଶ୍ରେୟସ୍କର ।**

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ମହାରାଜ ନିମି ଯେତେବେଳେ କଳିଯୁଗ ସମ୍ବନ୍ଧରେ ମହାଯୋଗେଶ୍ୱର କରଭାଜନଙ୍କୁ ପଚାରିଲେ, ସେ ତାଙ୍କୁ ଉତ୍ତର ଦେବାକୁ ଯାଇ କହିଲେ, 'ରାଜନ୍ ! କଳିକାଳ ହେଉଛି ଅତି ଦାରୁଣ ସମୟ । ଏହି ଯୁଗରେ ତମୋଗୁଣ ପ୍ରାଧାନ୍ୟ ବିସ୍ତାର କରିବ । ତମୋଗୁଣର ବର୍ଣ୍ଣ ହେଉଛି କଳା । ଭଗବାନ ବି ତେଣୁ କୃଷ୍ଣବର୍ଣ୍ଣ ହୋଇଯିବେ । **ଯେପରି ସବୁବର୍ଣ୍ଣର ସମାହାର କୃଷ୍ଣବର୍ଣ୍ଣରେ ହୋଇଯାଏ, ସେହିଭଳି ସମସ୍ତ ଅବତାରର ସମାବେଶ ଏହି କୃଷ୍ଣବର୍ଣ୍ଣର ରାମାବତାର ଓ କୃଷ୍ଣାବତାରରେ ହୋଇଯାଏ ।** ଏହି କୃଷ୍ଣକାନ୍ତିମୟ କୃଷ୍ଣବର୍ଣ୍ଣ ଅବତାରର ଅଙ୍ଗ ଉପାଙ୍ଗ ଆୟୁଧ ତଥା ପାର୍ଷଦ ସହିତ ସଂକୀର୍ତ୍ତନପ୍ରାୟ ଯଜ୍ଞ ଦ୍ୱାରା ପୂଜା କରି, ମାନବ ରୂପ ଧାରଣ କରି ତ୍ରେତା ଓ ଦ୍ୱାପରାଦି ଯୁଗରେ ଭଗବାନ ଯେଉଁ ସବୁ ମନୋହାରିଣୀ ଲୀଳା କରିଛନ୍ତି ସେହି ଲୀଳାପ୍ରସଙ୍ଗ ଶ୍ରବଣ କରି, ତଥା ସେହି ଲୀଳା ଅନୁରୂପ ନାମ ନେଇ ନେଇ ଭଗବାନଙ୍କୁ ଭକ୍ତି କରିବା ଉଚିତ । ଭଗବାନଙ୍କର ଅବତାର ଚରିତଗୁଡ଼ିକର ଶ୍ରୁତିମଧୁର ନାମରାଶିକୁ ଶ୍ରବଣ, କୀର୍ତ୍ତନ କରିବା ଉଚିତ । ତାଙ୍କର ରୂପକୁ ସ୍ମରଣ କରିବା ଉଚିତ । ଭଗବାନଙ୍କର ଅର୍ଚ୍ଚନା ବିଗ୍ରହ ସ୍ଥାପନ କରି ତାଙ୍କର ପଦ ସେବନ, ଅର୍ଚ୍ଚନା ଆଉ ବନ୍ଦନା କରିବା ଉଚିତ । ତହିଁରେ ଦାସ୍ୟ ଆଉ ସଖ୍ୟ ଭାବ ସ୍ଥାପିତ କରି ତାଙ୍କ ପାଖରେ ସଂପୂର୍ଣ୍ଣ ଆତ୍ମନିବେଦନ କରିଦେବା ଆବଶ୍ୟକ । ସାରକଥା ହେଉଛି, ଯେପରି ବି ହେଉ, ଅବତାରଙ୍କ ନାମ କୀର୍ତ୍ତନରେ ମନ ଲଗାଇ ଦେବା ଉଚିତ । ତାଙ୍କର ଲଳିତ ଲୀଳାକୁ ସ୍ମରଣ କରି କରି ଚରଣ ତଳେ ପ୍ରଣାମ ନିବେଦନ କରୁଥିବା ଉଚିତ ।

ମହାରାଜ ନିମି ପଚାରିଲେ, ''ଭଗବନ୍ ! **ଚରଣରେ ବନ୍ଦନା କିପରି କରାଯାଏ ?''**

ମହାଯୋଗେଶ୍ୱର କରଭାଜନ କହିଲେ, ''ରାଜନ୍ ! ଭଗବାନଙ୍କର ଅନେକ ଅବତାର ରୂପ ଅଛି । କିନ୍ତୁ କଳିଯୁଗରେ ରାମ ଆଉ କୃଷ୍ଣ ଏହି ଦୁଇ ଅବତାରର ହିଁ ବିଶେଷ ପ୍ରଭାବ ଅଛି । ଯାହାଙ୍କର ଇଷ୍ଟଦେବ ସ୍ୱୟଂ ସାକ୍ଷାତ୍ ଶ୍ରୀକୃଷ୍ଣ ସେ ତାଙ୍କର ଭକ୍ତବତ୍ସଳତାକୁ ସ୍ମରଣ କରି ପ୍ରାର୍ଥନା କରିବା ଉଚିତ, 'ହେ ଶରଣାଗତ ବତ୍ସଳ ! ହେ ମହାପୁରୁଷ ! ଆପଣଙ୍କ ଚରଣାରବିନ୍ଦ ସଦା ଧ୍ୟାନଯୋଗ୍ୟ । ମାୟା କୃତ ଯେଉଁ ପରାଭବ ଅଛି, ଏହି ଯେଉଁ ସଂସାରର ମୋହ, ଏହି ମୋହକୁ ଆପଣଙ୍କ ଚରଣାରବିନ୍ଦ ହରଣ କରିଥାଏ । ଏହି ଚରଣ ନିକଟକୁ ଯିଏ ଯେଉଁ ଇଚ୍ଛା କରି ଆସିଥାଏ ତା'ର ସେହି ଇଚ୍ଛା

ଅବଶ୍ୟ ପୂରଣ ହୁଏ । କାରଣ ସେ ହେଉଛନ୍ତି ବାଞ୍ଛିତ ଫଳଦାତା । ପରମ ତୀର୍ଥ ରୂପ ହୋଇଥିବାରୁ ସର୍ବସାଧାରଣଙ୍କ କଥା ଆଉ କ'ଣ କହିବା, ଶିବ ଆଉ ବ୍ରହ୍ମାଦି ଦେବଙ୍କ ଦ୍ୱାରା ବନ୍ଦିତ ଓ ପୂଜିତ ହୋଇଥାଏ । ସଂସାର ରୂପୀ ଗହନ ବନରେ ବାଟବଣା ହୋଇ ବୁଲୁଥିବା ଲୋକଙ୍କର ତାହା ଏକମାତ୍ର ଶରଣ । ତାହା ସେବକଙ୍କର ଦୁଃଖକୁ ଦୂର କରିଥାଏ । ଏହି ଅଗାଧ ଅପାର ସଂସାର ସାଗରର ଆର ପାରିରେ ପହଞ୍ଚାଇବା ନିମିତ୍ତ ତାହା ହେଉଛି ସୁଦୃଢ଼ ସୁନ୍ଦର ସୁଖକର ପୋତ । ଆପଣଙ୍କର ଏହିପରି ପରମ ପବିତ୍ର ପାଦପଦ୍ମକୁ ମୁଁ ବାରମ୍ବାର ପ୍ରଣାମ କରୁଛି ।

ଯେଉଁମାନଙ୍କର ଇଷ୍ଟଦେବ ହେଉଛନ୍ତି ଭଗବାନ ଶ୍ରୀରାମଚନ୍ଦ୍ର ସେମାନେ ନିମ୍ନ ପ୍ରକାର ପ୍ରାର୍ଥନା କରିବା ଉଚିତ—"ହେ ଧର୍ମାବତାର ! ହେ ମର୍ଯ୍ୟାଦାପାଳକ ! ହେ ମହାପୁରୁଷ ! ଆପଣ ଆପଣଙ୍କ ଭକ୍ତଙ୍କୁ ସୁଖ ଦେବା ନିମନ୍ତେ କେତେ ନା କେତେ କରୁଣାପୂର୍ଣ୍ଣ ଲୀଳା କରିନାହାନ୍ତି । ଆପଣଙ୍କ ଚରଣାରବିନ୍ଦ କେତେ ମୃଦୁଳ ତଥା କୋମଳ ସତେ ! ଅଯୋଧ୍ୟାରେ ଆପଣ ରହୁଥିଲେ । ଆପଣଙ୍କର ପଦଯୁଗଳକୁ ଭଗବତୀ ଜନକନନ୍ଦିନୀ ନିଜର କମଳ ଠାରୁ ହେଲେ କୋମଳ କରରେ ସଂକୋଚର ସହିତ ଚିପି ଦେଉଥିଲେ । ଏତିକିରେ ବି ଆପଣ ପୀଡ଼ା ଅନୁଭବ କରୁଥିଲେ । ପୁଣି ସେହି ପଦଯୁଗଳ ପିତା ମହାରାଜ ଦଶରଥଙ୍କ ଆଜ୍ଞାରେ ସୁରଗଣ ବାଞ୍ଛିତ ଦୁସ୍ତ୍ୟ ରାଜ ବୈଭବକୁ ତ୍ୟାଗକରି ଏ ବଣରୁ ସେ ବଣକୁ କଣ୍ଟକମୟ କର୍କଶ ଭୂମିରେ ବୁଲୁଥିଲେ । ସେତେବେଳେ ଆପଣଙ୍କ ପାଦରେ ପଦତ୍ରାଣ ବି ନଥିଲା । ସେତେବେଳ ଆପଣଙ୍କ ସୁକୋମଳ ପାଦରେ ଯେଉଁ କଣ୍ଟା, ଗୋଡ଼ି ତଥା ତୃଣ ପଶିଯାଉଥିଲା, ତାହା ସ୍ମରଣ କରି ଆପଣଙ୍କ ଭକ୍ତଗଣଙ୍କ ହୃଦୟ ଏ ପର୍ଯ୍ୟନ୍ତ ବି ବ୍ୟଥିତ କରି ପକାଉଛି । ଅରଣ୍ୟରେ ଆପଣ ଅନୁଜ ଲକ୍ଷ୍ମଣ ଆଉ ପ୍ରିୟା ସୀତାଙ୍କ ସହିତ ଧୀର ମନ୍ଥର ଗତିରେ ତ ବୁଲୁଥିଲେ; ମାତ୍ର ଯେତେବେଳେ ପଞ୍ଚବଟୀରେ ଆପଣଙ୍କ ପ୍ରିୟା ମାୟା ମୃଗ ହୋଇଥିବା ମାରୀଚକୁ ପାଇବା ପାଇଁ ଇଚ୍ଛା ପ୍ରକାଶ କଲେ, ଆଉ ଆପଣ ତାହା ଆଣିଦେବା ପାଇଁ ତାଙ୍କୁ କଥା ଦେଲେ, ସେତେବେଳେ ଆପଣ ଖାଲି ପାଦରେ ସେହି ମାୟା ମୃଗ ପଛେ ପଛେ ଗୋଡ଼ାଇଲେ । ଏପରି ସେହି ପରମ ମୃଦୁଳ ପାଦପଦ୍ମକୁ ଆମେ ବାରମ୍ବାର ପ୍ରଣାମ କରୁଛୁ ।

"ଏହିଭଳି ହେ ରାଜନ୍ ! କଳିଯୁଗରେ ଏହିପରି ଶ୍ରୀରାମ-କୃଷ୍ଣଙ୍କର ଚରଣ ବନ୍ଦନା କରିବା ଉଚିତ । ବାସ୍ତବରେ ରାମ ଆଉ କୃଷ୍ଣ ପୃଥକ୍ ପୃଥକ୍ ନୁହନ୍ତି, ଏକ । ଦିନ ଓ ରାତି ମିଶି ଯେପରି ଗୋଟିଏ ଦିନ ହୁଏ, ସେହିଭଳି ରାମ ଆଉ କୃଷ୍ଣ ମିଶି ପୂର୍ଣ୍ଣାବତାର ହୋଇଥା'ନ୍ତି । ଶ୍ରୀରାମ ହିଁ କୃଷ୍ଣଙ୍କ ରୂପ ଧାରଣ କରିଦେଇଥିଲେ । ଏହି ଦୁଇଙ୍କ ମଧ୍ୟରେ

ଯେ ଭେଦଭାବ ଦେଖେ ସେ କଦାପି ପ୍ରକୃତ ଭକ୍ତ ହୋଇପାରେ ନାହିଁ । ଏଣୁ ଏହି ଦୁଇଙ୍କ ମଧ୍ୟରେ ଯେ ଭେଦଭାବ ଦେଖେ ସେ କଦାପି ପ୍ରକୃତ ଭକ୍ତ ହୋଇପାରେ ନାହିଁ । ଏଣୁ ଏହି ଦୁଇଙ୍କ ନାମ ସମ୍ମିଳିତ ଭାବରେ ହେଉ, ଅଥବା ପୃଥକ୍ ପୃଥକ୍ ହେଉ, କୀର୍ତ୍ତନ କରୁଥିବା ଉଚିତ- ଯେପରି,

*ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।*
*ହରେ ରାମ ହରେ ରାମ ରାମ ରାମ ହରେ ହରେ ॥*
*ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ ।*
*ହେ ନାଥ ନାରାୟଣ ବାସୁଦେବ ॥*
*ରଘୁପତି ରାଘବ ରାଜା ରାମ୍ । ପତିତ ପାବନ ସୀତା ରାମ୍ ॥*
*ଶ୍ରୀରାମ ଜୟ ରାମ ଜୟ ଜୟ ରାମ ॥*

ଏହିଭଳି ନାମ ସଂକୀର୍ତ୍ତନ ସହିତ ଭଗବାନ୍‌ଙ୍କର ପୂଜା କରିବା ଉଚିତ । କଳିଯୁଗର ଏହାହିଁ ହେଉଛି ଯୁଗଧର୍ମ । ଭିନ୍ନ ଭିନ୍ନ ଯୁଗରେ ଭକ୍ତ ବୃନ୍ଦ ନିଜ ନିଜର ଯୁଗ ଅନୁରୂପ ବର୍ଣ୍ଣ, ନାମ ଆଉ ରୂପାଦିରେ ସେହି ପରାତ୍ପର ପ୍ରଭୁଙ୍କୁ ଉପାସନା କରନ୍ତି । ସେହି ସର୍ବପ୍ରଥମ ସଚ୍ଚିଦାନନ୍ଦ ପ୍ରଭୁ ସମସ୍ତ ପୁରୁଷାର୍ଥର ଏକମାତ୍ର ଅଧୀଶ୍ୱର । ତାଙ୍କର ଉପାସନା ହେଉଛି ଦେହଧାରୀଙ୍କର ଏକମାତ୍ର କର୍ତ୍ତବ୍ୟ । ଏହି ଚାରିଯୁଗ ମଧ୍ୟରୁ କଳିଯୁଗ ହେଉଛି ସର୍ବଶ୍ରେଷ୍ଠ ଯୁଗ । ଏଇଥିଯୋଗୁ ଗୁଣଜ୍ଞ ସାରଗ୍ରାହୀ ସଜ୍ଜନ ପୁରୁଷ ସବୁଠାରୁ ଅଧିକ ଏହି ଯୁଗର ପ୍ରଶଂସା କରିଥା'ନ୍ତି । ଏହି ଯୁଗକୁ ହିଁ ସବୁଠାରୁ ଅଧିକ ମହତ୍ତ୍ୱ ଦେଇଥା'ନ୍ତି ।''

ଏପରି କଥା ଶୁଣି ମହାରାଜ ନିମି ଚମକି ଉଠିଲେ, ଆଉ କହିଲେ, ''ଭଗବନ୍ ! ଆପଣ ଏପରି ବିପରୀତ କଥା କିପରି କହୁଛନ୍ତି ? କଳିଯୁଗ ତ ପାପପ୍ରଧାନ ଯୁଗ । ତମୋଗୁଣ-ପ୍ରଧାନ ହୋଇଥିବା ହେତୁ, ଲୋକମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ବିଷୟ ପ୍ରତି ହିଁ ହୋଇଥାଏ । ଆପଣ ଏହି ଅଧମ ଯୁଗର ଏତେ ପ୍ରଶଂସା କରୁଛନ୍ତି କିପରି ?''

ମହାରାଜ ନିମିଙ୍କର ଉକ୍ତି ଶୁଣି ମହାମୁନି କରଭାଜନ ଗମ୍ଭୀର ହୋଇଗଲେ ଏବଂ କହିଲେ, ''ରାଜନ୍ ! ଆପଣଙ୍କ କଥନ ଯଥାର୍ଥ । ବାସ୍ତବରେ କଳିଯୁଗ ହେଉଛି ସମସ୍ତ ଦୋଷର ଖଣି । ଆପଣଙ୍କର ଏହି ଉକ୍ତି ମଧ୍ୟ ସତ୍ୟ, ଯେ ତମୋଗୁଣ-ପ୍ରଧାନ ହୋଇଥିବା ହେତୁ ଲୋକମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ବିଷୟପୂର୍ଣ୍ଣ ହୋଇଥାଏ । କିନ୍ତୁ ଏ ସବୁ ହୋଇଥିଲେ ସୁଦ୍ଧା, ହେ ରାଜନ୍ ! ଏହି କଳିଯୁଗର ଏପରି ମହାନ୍ ଗୁଣ ଅଛି ଯେଉଁଥିରେ ଅନ୍ୟ ସବୁ ଘୋଡ଼େଇ ହୋଇଯାଏ । ଅନ୍ୟ ଲୋକଙ୍କ କଥା ମୁଁ କହୁନାହିଁ, ଯେଉଁମାନେ ସାଧକ ପ୍ରକୃତିର ଲୋକ ସେମାନଙ୍କ ପାଇଁ ଏହି ଯୁଗ ଅତି ସରଳ ହୋଇଥାଏ । ଦେଖନ୍ତୁ, ସତ୍ୟଯୁଗରେ ସହସ୍ର ବର୍ଷ ଧ୍ୟାନ କରିବାକୁ ପଡୁଥିଲା । ତେବେ ବି କେହି କେହି ଅତି

କଷ୍ଟରେ ସିଦ୍ଧି ପ୍ରାପ୍ତ କରୁଥିଲେ । ତ୍ରେତୟା ଯୁଗରେ କେତେନା କେତେ ଶ୍ରମ କରି କେତେନା କେତେ ଦ୍ରବ୍ୟ ବ୍ୟୟ କରି ଯଜ୍ଞ ଯାଗର ସମ୍ଭାର ସଂଗ୍ରହ କରିବାକୁ ହେଉଥିଲା । ମନ୍ତ୍ରରେ, ବିଧିରେ କିଛି ତ୍ରୁଟି ଯଦି ରହିଯାଉଥିଲା ତେବେ ସବୁ ଶ୍ରମ ଓ ପୂଜା ପାଣିରେ ପଡ଼ିଯାଉଥିଲା । ଦ୍ୱାପରରେ କେତେନା କେତେ ତାନ୍ତ୍ରିକ ବିଧିର ଢାଲ ବିଛା ହେଉଥିଲା । କେତେନା କେତେ ଅତି କଷ୍ଟକର ଶ୍ରମ କରିବାକୁ ପଡୁଥିଲା । ଏହାପରେ ଅତି କଷ୍ଟରେ ସିଦ୍ଧି ମିଳୁଥିଲା । କିନ୍ତୁ ଏହି କଳିଯୁଗରେ କେବଳ ଭଗବାନଙ୍କର ନାମ ସଂକୀର୍ତ୍ତନରେ ହିଁ ସମ୍ପୂର୍ଣ୍ଣ ସ୍ୱାର୍ଥ ସିଦ୍ଧି ହୋଇଯାଏ । ଏବେ ଆପଣ କୁହନ୍ତୁ, ଅନ୍ୟ ଯୁଗ ଅପେକ୍ଷା ଏହି ଯୁଗ ପ୍ରଶଂସନୀୟ ହେଲା ନା ନାହିଁ । ସତ୍ୟଯୁଗ, ତ୍ରେତାରେ ତ ପ୍ରତ୍ୟେକ ଲୋକ ଧର୍ମାତ୍ମା ଥିଲେ । ସମସ୍ତେ ସୁନ୍ଦର ଡଉଲ ଡାଉଲ ଥିଲେ । କିନ୍ତୁ ଭଗବାନଙ୍କୁ ପାଇବା ପାଇଁ ବହୁତ ଶ୍ରମ କରିବାକୁ ପଡୁଥିଲା । କଳିଯୁଗରେ ଏ ସବୁ ବିପରୀତ ହୋଇଥିଲେ ବି ସାଧନରେ ଥିଲା ଅତି ସରଳତା । ରାମ ରାମ କହି ଭବସାଗର ପାରି ହୋଇଯାଅ ।''

ରାଜା କହିଲେ, ''ଭଗବନ୍ ! ଅନ୍ୟ ଯୁଗରେ ତ ଅନେକ ପ୍ରକାର୍‌ର ସୁବିଧା ଅଛି, ଦେବତାଙ୍କର ପ୍ରତ୍ୟକ୍ଷ ଦର୍ଶନ ମିଳିବା ସମ୍ଭବ ହୋଇଥାଏ । ଇନ୍ଦ୍ରାଦି ଦେବତାମାନେ ସଶରୀରରେ ଯଜ୍ଞାଦି କର୍ମରେ ଭାଗନେବା ପାଇଁ ଆସନ୍ତି । ଅନ୍ୟ ଯୁଗରେ ପେଟ ନିମନ୍ତେ ଏତେ ଶ୍ରମ କରିବାକୁ ପଡୁନଥିଲା । ବର୍ଣ୍ଣାଶ୍ରମ-ଧର୍ମର ବ୍ୟବସ୍ଥା ସୁଚାରୁରୂପରେ ଚାଲୁଥିଲା । ଏହି କଳିଯୁଗରେ ଅଧର୍ମ ଆଉ ପାପାଚାର ଛଡ଼ା ମୋତେ ଆଉ ଭଲ କଥା କିଛି ଦେଖା ଯାଉ ନାହିଁ ।''

''ଏହି କଥାଗୁଡ଼ିକ ଉପରେ ଜୋର ଦେଇ ମହାମୁନି କରଭାଜନ କହିଲେ, ''ରାଜନ୍ ! ମୁଁ ଅନ୍ୟ କଥା ଉପରେ କୌଣସି ମହତ୍ୱ ଦେଉନାହିଁ । ଜନ୍ମ-ମରଣର ଚକ୍ରରେ ପଡ଼ି ଘୂରୁଥିବା ପ୍ରାଣୀମାନଙ୍କର ଭଗବନ୍ନାମ ସଂକୀର୍ତ୍ତନ ଠାରୁ ବଳି ଆଉ କୌଣସି ଅଧିକ ଲାଭ କଥା ବୁଝେନାହିଁ । ସ୍ୱାଦିଷ୍ଟ ଭୋଜନ ମିଳିଯାଉଥିଲେ ଲାଭ କ'ଣ ? ସୁନ୍ଦର ସୁନ୍ଦର ବସ୍ତ୍ର, ଉତ୍ତମ ଉତ୍ତମ ବାହନ, ଦୀର୍ଘ ଆୟୁ, ନିରୋଗ ଶରୀର- ଏ ସମସ୍ତ କଥା ମିଳିଯାଉଥିବ ହେଲେ ଜନ୍ମ-ମୃତ୍ୟୁର ଚକ୍ର ଛାଡୁ ନଥିବ, ତେବେ ଏ ସମସ୍ତ କଥାରେ କ'ଣ ହେବ ? ଯେଉଁ ନାମ ସଂକୀର୍ତ୍ତନରେ ସଂସାର ବନ୍ଧନ ଛିଣ୍ଡିଯାଏ ତା' ଠାରୁ ଅଧିକ ଲାଭଜନକ ଆଉ କିଛି ହୋଇପାରେ କି ?''

''ଜଣେ ଧନୀ ଲୋକ ଅଛି । ସେ ତା'ର ସୁନ୍ଦରୀ ଯୁବତୀ ପତ୍ନୀକୁ ସମସ୍ତ ପ୍ରକାର ସୁଖ ଦେଉଛି । ସୁନ୍ଦର ଠାରୁ ଆହୁରି ସୁନ୍ଦର ଶଯ୍ୟା ଦେଉଛି । ଉତ୍ତମଠାରୁ ଅଧିକ ଉତ୍ତମ ଆଭୂଷଣ ଦେଉଛି । ବସ୍ତ୍ର, ଭୋଜନ, ସେବକ, ବାହନ ଏ ସମସ୍ତର ସର୍ବୋତ୍କୃଷ୍ଟ ବ୍ୟବସ୍ଥା କରିଛି । କିନ୍ତୁ ତାକୁ ନିଜର ଶଯ୍ୟା ସ୍ପର୍ଶ କରିବାକୁ ଦେଉନାହିଁ । ତେବେ ସେହି ଯୁବତୀର

ଏତେ ସବୁ ସୁଖର ମୂଲ୍ୟ କ'ଣ ? ଏହିଭଳି ଯେଉଁ ସଂସାରୀ ସୁଖରେ ଭଗବାନ୍‌ଙ୍କର ପ୍ରାପ୍ତି ହୋଇପାରେ ନାହିଁ, ସେ ସମସ୍ତ ବ୍ୟର୍ଥ ହୋଇଥାଏ । ନାମ ସଂକୀର୍ତ୍ତନ ଏପରି ଏକ ସରଳ ସୁଗମ ସର୍ବୋପଯୋଗୀ ସୁଖଦ ସାଧନ ଯେ ଏହାର ଅନବରତ ଅଭ୍ୟାସ କରୁଥିଲେ ପରମ ଶାନ୍ତି ମିଳେ । ମଝିରେ ମଝିରେ କାମ କ୍ରୋଧ ଅନେକ ବିଘ୍ନ କରନ୍ତି । କିନ୍ତୁ ସେତେବେଳେ ବି ନାମର ଆଶ୍ରା ନ ଛାଡ଼ି, ନାମ ସଂକୀର୍ତ୍ତନ କରିବାରେ ଲାଗିଥିଲେ, ଏକାନ୍ତରେ କାନ୍ଦି କାନ୍ଦି ପ୍ରଭୁଙ୍କୁ ପ୍ରାର୍ଥନା କରୁଥିଲେ- ଯେ 'ହେ ପ୍ରଭୁ ! ମୋତେ ଏହି ବିଷୟରୂପୀ ବିଷରୁ ବଞ୍ଚାନ୍ତୁ । ମୋତେ ଆପଣଙ୍କ ଚରଣ ତଳେ ସ୍ଥାନ ଦିଅନ୍ତୁ । ଜିହ୍ୱାରେ ଆପଣଙ୍କ ସୁମଧୁର ନାମ ଯେପରି ମୁଁ ନେଉଥାଏ ।' ଏହିଭଳି ଏକମାତ୍ର ଭଗବନ୍ନାମକୁ ଆଶ୍ରୟ କରିବା ଦ୍ୱାରା ସକଳ ବିଘ୍ନ ନାଶ ହୋଇଯାଏ । ପ୍ରାଣୀମାନେ ପ୍ରଭୁ-ପାଦ-ପଦ୍ମ ପ୍ରାପ୍ତ ହୋଇଯାଆନ୍ତି । ମୁଁ ତ କଳିଯୁଗର ଏହି ବିଶେଷତା ହେତୁ ମୁଗ୍ଧ ଯେ ଏହି ଯୁଗରେ କେବଳ ଭଗବନ୍ନାମ କୀର୍ତ୍ତନରେ ହିଁ ସବୁ କିଛି ପ୍ରାପ୍ତ ହୋଇପାରେ ।''

ରାଜା କହିଲେ, ''ହଁ ଭଗବନ୍ ! ସରଳ ସାଧନ ଦୃଷ୍ଟିରେ ତ କଳିଯୁଗ ହେଉଛି ଶ୍ରେଷ୍ଠ ।''

ମହାମୁନି କରଭାଜନ କହିଲେ, ''ହଁ ରାଜନ୍ ! ସାଧନ ଦୃଷ୍ଟିରୁ ହିଁ ମୁଁ କହୁଛି । ସେମିତି ଦେଖିଲେ ତ ଏହି କଳିଯୁଗ ଅତି ଦୁଷ୍ଟ ଯୁଗ । ଇଏ ତ ପାପର ଭାଇ । କିନ୍ତୁ ନାମ ସଂକୀର୍ତ୍ତନର ସୁଲଭତା ହିଁ ଏହାର ମହତ୍ତ୍ୱକୁ ବଢ଼ାଇ ଦେଇଛି । ଏଣୁ ସତ୍ୟ, ତ୍ରେତାଦି ଯୁଗରେ ରହୁଥିବା ପୁରୁଷମାନେ ବି ଏହି କଳିଯୁଗରେ ଜନ୍ମ ଗ୍ରହଣ କରିବାକୁ ଲାଳାୟିତ ରହିଥା'ନ୍ତି । କାରଣ ଭଗବାନଙ୍କର ଭକ୍ତିର ପ୍ରଚାର କଳିଯୁଗରେ ହିଁ ହୋଇଥାଏ । ଭକ୍ତଗଣ କଳିଯୁଗରେ ହିଁ ବିଶେଷ ଜନ୍ମ ତଥା ଉତ୍ପନ୍ନ ହୋଇଥା'ନ୍ତି । ଅନ୍ୟ ଯୁଗରେ ତ କେତେବେଳେ ସାଂଖ୍ୟଯୋଗର, କେତେବେଳେ କର୍ମକାଣ୍ଡର ତ ଆଉ କେତେବେଳେ ଉପାସନାର ପ୍ରାଧାନ୍ୟ ହୋଇଥାଏ । କିନ୍ତୁ କଳିଯୁଗରେ କେବଳ ଭକ୍ତିର ହିଁ ଜୟ ହୋଇଥାଏ ।''

ରାଜା ପଚାରିଲେ, ''ଭଗବନ୍ ! କଳିଯୁଗରେ କେଉଁ କେଉଁଠାରେ ଭକ୍ତ ଉତ୍ପନ୍ନ ହେବେ ?''

ମହାମୁନି କରଭାଜନ ହସି ହସି କହିଲେ, ''ରାଜନ୍ ! ଯେପରି ନପୁଂସକ ସ୍ତ୍ରୀ, ପୁରୁଷ, ବେଶ୍ୟାମାନଙ୍କର ଜନ୍ମ ସବୁ ଦେଶରେ, ସବୁ ଜାତିରେ ହୋଇପାରେ, ଠିକ୍ ସେହିଭଳି ଭଗବତ୍ ଭକ୍ତଙ୍କର ଜନ୍ମ ସବୁ ପ୍ରଦେଶରେ, ସବୁ ବର୍ଣ୍ଣରେ ବି ହୋଇପାରେ । କଳିଯୁଗରେ ଭିନ୍ନ ଭିନ୍ନ ଦେଶରେ ଭକ୍ତମାନେ ଅଧିକ ହେବେ ।''

ଏପରି କଥାଁ ଶୁଣି ରାଜା ପଚାରିଲେ, ''ମହାରାଜ୍ ! ଦ୍ରାବିଡ଼ ଦେଶର ବିଶେଷତା

କ'ଣ ? ମହର୍ଷି ତଥା ବ୍ରହ୍ମର୍ଷିମାନଙ୍କ ଦ୍ୱାରା ସେବିତ ଏହି ଗଙ୍ଗା-ଯମୁନାର ମଧ୍ୟସ୍ଥଳୀ ସବୁଠାରୁ ଶ୍ରେଷ୍ଠ ବୋଲି କୁହାଯାଏ । ଉତ୍ତରଖଣ୍ଡକୁ ସମସ୍ତେ ପରମ ପବିତ୍ର ଅଞ୍ଚଳ ବୋଲି ସ୍ୱୀକାର କରନ୍ତି । ସମସ୍ତ ରାଜର୍ଷି ରାଜ୍ୟ ତ୍ୟାଗକରି ଉତ୍ତର ଦିଗକୁ ହିଁ ଯାଇଛନ୍ତି । ଭଗବାନ୍‌ଙ୍କର ଯେତେ ଅବତାର ହୋଇଛି, ସବୁ ଏହି ଅଞ୍ଚଳରେ ହିଁ ହୋଇଛି । ଦକ୍ଷିଣ ଦେଶ ତ ସେପରି ପବିତ୍ର ଦେଶ ନୁହେଁ । ସେହି ଦେଶରେ ତ ବିଶେଷ ଅନ୍ୟାୟ ଦେଖାଯାଏ ।''

ଏହାଶୁଣି ମହାମୁନି ହସି ହସି କହିଲେ, ''ରାଜନ୍ ! ଯେଉଁ ଦେଶ ସ୍ୱୟଂ ପବିତ୍ର ତାକୁ ପୁଣି ପବିତ୍ର କ'ଣ କରିପାରିବ ! ବୃନ୍ଦାବନ ଅଯୋଧ୍ୟା ଆଦି ଭଗବାନ୍‌ଙ୍କର ଚରଣରଜରେ ପବିତ୍ର ହୋଇଯାଇଛି । କାଶୀ ହେଉଛି ବିଶ୍ୱାନଥଙ୍କର ଧାମ । ବଦ୍ରିକାଶ୍ରମରେ ଭଗବାନ୍ ନର-ନାରାୟଣ ଆଜି ବି ନିବାସ କରୁଛନ୍ତି । ଲୋକ-କଲ୍ୟାଣ ନିମିତ୍ତ ତପ କରୁଛନ୍ତି । ଯାହା ପବିତ୍ର ଦେଶ ନୁହେଁ, ତାକୁ ପବିତ୍ର କରିବା କଥା । ଏଇଥିପାଇଁ ତ ଅଯୋଧ୍ୟା କୁଳମଣ୍ଡନ ଦଶରଥନନ୍ଦନ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ୍ ଶ୍ରୀରାମଚନ୍ଦ୍ର ରାଜ୍ୟ ସିଂହାସନ ଛାଡ଼ି ଖାଲିପାଦରେ ଦକ୍ଷିଣଦିଗକୁ ଯାଇଥିଲେ । ସେତେବେଳେ ଦାକ୍ଷିଣାତ୍ୟରେ ଅନାର୍ଯ୍ୟଙ୍କର ପ୍ରାବଲ୍ୟଥିଲା । ଭଗବାନ୍ ସେହି ଦେଶକୁ ପବିତ୍ର କରିଦେଲେ । ରାକ୍ଷସଙ୍କୁ ଜୟ କଲେ, ଆଉ ଭଗବାନ୍ ସ୍ୱୟଂ ରାମେଶ୍ୱରଙ୍କୁ ସ୍ଥାପନା କଲେ । ସେତେବେଳଠାରୁ ଏହି ଦେଶ ବି ପବିତ୍ର ହୋଇଯାଇଛି । ଦକ୍ଷିଣରେ ଏବଂ ପୂର୍ବରେ ବି ଏପରି କେତେକ ଦେଶ ଅଛି, ଯାହାକୁ ନିଷିଦ୍ଧାଞ୍ଚଳ କୁହାଯାଏ । କିନ୍ତୁ ସେହି ଦେଶରେ ଯେଉଁ ପବିତ୍ର ନଦୀମାନ ଅଛି, ସେହି ନଦୀଗୁଡ଼ିକର ଦୁଇ କୂଳର ଯୋଜନ ଯୋଜନ ବିସ୍ତୃତ ଭୂମି ପବିତ୍ର ବୋଲି ଗ୍ରହଣ କରାଯାଏ । ଯେପରି ମଗଧ ଦେଶ ପବିତ୍ର ନୁହେଁ । କିନ୍ତୁ ମଗଧ ରାଜ୍ୟ ମଧ୍ୟଦେଇ ପ୍ରବାହିତ ନଦୀର ଦୁଇ କୂଳର ବିସ୍ତୃତ ଭୂମି ଅତି ପବିତ୍ର । ଗୟାପୁରୀ ମଗଧରାଜ୍ୟରେ ଅଛି । ଏହା ଅତି ପବିତ୍ର ଭୂମି । ଯା ଭଳି ଦାକ୍ଷିଣାତ୍ୟ ପବିତ୍ର ନୁହେଁ, କିନ୍ତୁ ସେଠାରେ ପ୍ରବାହିତ ତାମ୍ରପର୍ଣ୍ଣୀ, କୃତମାଳା, ପୟସ୍ୱିନୀ, ମହାପୁଣ୍ୟା, କାବେରୀ, ପ୍ରତୀଚୀ କାବେରୀ ତଥା ମହାନଦୀ ଆଦି ସରିତାଗଣ ପରମ ପବିତ୍ର ରୂପେ ଗ୍ରହଣ କରାହୋଇଛି । ଯେଉଁ ଲୋକମାନେ ଏହି ନଦୀଗଡ଼ିକର କୂଳରେ ରହି ଏଗୁଡିକର ପରମ ପବିତ୍ରକାରିଣୀ ଜଳକୁ ପ୍ରେମ ପୂର୍ବକ ପାନ କରନ୍ତି ସେମାନଙ୍କୁ ଦେଶଜନ୍ୟ ଦୋଷ ଲାଗେନାହିଁ । ସେମାନେ ପ୍ରାୟତଃ ଶୁଦ୍ଧଚିତ୍ତ ହୋଇ ଭଗବାନ୍ ବାସୁଦେବଙ୍କ ଭକ୍ତ ହୋଇଯାଆନ୍ତି । ଏଣୁ ଦକ୍ଷିଣ ଦେଶକୁ କଳିଯୁଗରେ ଭକ୍ତି ଭଗବତୀଙ୍କର ଜନ୍ମ ଭୂମି କୁହାଯାଏ । କହିବାକୁ ଗଲେ ଭକ୍ତ ତ ସର୍ବତ୍ର ଅଛନ୍ତି । ବୃନ୍ଦାବନ ତ ହେଉଛି ଭକ୍ତଙ୍କ ଆଶ୍ରମ । ସମସ୍ତେ ବ୍ରଜକୁ ଆସି ଆଶ୍ରୟ ଲାଭ କରିଛନ୍ତି । କିନ୍ତୁ ମଥୁରା

ପ୍ରଦେଶକୁ ତିନିଲୋକରେ ବି ଗଣାଯାଇ ହୁଏ ନାହିଁ । ତ୍ରିଭୁବନରେ ଏହାର ସ୍ଥାନ ସ୍ୱତନ୍ତ୍ର । ଭକ୍ତ ଯେଉଁ ଦେଶରେ ଉତ୍ପନ୍ନ ହୋଇଥାଏ ସମ୍ପୂର୍ଣ୍ଣ ଦେଶକୁ ପବିତ୍ର କରିଥାଏ । ସେ ଦେଶ ଯେଉଁ ଦେଶ ହୋଇଥାଉ । ଭକ୍ତର ଏକମାତ୍ର କାର୍ଯ୍ୟ ହେଉଛି ଅନନ୍ୟ ଭାବରେ ଭଗବାନଙ୍କୁ ଅନବରତ ଭକ୍ତି କରିବା ।''

ଏପରି ସୁମଧୁର କଥା ଶୁଣି ମହାରାଜ ନିମି କହିଲେ, ''ଭଗବନ୍ ! ମୋର ଗୋଟିଏ ଛୋଟିଆ ସନ୍ଦେହ ରହିଯାଉଛି । ଯେଉଁମାନେ ସର୍ବାତ୍ମଭାବରେ ଭଗବାନଙ୍କର ଭଜନରେ ବିଲୀନ ହୋଇଯାଇଛନ୍ତି, ସେମାନଙ୍କୁ ଦେବ ପୂଜନ, ପିତୃପୁରୁଷଙ୍କ ଶ୍ରାଦ୍ଧ-ତର୍ପଣ କରିବାକୁ ପଡ଼େ ନା ପଡ଼େ ନାହିଁ ?''

ମହାମୁନି କରଭାଜନ କହିଲେ, ''ରାଜନ୍ ! ଦେବତା, ପିତର ତଥା ଋଷି ହେଉଛନ୍ତି ସେହି ଏକ ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କର ଅଙ୍ଗ । ଏମାନଙ୍କୁ ପୂଜା କରୁଥିଲେ କିଛି ହାନି ହେବାର ନାହିଁ । ଯେପରି ଜ୍ଞାନୀଙ୍କର ଅନ୍ତଃକରଣ ବିଶୁଦ୍ଧ ହୋଇଯାଏ, ସେମାନଙ୍କର ବାହାର କୌଣସି ସ୍ଥାନର ଆବଶ୍ୟକତା ନଥାଏ, ସେମାନେ ବିଧି ନିଷେଧର ବନ୍ଧନରେ ନଥା'ନ୍ତି, ତେବେ ବି ସ୍ୱଭାବାନୁସାରେ ପ୍ରାତଃସ୍ନାନ କରନ୍ତି- ଠିକ୍ ସେହିଭଳି ଯେଉଁମାନେ ସମସ୍ତ କାମ୍ୟକର୍ମକୁ ତ୍ୟାଗ କରିଦେଇ ଥାଆନ୍ତି, ଯେଉଁମାନେ ସର୍ବାତ୍ମଭାବରେ ଶରଣାଗତବତ୍ସଳ ସର୍ବେଶ୍ୱର ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଶରଣ ଗ୍ରହଣ କରିଦେଇ ଥାଆନ୍ତି, ସେପରି ଭକ୍ତଙ୍କ ନିମନ୍ତେ ଦେବ ଋଣ, ଋଷି ଋଣ ତଥା ପିତୃ ଋଣ ବୋଲି କିଛି ରହେ ନାହିଁ । ରାଜନ୍ ! ଯେ ସର୍ବହରା ହୋଇଯାଇ ଥାଏ ସେ ପୁଣି ଋଣ କାହାକୁ ପରିଶୋଧ କରିବାର ଆବଶ୍ୟକତା ଥାଏ କି ? ଯେଉଁମାନେ ଘର ଦ୍ୱାର କୁଟୁମ୍ବ ପରିବାର ସମସ୍ତଙ୍କୁ ତ୍ୟାଗକରି ଶ୍ରୀକୃଷ୍ଣଙ୍କ ସେବାକୁ ହିଁ ନିଜ ଜୀବନର ଏକମାତ୍ର ଲକ୍ଷ୍ୟ କରିଦେଇ ଥାଆନ୍ତି, ସେମାନଙ୍କର ଦେବତା, ପିତର, ଭାଇ, ବନ୍ଧୁ, ପତ୍ନୀ, ପୁତ୍ର ତଥା ପରିବାର ଲୋକଙ୍କ ପ୍ରତି କୌଣସି କର୍ତ୍ତବ୍ୟ ଆଉ ରହେନାହିଁ । ସେମାନେ ନା ତ ବିଧି ବାକ୍ୟର ଦାସ ହୋଇଥା'ନ୍ତି, ନା ସେମାନଙ୍କର କାହା ପାଖରେ ଋଣ ଥାଏ । ଯଦି ବା ସେ କରେ ତେବେ ବି କୌଣସି ଦୋଷ ନାହିଁ । ତା' ଇଚ୍ଛା ଉପରେ ଏହା ନିର୍ଭର କରେ । ପ୍ରଭୁଙ୍କୁ ପୂଜା କରିବା ସହିତ ଦେବତା, ପିତରଙ୍କୁ ପୂଜା କରିପାରେ, ନ କରି ବି ପାରେ ।''

ମହାରାଜ ନିମି କହିଲେ, ''ଭଗବନ୍ ! ଦେଖନ୍ତୁ, ଯେ ପର୍ଯ୍ୟନ୍ତ ଶରୀର ଥାଏ, ମନ ଥାଏ, ଇନ୍ଦ୍ରିୟଗଣ ଥାଆନ୍ତି, ସେ ପର୍ଯ୍ୟନ୍ତ ଶରୀରରେ ପାପକର୍ମ ହେବାର ସମ୍ଭାବନା ଥାଏ । ଆପଣଙ୍କ କଥାନୁସାରେ ସବୁବେଳେ ଭକ୍ତିରେ ଲାଗିରହିଥିବ, କିନ୍ତୁ ଅକସ୍ମାତ୍ ସ୍ୱଭାବାନୁସାରେ କୌଣସି ପାପ ହୋଇଗଲା, ସେତେବେଳେ ନରକକୁ ଯିବାକୁ ତ

ହୋଇଥାଏ- କାରଣ ପାପ ପାଇଁ ପ୍ରାୟଶ୍ଚିତ କରିବାକୁ ହୁଏ, ନ ହେଲେ ଭୋଗ । ପାପ ନାଶ ହେବାର ଅନ୍ୟ କୌଣସି ଉପାୟ ହିଁ ନାହିଁ । ତେବେ ସେହି ଭକ୍ତ ପ୍ରାୟଶ୍ଚିତାଦି କର୍ମ ଯଦି ନ କରେ ତେବେ ସେଥିରୁ ମୁକ୍ତ ହେବ କିପରି ?''

ମହାମୁନି କରଭାଜନ ଏପରି କଥା ଶୁଣି ହସିଲେ, ଆଉ କହିଲେ, ''ରାଜନ୍ ! ଯିଏ ସକାଳୁ ରାତି ପର୍ଯ୍ୟନ୍ତ ଆଉ ରାତିରୁ ସକାଳ ପର୍ଯ୍ୟନ୍ତ ଭଗବାନ୍‌ଙ୍କର ସେବାରେ ସଂଲଗ୍ନ ଥାଏ ତା' ହାତରେ ପାପକର୍ମ ହେବାର ସମ୍ଭାବନା ରହେ ନାହିଁ, ତାର ପାପ କରିବାର ଆବଶ୍ୟକତା ବି ନଥାଏ । ତେବେ ବି ଏହି ଚିତ୍ତ ହେଉଛି ଚଞ୍ଚଳ । ଅକସ୍ମାତ୍ ମନରେ ହେଉ ଅଥବା ଶରୀରରେ ହେଉ, ଯଦି କେତେବେଳେ ପାପ ହୋଇଯାଏ, କୌଣସି ନିଷିଦ୍ଧ କର୍ମ ହୋଇଯାଏ, ତେବେ ସେହି ପାପକୁ ହୃଦୟରେ ବିରାଜମାନ କରୁଥିବା ଭଗବାନ୍ ନାଶ କରିଦିଅନ୍ତି । ପାପର କଳା ଦାଗକୁ ସେହି କଳିକଳୁଷହାରୀ କେଶବ ଧୋଇ ଦିଅନ୍ତି । ରାଜନ୍ ! **ପାପ ହୁଏ ବିଷୟ ପ୍ରତି ଆସକ୍ତି ଯୋଗୁ । ବିଷୟୀ ଲୋକମାନଙ୍କୁ ବିଷୟ ସେବନଦ୍ୱାରା ଅଧିକ ସୁଖ ମିଳେ । ଏଣୁ ଏମାନେ ପାପର ପରିମାଣକୁ ଜାଣି ବି ଏହାକୁ ଛାଡ଼ି ପାରନ୍ତି ନାହିଁ ।** ଭଗବତ୍ ଭକ୍ତମାନେ ତ ଥରେ ଭଜନର ସୁଖ ଅନୁଭବ କରିନିଅନ୍ତି । ଯଦି ଭୁଲବଶତଃ ସେମାନଙ୍କର ପ୍ରବୃତ୍ତି କେତେବେଳେ ବିଷୟ ଆଡକୁ ମାଡ଼ିଯାଏ ତେବେ ତାକୁ ସ୍ୱୟଂ ଶ୍ରୀହରି ପଶ୍ଚାତ୍ତାପ କରି ତାର ପାପକୁ ଭସ୍ମ କରିଦିଅନ୍ତି । ଏଣୁ ପାପ ଚିନ୍ତା କେତେବେଳେ ବି କରିବା ଉଚିତ ନୁହେଁ । **ପାପ ଠାରୁ ଅଧିକ ବଳବାନ ହେଉଛି ଭଗବାନଙ୍କର ନାମ । ଅନବରତ ନାମ କୀର୍ତ୍ତନ କରୁଥିଲେ ହେଲା । ନାମର ରସ ପାଇଗଲା ପରେ ବିଷୟ ସୁଖ ସ୍ୱୟଂ ତୁଚ୍ଛ ଲାଗେ ।** ରାଜନ୍ ! ମୁଁ ଆପଣଙ୍କୁ ଭଗବାନ୍‌ଙ୍କର ଯୁଗଧର୍ମ ଅନୁସାରେ ପୂଜାର ବର୍ଣ୍ଣନା କଲି । ଏବେ ଆପଣ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି ?''

ମହାପ୍ରାଜ୍ଞ ସୂତ କହିଲେ, ''ହେ ମୁନିଗଣ ! ନବଯୋଗେଶ୍ୱରଙ୍କ ସହିତ ମହାରାଜ ନିମିଙ୍କର ଯେଉଁ ସମ୍ବାଦ ହେଲା, ତାହାକୁ ନାରଦ ବସୁଦେବଙ୍କୁ କହୁଛନ୍ତି । ଏତିକି କଥା ଶୁଣାଇବା ପରେ ଦେବର୍ଷି ନାରଦ ବସୁଦେବଙ୍କୁ ଯାହା କହିଲେ ସେ କଥା ମୁଁ ଆପଣମାନଙ୍କୁ କହିବି ।''

## ଛପ୍‌ପୟ

*ଯା କଲି ଗୁନ ତେଂ ରାଝ ଜନମ କଲି ମହଁ ଚାହେଂ ସୁର ।*
*ହୋବେଂ କଲିମହଁ ଭକ୍ତ କରେଂ କୀର୍ତ୍ତନ ଧରି ହରି ଉର ।*
*ତଜ ସବ ବିଷୟ ବିଲାସ ଶରନ ହରି କୀ ଜେ ଜାବେଂ ।*

ସବ ଗିନ ତେଂ ହ୍ୱୈଂ ଉରିନ ଶ୍ୟାମ କେ ଧାମ ସିଧାବୈଂ ॥
ଅଶୁଭ କରମ ଯଦି ମୂଲ ତେ, କବହୁଁ ଭକ୍ତ ତେଂ ବନି ପରେଂ ।
ତିନକୂଁ ଶରନାଗତବତ୍ସଲ, ଅଘହାରୀ ଶ୍ରୀହରି ହରେଂ ॥



# ନାରଦ-ବସୁଦେବ ସମ୍ବାଦର ସମାପ୍ତି

**ଇତିହାସମିମଂ ପୁଣ୍ୟଂ ଧାରୟେଦ୍ ଯଃ ସମାହିତଃ ।**
**ସ ବିଧୂୟେହ ଶମଲଂ ବ୍ରହ୍ମଭୂୟାୟ କଳ୍ପତେ ॥☆**

(ଶ୍ରୀ ଭା. ୧୧ସ୍କ. ୫ଅ. ୫୨ ଶ୍ଲୋକ)

**ଛପ୍ପୟ**

ନବଯୋଗେଶ୍ୱର ଦୟୋ ଜ୍ଞାନ ନିମିକୂଁ ହ୍ୱୈଂ ପ୍ରମୁଦିତ ।
ଅତି ପ୍ରସନ୍ନ ନୃପ ଭୟେ ଗୟେ ହ୍ୱୈକେଂ ମୁନି ପୂଜିତ ॥
ନାରଦ ମୁନି ବସୁଦେବ ପ୍ରଶ୍ନ କୋ ଉତ୍ତର ଦୀନ୍ହୋ ।
ଶୂର ତନୟ ନେ ବ୍ରହ୍ମ ତନୟ କୋ ଆଦର କୀନ୍ହୋ ॥
ମୁନି ବୋଲେ ବସୁଦେବଜୀ ! ତୁମ ସହପତ୍ନୀ ଧନ୍ୟ ଅତି ।
ଜଗମହଁ ଜିନକେ ସୁତ ଭୟେ, ବାସୁଦେବ ଶ୍ରୀଜଗତ୍ପତି ॥

ସଂସାରରେ ସେ ହିଁ ଧନ୍ୟ, ଯାହାର ସମ୍ବନ୍ଧ କୌଣସି ପ୍ରକାର ଭାବରେ ଭଗବାନଙ୍କ ସହିତ ହୋଇଯାଏ । ଭଗବାନଙ୍କର ପିତା, ପୁତ୍ର, ଶିଷ୍ୟ, ସେବକ, ସଖା, ସୁହୃଦ, ପତ୍ନୀ, ଭକ୍ତ ଅଥବା ଅନୁରକ୍ତ ହୋଇଯାଏ । ତାଙ୍କର କଥା କହିବା, ଶୁଣିବା ଲୋକ; ନାମଗୁଣ କୀର୍ତ୍ତନ କରିବା କରାଇବା ଲୋକ; ତାଙ୍କର ସେବା, ପୂଜା, ଅର୍ଚ୍ଚନା, ବନ୍ଦନା ଆଦି କରିବା କରାଇବା ଲୋକ; ସେ ଯେ କେହି ହୋଇଥାନ୍ତୁ ପଛେ, ଯେ କୌଣସି ପ୍ରକାରେ କିଛି ସ୍ଥାପିତ ହୋଇଗଲେ, ସକଳ ପ୍ରକାର ବନ୍ଧନ ଛିଣ୍ଡି ଯାଏ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ସ୍ୱଧାମକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ମନ କଲେ, ସେ ବସୁଦେବଙ୍କ ଯଜ୍ଞସ୍ଥାନର

☆ ଯେ ଏହା ଶ୍ରବଣେ ଶୁଣନ୍ତି । କି ଅବା ବଦନେ ଗୁଣନ୍ତି ॥
ସକଳ ପାପୁଁ ଯାନ୍ତି ତରି । ଅନ୍ତେ ଲଭନ୍ତି ନରହରି ॥
(ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୬ଅ.)

ଉପଦେଶ ଦେବା ନିମନ୍ତେ ଦେବର୍ଷି ନାରଦଙ୍କୁ ଆହ୍ୱାନ କଲେ । ଭଗବାନ୍‌ଙ୍କ ଇଚ୍ଛା ଜାଣିପାରି ବୀଣାପାଣି ଭଗବାନ୍ ନାରଦ ବସୁଦେବଙ୍କ ପାଖକୁ ଆସିଲେ । ବସୁଦେବ ତାଙ୍କୁ ଭାଗବତ-ଧର୍ମ ସମ୍ବନ୍ଧରେ ପ୍ରଶ୍ନ କଲେ । ସେହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଦେବର୍ଷି ନାରଦ ଋଷଭ ଦେବଙ୍କ ତଥା ଇନ୍ଦ୍ରଙ୍କ କନ୍ୟା ଜୟନ୍ତୀଙ୍କଠାରୁ ଉତ୍ପନ୍ନ କବି, ହରି, ଅନ୍ତରୀକ୍ଷ, ପ୍ରବୁଦ୍ଧ, ପିପ୍‌ପଳାୟନ, ଆବିର୍ହୋତ୍ର, ଦ୍ରୁମିଳ, ଚମସ ଆଉ କରଭାଜନ, ଏହି ନବଯୋଗେଶ୍ୱରଙ୍କ ସହିତ ବିଦେହ ରାଜ ନିମିଙ୍କ ସମ୍ବାଦ ସଂକ୍ଷେପରେ ଶୁଣାଇଲେ । ରାଜା ନ'ଟି ପ୍ରଶ୍ନ କରିଥିଲେ । ଏହି ପ୍ରଶ୍ନୋତ୍ତରରେ ସମସ୍ତ ଭାଗବତ-ଧର୍ମ ନିହିତ ହୋଇଛି । ଏହାକୁ ବିସ୍ତୃତ ଭାବରେ ଆଗାମୀ 'ଭଗବାନ ଓ ଉଦ୍ଧବଙ୍କ ସମ୍ବାଦ'ରେ ବର୍ଣ୍ଣନା କରାଯିବ । ଦେବର୍ଷି ନାରଦ ବସୁଦେବଙ୍କୁ ନବଯୋଗେଶ୍ୱରଙ୍କ ଇତିହାସର ଉପସଂହାର କରିବାକୁ ଯାଇ କହିଲେ—

''ରାଜନ୍ ! ନବଯୋଗେଶ୍ୱରଙ୍କ ମୁହଁରୁ ମିଥିଳାଧିପତି ମହାରାଜ ନିମି ଭାଗବତ ଧର୍ମର ଉପଦେଶ ଶୁଣି ପରମ ପ୍ରମୁଦିତ ହେଲେ । ଏହାପରେ ସେ ଉପାଧ୍ୟାୟଙ୍କ ସହିତ ନବ ଯୋଗେଶ୍ୱରଙ୍କ ବିଧିବତ୍ ପୂଜା କଲେ । ରାଜା କରିଥିବା ପୂଜାକୁ ଶାସ୍ତ୍ରୀୟ ବିଧିରେ ଗ୍ରହଣ କରି ସମସ୍ତ ସିଦ୍ଧ ଯୋଗେଶ୍ୱର ସଭାସଦ୍‌ଗଣଙ୍କ ପ୍ରତ୍ୟକ୍ଷରେ ସେହି ସ୍ଥାନରେ ଅନ୍ତର୍ଦ୍ଧାନ ହୋଇଗଲେ । ମହାରାଜ ନିମି ଯେଉଁଭଳି ଭାବରେ ଧର୍ମ-ଉପଦେଶ ଶୁଣିଥିଲେ, ତାହା ସେ ରୀତିମତ ପାଳନ କରିବାରେ ଲାଗିଲେ । ସେହି ଧର୍ମ ପାଳନ କରିବାରୁ ରାଜା ପରମ ଶାନ୍ତି ଲାଭକଲେ । ଏବଂ ଅନ୍ତରେ ପରମପଦ ପ୍ରାପ୍ତ ହେଲେ ।

ଦେବର୍ଷି ନାରଦ ବସୁଦେବଙ୍କୁ କହୁଛନ୍ତି- ''ହେ ରାଜନ୍ ! ମହାରାଜ ନିମି ଯେଉଁଭଳି ଭାଗବତ-ଧର୍ମ ଆଚରଣ କରିବା ଦ୍ୱାରା ପରମପଦ ପ୍ରାପ୍ତ ହେଲେ, ଠିକ୍ ସେହିଭଳି ଆପଣ ବି ଏହି ଧର୍ମର ଆଚରଣ କରି ପରମପଦ ପାଆନ୍ତୁ । ଆପଣ ସଂସାର ସହିତ ଅସଂଗ ରହି ଶ୍ରଦ୍ଧାପୂର୍ବକ ସ୍ଥିର ଚିତ୍ତରେ ଏହି ଧର୍ମର ଅନୁସରଣ କରନ୍ତୁ । ଏପରି ଦେଖିବାକୁ, ଆପଣଙ୍କର ଆଉ ଅଧିକ କର୍ତ୍ତବ୍ୟ ପାଳନ କରିବାକୁ ବାକୀ ନାହିଁ, କାରଣ ସର୍ବାନ୍ତର୍ଯ୍ୟାମୀ ଜଗତ୍ ପିତା ପରମାତ୍ମାଙ୍କ ସହିତ ଆପଣ ଆଉ ଆପଣଙ୍କ ପତ୍ନୀ ପୁତ୍ର ଭାବ ସ୍ଥାପିତ କରିଦେଇ ଅଛନ୍ତି । ଆପଣ ତାଙ୍କୁ ଅତି ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଦେଖୁଛନ୍ତି । ଭଗବାନଙ୍କୁ ଯେକୌଣସି ଭାବରେ ଦେଖିଲେ ବି କଲ୍ୟାଣ ହୋଇଥାଏ । ଆପଣ ତାଙ୍କୁ ତ ପ୍ରେମର ସହିତ ଆଲିଙ୍ଗନ କରୁଛନ୍ତି, ତାଙ୍କ ମସ୍ତକ ଆଘ୍ରାଣ କରୁଛନ୍ତି, ସ୍ନେହ କରୁଛନ୍ତି, ଅତି ପ୍ରେମର ସହିତ କଥାବାର୍ତ୍ତା କରୁଛନ୍ତି, ତାଙ୍କୁ ମିଠାଇଠାରୁ ଅଧିକ ମିଠା କଥା କହୁଛନ୍ତି; ତାଙ୍କୁ କୁତ୍‌କୁତ୍ କରି ହସାଉଛନ୍ତି, ନିଜ ସହିତ ଖିଆ ପିଆ କରାଉଛନ୍ତି, ତାଙ୍କ ସହିତ ଶୟନ କରୁଛନ୍ତି, ଗୋଟିଏ ଆସନରେ ବସି ନିଜ ହାତରେ ତାଙ୍କୁ ଖୋଇ ଦେଉଛନ୍ତି, ଆପଣଙ୍କ ଅଇଁଠା ବି ସେ ଆନନ୍ଦରେ ଖାଉଛନ୍ତି, ତାଙ୍କର ଅଇଁଠା ଆପଣ ଖାଉଛନ୍ତି, ଭଗବାନଙ୍କ ସହିତ ଏହିପରି ପ୍ରେମରେ ସମ୍ପର୍କ ରଖିଥିବାରୁ ଆପଣ ଉଭୟଙ୍କର ଅନ୍ତଃକରଣ ବିଶୁଦ୍ଧ ହୋଇଯାଇଛି । ଯେଉଁମାନଙ୍କର ଅନ୍ତଃକରଣ ବିଶୁଦ୍ଧ ତାଙ୍କୁ ସମସ୍ତେ ପ୍ରେମ କରନ୍ତି । ଯାହାଙ୍କ ହୃଦୟରେ କପଟ ଥାଏ, ସୁଖ ସମୟରେ ଗୋଟିଏ ପ୍ରକାର କୁହନ୍ତି, ହେଲେ ମନ

ମଧ୍ୟରେ ବିପରୀତ କଥା ଥାଏ, ଏପରି କଳୁଷିତ ହୃଦୟୀଙ୍କୁ କେହି ବି ଭଲ ପାଆନ୍ତି ନାହିଁ ।

"ରାଜନ୍ ! ଆପଣ ବଡ଼ ଭାଗ୍ୟବାନ୍ । ଆପଣ ତାଙ୍କୁ ଭଗବାନ୍ ବୋଲି ନ ମାନନ୍ତୁ ପଛେ, କିନ୍ତୁ ସେ ଯେ ପ୍ରକୃତରେ ଭଗବାନ୍ ଏଥିରେ ଟିକିଏ ବୋଲି ସନ୍ଦେହ ନାହିଁ । ସେ କିନ୍ତୁ ତାଙ୍କର ଭଗବତ୍ତା ନିଶ୍ଚୟ ଦେଖାଇବେ ନା ! ଆପଣ ମିଶ୍ରିକୁ ମିଶ୍ରି ବୋଲି କହି ନ ପାରନ୍ତି, ତାକୁ ଅନ୍ଧାରରେ ବି ଖାଇଲେ, ମୁହଁକୁ ମିଠା ନିଶ୍ଚୟ କରିଦେବ ନା ! ଏହିଭଳି ଆପଣ ପୁତ୍ର ଭାବରେ ହେଉ ପଛେ, ତାଙ୍କୁ ପ୍ରେମ କରୁଛନ୍ତି ନା ! ଏପରି କୌଣସି ପ୍ରାଣୀ କରନ୍ତି ନାହିଁ । ସଂସାରୀ ରୂପରେ ଆକର୍ଷିତ ହୋଇ ତାକୁ ଚାହାନ୍ତି, ସଂସାର ରୂପ ନଶ୍ୱର, କ୍ଷଣଭଙ୍ଗୁର, ପରିମାଣ ଅତ୍ୟନ୍ତ ଦୁଃଖଦାୟୀ । ଭଗବାନଙ୍କ ସହିତ ସମ୍ବନ୍ଧ ହୋଇଗଲେ ଆଉ ଚିନ୍ତା ରହେ ନାହିଁ । କାରଣ ଭଗବାନ ତ ନିତ୍ୟ ଶାଶ୍ୱତ । ଦେଖେ, ଶିଶୁପା, ଦନ୍ତବକ୍ତ୍ର, ପୌଣ୍ଡ୍ର, ଶାଲ୍ୱ ତଥା ରୁକ୍ମୀ ଆଦି ଆସୁରୀ ପ୍ରକୃତିର ରାଜା ଭଗବାନଙ୍କ ସହିତ ଦ୍ୱେଷ କରୁଥିଲେ । ତାଙ୍କୁ ଭଗବାନ୍ ବୋଲି ମାନିବା ଦୂରର କଥା, ଶୁଦ୍ଧ କ୍ଷତ୍ରିୟ ରାଜକୁମାର ବୋଲି ବି ମାନୁ ନଥିଲେ । ସମ୍ପର୍କୀୟ ହେବାପରେ ତାଙ୍କ ସହିତ ବସାଉଠା ତ କରୁଥିଲେ, ତାଙ୍କର ଚାଲିଚଳନ, ମନୋଭାବ, ଚପଳତା ଚଞ୍ଚଳତା, ଚାତୁରୀ ତଥା ଉଦ୍ୟମ କରୁଥିଲେ । ହେଲେ ଦ୍ୱେଷ ବୁଦ୍ଧିରେ ତାଙ୍କୁ ସ୍ମରଣ କରୁଥିଲେ । ଯେପରି ବି ହେଉ, ତାଙ୍କୁ ଭାବୁଥିଲେ ନା ! ଯିଏ ଯେଉଁଭଳି ତାଙ୍କୁ ଦେଖେ, ସେ ସେହିଭଳି ତା' ପାଖରେ ହୋଇଯାଆନ୍ତି । ସେମାନେ ଶୁଦ୍ଧ ଭଗବାନଙ୍କୁ ଚିନ୍ତନ କରୁଥିଲେ ତେଣୁ ଠିକ୍ ସେହିଭଳି ହୋଇଯାଇ ଥିଲେ । ଆପଣ ଏବେ ଜାଣନ୍ତୁ, ଦ୍ୱେଷକାରୀ ବି ଯେତେବେଳେ ମୋକ୍ଷ ହୋଇପାରିଛନ୍ତି, ପ୍ରେମ କରୁଥିବା ପ୍ରାଣୀ କିପରି ତାହା ପାଇବେ ନାହିଁ ।"

ବସୁଦେବ କହିଲେ, "ତା' ହେଲେ ମହାରାଜ ! ଏବେ ମୁଁ କ'ଣ କରିବି ? ଆଜି ପର୍ଯ୍ୟନ୍ତ ତ ମୁଁ ତାଙ୍କୁ ମୋ ପୁଅ ବୋଲି ଜାଣିଛି ।"

ଦେବର୍ଷି ନାରଦ କହିଲେ, "ଆଜି ପର୍ଯ୍ୟନ୍ତ ଆପଣ ତାଙ୍କୁ ନିଜ ପୁଅ ଭଳି ମାନୁଥିବା ଅତି ଉତ୍ତମ କଥା । ଆପଣଙ୍କର ଅନ୍ତଃକରଣ ବିଶୁଦ୍ଧ ହୋଇଗଲା । ଆଉ ଏଣିକି ତାଙ୍କୁ ପୁତ୍ର ଦୃଷ୍ଟିରେ ଦେଖନ୍ତୁ ନାହିଁ । ଇଏ ପରମେଶ୍ୱର, ଅଜ, ଅବ୍ୟକ୍ତ, ସର୍ବେଶ୍ୱର, ଜଗତ୍-ନିୟନ୍ତା-ଏପରି ହୃଦୟଙ୍ଗମ କରନ୍ତୁ । ଇଏ ମାୟାରେ ମନୁଷ୍ୟ ରୂପ ଧାରଣ କରିଛନ୍ତି । ସେ ତାଙ୍କ ନିଜ ଇଚ୍ଛାରେ ଅତୁଳିତ ଐଶ୍ୱର୍ଯ୍ୟକୁ ଗୁପ୍ତ ରଖିଛନ୍ତି । ସେ ସ୍ୱେଚ୍ଛାରେ ପୃଥିବୀ ପୃଷ୍ଠକୁ ଆସିଛନ୍ତି ।"

ବସୁଦେବ ପଚାରିଲେ, "ଭଗବନ୍ ! ଅଜ ଅବ୍ୟକ୍ତ ପ୍ରଭୁ କାହିଁକି ପୃଥିବୀ ପୃଷ୍ଠକୁ ଆସିଲେ ।"

ଦେବର୍ଷି ନାରଦ କହିଲେ, "ରାଜନ୍ ! ରାଜା ବେଶ ଧାରଣକରି ଅନେକ ଅସୁର ଭୂମିର ଭାରଭୂତ ହୋଇ ସଜ୍ଜନଙ୍କୁ ପୀଡ଼ିତ କରିବାରେ ଲାଗିଲେ । ସେହି ଅସୁରଙ୍କୁ ସଂହାର କରିବା ପାଇଁ ତଥା ସଦ୍‌ଜନ ଆଉ ସୁରଙ୍କୁ ରକ୍ଷା କରିବା ପାଇଁ ସର୍ବାନ୍ତର୍ଯ୍ୟାମୀ ମାୟାରେ ମାନବ ରୂପ ଧାରଣ କଲେ । ଅସୁର ସଂହାର ଓ ସାଧୁ-ପ୍ରତିପାଳନ-ଏହା ତ ତାଙ୍କର ଅବତାର ହେବାର ଗୌଣ କାରଣ, **ମୁଖ୍ୟ କାରଣ ହେଉଛି ତାଙ୍କର ଅନନ୍ୟ ଉପାସକଙ୍କୁ**

**ଅତ୍ୟଧିକ ଆନନ୍ଦ ପ୍ରଦାନ କରିବା । ମାନବ ରୂପ ଧାରଣ କରି ସେ ନିଜର ଭକ୍ତଙ୍କ ସହିତ ବିବିଧ ପ୍ରକାରର କମନୀୟ କ୍ରୀଡ଼ା କରନ୍ତି ।** ଲେଖକ ସେହି ଭଗବାନ ଚରିତ୍ରକୁ ଭାଗବତୀ କଥା ରୂପରେ ଲେଖନ୍ତି । ଏହିଁ କଥା ସମୂହ ଭବସାଗରରୁ ପାରି ହେବା ନିମିତ୍ତ ସେତୁ ଭଳି । ଏହା ଦ୍ୱାରା ସର୍ବସାଧାରଣ, ଅଳ୍ପ ବୁଦ୍ଧି ଥିବା ମଣିଷ ଏହି ଅଗାଧ ଦୁସ୍ତର ସଂସାର ସମୁଦ୍ରର ଅପର କୂଳରେ ସରଳତା ସହିତ ପହଞ୍ଚିଯାଇ ପାରେ । **ସଂସାରୀ ଲୋକଙ୍କ ଯଶ ସ୍ୱର୍ଗ ପ୍ରାପ୍ତି ନିମିତ୍ତ ହୋଇଥାଏ । ସଂସାରରେ ଯାହାର ଯେ ପର୍ଯ୍ୟନ୍ତ ଯଶ ରହେ, ସେ ସେପର୍ଯ୍ୟନ୍ତ ସ୍ୱର୍ଗରେ ସୁଖଭୋଗ କରିପାରେ । କିନ୍ତୁ ଏହି ଭଗବାନଙ୍କର ଯଶ ତ ମୁକ୍ତି ନିମନ୍ତେ ସଂସାରରେ ବ୍ୟାପୀ ଯାଇଛି ।''**

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଦେବର୍ଷି ନାରଦଙ୍କର ଏପରି ଉପଦେଶ ଶ୍ରବଣ କରି ମହାଭାଗ୍ୟବାନ୍ ବସୁଦେବ ତଥା ପରମ ସୌଭାଗ୍ୟଶାଳିନୀ ଦେବକୀ ଅତି ବିସ୍ମିତ ହୋଇ, ନିଜ ନିଜର ମୋହ ପରିତ୍ୟାଗ କରିଦେଲେ । ମହାଭାଗୋ ! ଶ୍ରୀବସୁଦେବ ଓ ନାରଦଙ୍କର ଏହି ସମ୍ବାଦ ଅତି ପୁଣ୍ୟପ୍ରଦ । ଏହି ପବିତ୍ର ସମ୍ବାଦକୁ ଯିଏ ପ୍ରେମପୂର୍ବକ ଶ୍ରଦ୍ଧାର ସହିତ ସାବଧାନ ହୋଇ ଶ୍ରବଣ କରିବ, ଶ୍ରବଣ କରି ପ୍ରେମ ପୂର୍ବକ ମନନ କରିବ ଆଉ ସବୁବେଳେ ସ୍ମରଣ କରୁଥିବ ସେ (ସେମାନେ) ସଂସାର ସାଗର ପାରି ହୋଇ ବ୍ରହ୍ମଭାବ ପାପ୍ତ ହେବେ । ଇହଲୋକରେ ସେମାନଙ୍କୁ ଶୋକର ବାଧା ଜଣା ପଡ଼ିବ ନାହିଁ । ଦେବକୀ-ବସୁଦେବଙ୍କ ନିମିତ୍ତ ନାରଦ ଯେଉଁ ତତ୍ତ୍ୱଜ୍ଞାନ ଦେଇଥିଲେ ତାହା ମୁଁ ଆପଣମାନଙ୍କୁ କହିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି ?''

ମହର୍ଷି ଶୌନକ କହିଲେ, ''ହେ ମହାପ୍ରାଜ୍ଞ ସୂତ ! ଆପଣ ପୂର୍ବେ କହିଥିଲେ, ଭଗବାନ ଉଦ୍ଧବଙ୍କୁ ତତ୍ତ୍ୱଜ୍ଞାନର ଉପଦେଶ ଦେଇଥିଲେ, ଆମେ ସେଇ କଥା ବିଶଦ୍ ଭାବରେ ଶୁଣିବାକୁ ଚାହୁଁଛୁ । କୃପାକରି ଶ୍ରୀକୃଷ୍ଣ-ଉଦ୍ଧବ ସମ୍ବାଦ ଆପଣ ଆମକୁ ଭଲ ଭାବରେ କୁହନ୍ତୁ ।''

ମହର୍ଷି ସୂତ କହିଲେ, ''ଠିକ୍ ଅଛି ତାହାହେଲେ । ଆପଣମାନଙ୍କୁ ମୁଁ ଏବେ ଶ୍ରୀକୃଷ୍ଣୋଦ୍ଧବ ସମ୍ବାଦ ଶୁଣାଉଛି । ଆପଣମାନେ ଶ୍ରଦ୍ଧାର ସହିତ ତାହା ଶୁଣନ୍ତୁ ।

**ଛପ୍‌ପୟ**

*ଯୋ ଦୈଵେଂ ଉପଦେଶ ଗଯେ ନାରଦ ମୁନି ଇତ ଉତ ।*
*ମୋହ ଛୋଡ଼ି ବସୁଦେଵ ଦେଵକୀ ଦୟୋ କୃଷ୍ଣ ଚିତ ॥*
*ସୂତ କହେଂ- ''ୟହ ସୁଖଦ ଚରିତ ନିରମଲ ଅତି ପାଵନ ।*
*ମୋହ ବିନାଶକ ମୁକ୍ତି କରନ ଜଗ ଦୁଃଖ ବିନାଶନ ॥*
*ଯୋ ନାରଦ ବସୁଦେଵ କୋ, ପ୍ରଶ୍ନୋତ୍ତର ମୁନିବର ଭୟୋ ।*
*କହୁଁ ଜ୍ଞାନ ଅବ ଅତି ବିଶଦ, ଜୋ ପ୍ରଭୁ ଉଦ୍ଧବ ତେ କହ୍ୟୋ ॥*



(ପରବର୍ତ୍ତୀ କଥା ୫୩ ଖଣ୍ଡରେ ପରିବେଷଣ କରାହୋଇଛି)